# ମାନସିଂହ ଗ୍ରନ୍ଥାବଳୀ

[ ପ୍ରଥମ ଖଣ୍ଡ ]

ଡକ୍ଟର୍ ମାୟାଧର ମାନସିଂହ

ଗ୍ରନ୍ଥମନ୍ଦିର

**MANSINHA GRANTHABALI – Vol. I**
By **Dr. Mayadhar Mansinha.**

Published by Manoj Kumar Mohapatra
**Grantha Mandir,** Binodbihari, Cuttack-2

First Edition : 1962
Second Edition : 1994
Third Revised Edition : 1997

Price : Rs. 110/-

ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨

ମୁଦ୍ରକ : ତପନ କୁମାର ମହାପାତ୍ର
**ଅପ୍‌ଟିମା (ଅଫ୍‌ସେଟ୍) ପ୍ରିଣ୍ଟସ୍**
ସୂତାହାଟ, କଟକ-୧

ପ୍ରଥମ ସଂସ୍କରଣ : ୧୯୬୨
ଦ୍ୱିତୀୟ ସଂସ୍କରଣ : ୧୯୯୪
ତୃତୀୟ ପରିମାର୍ଜିତ ସଂସ୍କରଣ : ୧୯୯୭

ମୂଲ୍ୟ : ଟ. ୧୧୦/-
ସାଦା ବନ୍ଧେଇ : ଟ. ୧୦୦/-

# ସୂଚୀ ପତ୍ର

—

# କବି ମାନସିଂହ ଓ ତାଙ୍କ ସୃଷ୍ଟି

ଓଡ଼ିଆ ସାହିତ୍ୟରେ କବିବର ରାଧାନାଥଙ୍କ ପରେ ମାୟାଧର ମାନସିଂହ ହେଉଛନ୍ତି ନୂତନ ପିଢ଼ିର ପ୍ରମୁଖ ରୋମାଣ୍ଟିକ୍ କବି । ରାଧାନାଥଙ୍କ ଲେଖନୀର କାଉଁରି ସ୍ପର୍ଶରେ ଓଡ଼ିଶାର ନଦ ନଦୀ, ହ୍ରଦ, ପାହାଡ଼, ପର୍ବତ ଓ ଜ୍ଞାତ ଅଜ୍ଞାତ ବହୁ ସ୍ଥାନ ନୂତନ ପରିଚୟ ଆହରଣ କରି ତାଙ୍କୁ ଜାତୀୟକବି ଭାବେ ପ୍ରତିଷ୍ଠିତ କରିଥିଲା । ମଧ୍ୟଯୁଗୀୟ କବିମାନଙ୍କ ପରି ସେ ଶୃଙ୍ଗାରରସକୁ ପ୍ରାଧାନ୍ୟ ଦେଇଥିଲେ ବି ତାଙ୍କର ନୂତନ କାବ୍ୟରଚନା ଶୈଳୀ ଏବଂ ରସ ପରିବେଷଣର ଚମତ୍କାରିତା ତାଙ୍କୁ ଓଡ଼ିଆ କାବ୍ୟ ସାହିତ୍ୟରେ ଆଧୁନିକ ଯୁଗର ପ୍ରବର୍ତ୍ତକ ରୂପେ ପରିଚିତ କରିଛି । ରାଧାନାଥଙ୍କ ପରେ ଓଡ଼ିଆ ସାହିତ୍ୟରେ ସତ୍ୟବାଦୀ କବିଗୋଷ୍ଠୀଙ୍କର ଅଭ୍ୟୁଦୟ ଥିଲା ରାଧାନାଥ କାବ୍ୟ ପରମ୍ପରାର ଏକ ପ୍ରତିବାଦ ସ୍ୱରୂପ । ବିଦେଶୀ ସାହିତ୍ୟରୁ ଆହୃତ କଥାବସ୍ତୁକୁ ଓଡ଼ିଶା ମାଟିରେ ରୂପାନ୍ତରିତ କରି ରାଧାନାଥ ଯେଉଁ କାବ୍ୟମାନ ରଚନା କରିଥିଲେ, ଜାତୀୟତାବୋଧରେ ଅନୁପ୍ରାଣିତ ସତ୍ୟବାଦୀ ଗୋଷ୍ଠୀର କବିମାନେ ତାହା ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରିଥିଲେ । ଓଡ଼ିଶାର ଇତିହାସ ଓ କିଂବଦନ୍ତୀ ଉପରେ ଆଧାରିତ ଉତ୍କଳମଣି ଗୋପବନ୍ଧୁଙ୍କ 'ଧର୍ମପଦ', ପଣ୍ଡିତ ନୀଳକଣ୍ଠଙ୍କ 'ଖାରବେଳ', 'କୋଣାର୍କେ' ଓ 'ମାୟାଦେବୀ' କାବ୍ୟ ଏବଂ ପଣ୍ଡିତ ଗୋଦାବରୀଶଙ୍କ ଗାଥା କବିତାମାନ ଏହି ପ୍ରତିକ୍ରିୟାର ଫଳଶ୍ରୁତି । ରାଧାନାଥଙ୍କଠାରୁ ଭିନ୍ନ ଏକ ନୂତନ ଭାଷା ଓ କାବ୍ୟଶୈଳୀ ପ୍ରବର୍ତ୍ତନର ପ୍ରୟାସ ମଧ୍ୟ ସେମାନେ କରିଥିଲେ । ପ୍ରକୃତି ଓ ପ୍ରଣୟର ମୁଗ୍ଧ କାବ୍ୟକାର ମାନସିଂହ ରାଧାନାଥଙ୍କ ରୋମାଣ୍ଟିକ୍ କାବ୍ୟପରମ୍ପରାର ଜଣେ ସାର୍ଥକ ଉତ୍ତରଦାୟାଦ ହେଲେ ବି ସତ୍ୟବାଦୀ କବିଗୋଷ୍ଠୀଙ୍କ ଆଦର୍ଶ ଓ ଦେଶାତ୍ମବୋଧଦ୍ୱାରା ସେ ବହୁଭାବେ ଅନୁପ୍ରାଣିତ ହୋଇଥିଲେ । ମାନସିଂହଙ୍କ ସମକାଳୀନ ଭାରତୀୟ ସାହିତ୍ୟରେ ରବୀନ୍ଦ୍ରନାଥଙ୍କ କାବ୍ୟ କବିତା ସୁଦୂରପ୍ରସାରୀ ପ୍ରଭାବ ବିସ୍ତାର କରିଥିଲା । ମାନସିଂହ ରବୀନ୍ଦ୍ର ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତ ଥିବା କୁହାଯାଇ ପାରିବ ନାହିଁ । ତାଙ୍କର ଓଡ଼ିଆ, ସଂସ୍କୃତ, ଇଂରାଜୀ ଓ ବଙ୍ଗଳା ସାହିତ୍ୟରେ ଗଭୀର ପ୍ରବେଶ ଥିଲା । ବିଭିନ୍ନ ସାହିତ୍ୟରୁ ଆହରଣ କରି ସ୍ୱପ୍ରତିଭା ବଳରେ ସେ ଯେଉଁ ନୂତନ କାବ୍ୟସୌଧ ନିର୍ମାଣ କରିଯାଇଅଛନ୍ତି, ନିଜସ୍ୱ ମହିମାରେ ତାହା ଭାସ୍ୱର ।

ମାନସିଂହଙ୍କ ସାହିତ୍ୟିକ ପ୍ରତିଭା ଥିଲା ବହୁମୁଖୀ । ବିପୁଳ କାବ୍ୟକୃତି ବ୍ୟତୀତ ବହୁ ନାଟକ ନାଟିକା, ମନନଶୀଳ ପ୍ରବନ୍ଧ, ସାହିତ୍ୟ ସମାଲୋଚନା, ଜୀବନୀ, ଆତ୍ମଜୀବନୀ,

ଭ୍ରମଣବୃତ୍ତାନ୍ତ ଇତ୍ୟାଦି ରଚନାକରି ସେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି । ଓଡ଼ିଶା ବାହାରେ ଓଡ଼ିଆସାହିତ୍ୟ ଓ ସଂସ୍କୃତିକୁ ପରିଚିତ କରିବା ଦିଗରେ ତାଙ୍କର ଇଂରାଜୀ ଭାଷାରେ ଲିଖିତ ପାଣ୍ଡିତ୍ୟପୂର୍ଣ୍ଣ ପୁସ୍ତକଗୁଡ଼ିକର ଅବଦାନ କମ୍ ନୁହେଁ ।

ଓଡ଼ିଶାର ଏହି ପ୍ରତିଭାବାନ୍ କବି ଓ ଲେଖକଙ୍କର ଜୀବନ ଥିଲା ସଂଘର୍ଷମୟ । ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ, ସ୍ୱାଧୀନ ଚିନ୍ତାଧାରା ଏବଂ ଅପ୍ରିୟ ସତ୍ୟ କହିବାରେ ନିର୍ଭୀକତା ତାଙ୍କ ଜୀବନକାଳ ଭିତରେ ବହୁ ତର୍କ ବିତର୍କର ଝଡ଼ ସୃଷ୍ଟିକରି ଓଡ଼ିଶାର ସାହିତ୍ୟିକ ଓ ବୌଦ୍ଧିକ ବାୟୁମଣ୍ଡଳକୁ ଉଜ୍ଜୀବିତ କରିରଖିଥିଲା ।ଏଥିପାଇଁ ବ୍ୟକ୍ତିଗତ ଭାବେ ସେ କମ୍ ବିପନ୍ନ ହୋଇନାହାନ୍ତି; କିନ୍ତୁ କେବେ ଭାଙ୍ଗିପଡ଼ିନାହାନ୍ତି କିମ୍ବା ନିଜ ଆଦର୍ଶରୁ ବିଚ୍ୟୁତ ହୋଇନାହାନ୍ତି । ତାଙ୍କଭଳି ସ୍ୱାଧୀନଚେତା ବ୍ୟକ୍ତି, ରୂପ ଓ ପ୍ରଣୟର ଅନୁପମ କାବ୍ୟକାର ଏବଂ ଜ୍ଞାନତାପସ ଓଡ଼ିଆ ସାହିତ୍ୟରେ ବିରଳ ।

**ସଂକ୍ଷିପ୍ତ ଜୀବନୀ–**

ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ ଶିକ୍ଷାକ୍ଷେତ୍ରର ଏହି କୃତୀପୁରୁଷ ୧୯୦୫ ସାଲ ନଭେମ୍ବର ୧୩ ତାରିଖରେ ପୁରୀଜିଲ୍ଲା ଅନ୍ତର୍ଗତ ଅପୂର୍ବ ଶୋଭାମୟୀ ଚିଲିକା ଉପକୂଳବର୍ତ୍ତୀ ନନ୍ଦଳା ଗ୍ରାମର ଏକ ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରେ ପିତାମାତାଙ୍କୁ ହରାଇଥିବାରୁ ତାଙ୍କର ଲାଳନପାଳନ ଭାର ନିକଟ ଆତ୍ମୀୟଙ୍କ ଉପରେ ପଡ଼ିଥିଲା । ଜଣେ ମେଧାବୀ ଛାତ୍ର ଭାବରେ ତାଙ୍କର ସୁଖ୍ୟାତି ଥିଲା । ପାରିକୁଦ ଗଡ଼ ଓ ବାଣପୁରରେ ପ୍ରାଥମିକ ଓ ମଧ୍ୟଇଂରାଜୀ ବିଦ୍ୟାଳୟ ଶିକ୍ଷା ସମାପ୍ତ କରିବା ପରେ ଖୋର୍ଦ୍ଧା ସରକାରୀ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରି ୧୯୨୬ରେ ମେଟ୍ରିକ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ପରିବାରର ଆର୍ଥିକ ଅବସ୍ଥା ଭଲନଥିବାରୁ ତାଙ୍କୁ ଅନେକ ସମୟରେ ଟିଉସନ ଉପରେ ନିର୍ଭର କରିବାକୁ ପଡୁଥିଲା । ଅର୍ଥାଭାବ କିନ୍ତୁ ଏହି ଉଚ୍ଚାଭିଳାଷୀ ଓ ଜ୍ଞାନପିପାସୁ ତରୁଣଙ୍କ ଉଚ୍ଚଶିକ୍ଷା କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରିପାରିନଥିଲା । ଖ୍ରୀ: ୧୯୩୦ରେ କଟକ ରେଭେନ୍ସା କଲେଜରୁ ଇଂରାଜୀ ଅନର୍ସ ସହ ବି. ଏ. ପାସ୍ କରି ୧୯୩୨ରେ ପାଟନା ବିଶ୍ୱବିଦ୍ୟାଳୟରୁ କୃତିତ୍ୱର ସହିତ ଇଂରାଜୀରେ ଏମ୍. ଏ. ଡିଗ୍ରୀ ହାସଲ କରିଥିଲେ । ସେ ସମୟରେ ଉଚ୍ଚଶିକ୍ଷାପ୍ରାପ୍ତ ଯୁବକଙ୍କ ପାଇଁ ଓଡିଶାରେ ସରକାରୀ ଚାକିରିର ଘୋର ଅଭାବ । ନିଜର ସମସ୍ତ ଶିକ୍ଷାଗତ ଯୋଗ୍ୟତା ସତ୍ତ୍ୱେ ମାନସିଂହଙ୍କୁ କିଛିକାଳ ପାଇଁ ବିଭିନ୍ନ ହାଇସ୍କୁଲରେ ଶିକ୍ଷକତା କରିବାକୁ ପଡ଼ିଥିଲା । ପୂର୍ବତନ କରଦରାଜ୍ୟ କଳାହାଣ୍ଡିରେ ଶିକ୍ଷକତା କରୁଥିବା ସମୟରେ କେତେକ ଶୁଭେଚ୍ଛୁ ବନ୍ଧୁଙ୍କ ସାହାଯ୍ୟ ଓ ନିଜର ସ୍ୱଳ୍ପ ସଂଚୟକୁ ସମ୍ବଳ କରି ଇଂରାଜୀ ସାହିତ୍ୟରେ ପିଏଚ୍. ଡି. କରିବା ପାଇଁ ସେ ବିଲାତ ଯାତ୍ରା କରିଥିଲେ । କାଳିଦାସ ଓ ସେକ୍ସପିଅରଙ୍କ ସାହିତ୍ୟକୃତି ଉପରେ ପାଣ୍ଡିତ୍ୟପୂର୍ଣ୍ଣ ତୁଳନାତ୍ମକ ସନ୍ଦର୍ଭ ଲେଖି ଡରହାମ୍ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ଲାଭ କରିବାପରେ ସେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ । ଇଂରାଜୀ ସାହିତ୍ୟରେ ପିଏଚ୍. ଡି.

ଡିଗ୍ରୀ ଲାଭ କରିବା ଦିଗରେ ସେ ପ୍ରଥମ ଓଡିଆ ଏବଂ ଏଥିପାଇଁ ଓଡ଼ିଶାର ମୁଖ୍ୟ ସାଂସ୍କୃତିକ ଓ ବାଣିଜ୍ୟକେନ୍ଦ୍ର କଟକଠାରେ ତାଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ସେତେବେଳକୁ ଜଣେ ପ୍ରତିଭାବାନ୍ କବି ଭାବରେ ମଧ୍ୟ ସେ ଓଡ଼ିଶାରେ ପ୍ରଖ୍ୟାତ ହୋଇସାରିଥିଲେ । କିନ୍ତୁ ଏ ସମସ୍ତ ଉଚ୍ଚ ଶିକ୍ଷାଗତ ଯୋଗ୍ୟତା ଓ ସାହିତ୍ୟକ ପ୍ରତିଭା ସତ୍ତ୍ୱେ ଜୀବିକା ଅର୍ଜନ ପାଇଁ ମାନସିଂହଙ୍କୁ କଠୋର ସଂଗ୍ରାମ କରିବାକୁ ପଡ଼ିଥିଲା । ଚାକିରି ଜୀବନରେ ବହୁ ଉତ୍‌ଥାନ ପତନ ମଧ୍ୟ ଦେଇ ତାଙ୍କୁ ସ୍କୁଲ୍ ଶିକ୍ଷକ, କଲେଜ ଅଧ୍ୟାପକ, ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍‌ସିର ଏଡୁକେସନାଲ୍ ଆଡ୍‌ଭାଇଜର, ପ୍ରୌଢ଼ଶିକ୍ଷା ଅଫିସର, ସ୍କୁଲ ଇନ୍‌ସପେକ୍ଟର ଓ ସମ୍ବଲପୁରସ୍ଥ ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ରୂପେ କାର୍ଯ୍ୟ କରିବାକୁ ପଡ଼ିଥିଲା । ସେ ନିଜର ନୀତି ଓ ଆଦର୍ଶରେ ସର୍ବଦା ଦୃଢ଼ରହୁଥିଲେ ଏବଂ ନୀତିଗତ ପ୍ରଶ୍ନ ଉପରେ କୌଣସି ସାଲିସ୍ କରୁନଥିଲେ । ସେ ଥିଲେ ସରଳ, ସ୍ପଷ୍ଟବାକ୍ ଏବଂ ନିର୍ଭୀକ । ଅପ୍ରିୟ ସତ୍ୟ କହିବାକୁ ସେ କେବେହେଁ ପଶ୍ଚାତ୍‌ପଦ ହେଉନଥିଲେ । ଏଭଳି ଜଣେ ସ୍ୱାଧୀନଚେତା ବ୍ୟକ୍ତି ପକ୍ଷରେ ଚାକିରି କ୍ଷେତ୍ରରେ ଉନ୍ନତି କରିବା ଯେ ଏକ ବିଡ଼ମ୍ବନା ଏହା ସହଜରେ ଅନୁମେୟ । ଏଥିପାଇଁ ଚାକିରି ଜୀବନରେ ତାଙ୍କୁ ବହୁ ଅସୁବିଧା ଭୋଗକରିବାକୁ ପଡ଼ିଥିଲା ଏବଂ ସମୟେ ସମୟେ ଚାକିରି ନଥାଇ ବେକାର ହୋଇ ବସିରହିବାକୁ ହୋଇଥିଲା । ତାଙ୍କର ଆତ୍ମଜୀବନୀମୂଳକ ପୁସ୍ତକ 'ଶିକ୍ଷାବିତ୍‌ର ଗାଥା'ରୁ ତାଙ୍କ ସଂଘର୍ଷମୟ ଜୀବନର ବହୁକଥା ଜାଣିବାକୁ ମିଳେ । ମାନସିଂହ ସ୍ୱଭାବକବି ଗଙ୍ଗାଧର ମେହେରଙ୍କ କାବ୍ୟପ୍ରତିଭାର ଜଣେ ଉଚ୍ଚ ପ୍ରଶଂସକ ଥିଲେ । ୧୯୪୯ ଠାରୁ ୧୯୫୬ ପର୍ଯ୍ୟନ୍ତ ଦୀର୍ଘ ସାତବର୍ଷ ଧରି ପଶ୍ଚିମ ଓଡ଼ିଶାର ପ୍ରମୁଖ ଉଚ୍ଚ ଶିକ୍ଷାନୁଷ୍ଠାନ ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷତା ତାଙ୍କ ଶିକ୍ଷାବିତ୍ ଜୀବନର ଏକ ଅବିସ୍ମରଣୀୟ ଅଧ୍ୟାୟ । ଏହି ଶିକ୍ଷାନୁଷ୍ଠାନର ସର୍ବାଙ୍ଗୀନ ଉନ୍ନତିକଳ୍ପେ ସେ ବହୁ ଉଦ୍ୟମ କରିଥିଲେ । ଛାତ୍ରଛାତ୍ରୀମାନଙ୍କୁ ଭବିଷ୍ୟତର ସୁନାଗରିକ କରି ଗଢ଼ି ତୋଳିବା ପାଇଁ ସେମାନଙ୍କ ଚରିତ୍ର ଗଠନ ଓ ଶୃଙ୍ଖଳାଜ୍ଞାନ ପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା । କଲେଜର ଛାତ୍ର, ଅଧ୍ୟାପକ ଓ କର୍ମଚାରୀମାନଙ୍କ ସୁବିଧା ପାଇଁ ତାଙ୍କ ଉଦ୍ୟମରେ କୋ-ଅପରେଟିଭ୍ ଷ୍ଟୋର୍, କ୍ୟାଣ୍ଟିନ୍, ଗୋଶାଳା ଓ କୃଷି ଉଦ୍ୟାନ ପ୍ରତିଷ୍ଠା କରାଯାଇଥିଲା । ବିଭିନ୍ନ ସଭାସମିତି ଓ ପାଠଚକ୍ରମାନ ଅନୁଷ୍ଠିତ ହୋଇ କଲେଜର ସାଂସ୍କୃତିକ ବାୟୁମଣ୍ଡଳ ସଦାଉଜ୍ଜୀବିତ ଥିଲା । ଛାତ୍ରଛାତ୍ରୀଙ୍କ ଅଭିଭାବକମାନଙ୍କ ସହିତ ସେ ସୁସଂପର୍କ ରକ୍ଷାକରିଥିଲେ । ସମଗ୍ର ଶିକ୍ଷାୟତନ ଥିଲା ତାଙ୍କର ଏକ ପରିବାର ଭଳି, ଯାହାର ସ୍ନେହଶୀଳ ଦକ୍ଷ ମୁରବି ଥିଲେ ସେ ନିଜେ ।

କବିପତ୍ନୀ ହେମଲତା ମାନସିଂହ ଜଣେ ସୁଲେଖିକା ଓ ସୁଗୃହିଣୀ । କବିଙ୍କ ସଂଘର୍ଷମୟ ଜୀବନର ସମସ୍ତ ଅଭାବ ଅସୁବିଧା ସତ୍ତ୍ୱେ ସେମାନେ ତିନିପୁତ୍ର ଓ ଦୁଇ କନ୍ୟାଙ୍କର ଶିକ୍ଷାଦୀକ୍ଷାରେ କୌଣସି ଅବହେଳା କରିନଥିଲେ । ଜ୍ୟେଷ୍ଠପୁତ୍ର ଲଲାଟେନ୍ଦୁ ମାନସିଂହ କାନାଡ଼ାର ଏକ ବିଶ୍ୱବିଦ୍ୟାଳୟରେ ପ୍ରଫେସର୍ । ଆଇ.ଏ.ଏସ୍. ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଥିବା

ଦ୍ବିତୀୟ ପୁତ୍ର ଲଳିତେନ୍ଦୁ ମାନସିଂହ ଭାରତୀୟ ପ୍ରଶାସନ ସେବାରେ ଯୋଗଦେଇ ବିଭିନ୍ନ ଦେଶରେ ଥିବା ଭାରତୀୟ ଦୂତାବାସରେ ରାଷ୍ଟ୍ରଦୂତ ପଦରେ ଅବସ୍ଥାପିତ । ତୃତୀୟ ପୁତ୍ର ଲାବଣ୍ୟେନ୍ଦୁ ମାନସିଂହ ଓ ତାଙ୍କର ପତ୍ନୀ ଉଭୟେ ଭାରତୀୟ ପ୍ରଶାସନ ସେବାରେ ନିଯୁକ୍ତ । ଦୁଇକନ୍ୟା ନିବେଦିତା ଓ ସଂଘମିତ୍ରା ବିବାହିତା । ଏକ ଶିଶୁକନ୍ୟାର ମୃତ୍ୟୁ କବିଙ୍କୁ ଦାରୁଣ ଦୁଃଖ ଦେଇଥିଲା, ଯାହାର ଶୋକୋଚ୍ଛ୍ବାସ ତାଙ୍କଦ୍ବାରା ରଚିତ କେତେକ ଶୋକଗୀତିକାରେ ପ୍ରାଣସ୍ପର୍ଶୀ ଭାଷାରେ ପ୍ରକାଶ ପାଇଛି ।

ଓଡ଼ିଆ ସାହିତ୍ୟକୁ ବହୁଭାବେ ଋଦ୍ଧିମନ୍ତ କରିଥିବା ଉତ୍କଳଜନନୀଙ୍କର ଏହି ବରପୁତ୍ରଙ୍କର ଦେହାବସାନ ହୋଇଥିଲା ୧୯୭୩ ମସିହା ଅକ୍ଟୋବର ମାସ ୧୧ ତାରିଖ ବର୍ଷଣମୁଖର କୁମାର ପୂର୍ଣ୍ଣିମା ତିଥିରେ । ରୂପ ଓ ଜ୍ୟୋତ୍ସ୍ନାର ଆଜୀବନ ଉପାସକ କବିଙ୍କ ତିରୋଧାନରେ ସମବେଦନା ଜଣାଇ ସେଦିନ ପ୍ରକୃତି ଯେପରି ଘନମେଘରେ ଗଗନ ପବନ ଆଚ୍ଛାଦିତ କରିଥିଲା । ତାଙ୍କ ମୃତ୍ୟୁରେ ଓଡ଼ିଶାର ସାହିତ୍ୟାକାଶରୁ ଏକ ଉଜ୍ଜ୍ୱଳ ତାରକା ଚିରକାଳପାଇଁ ଅସ୍ତମିତ ହୋଇଗଲା ।

## ମାନିସଂହଙ୍କ କାବ୍ୟ ପ୍ରତିଭା—

ଅତି ତରୁଣ ବୟସରୁ ମାନସିଂହଙ୍କ କାବ୍ୟପ୍ରତିଭାର ଉନ୍ମେଷ ହୋଇଥିଲା । ଛାତ୍ର ଜୀବନରେ ଲିଖିତ ତାଙ୍କର କୋଣାର୍କ, ବାରବାଟୀ, ବଂଶୀର ଡାକ, ରୂପସୀର ପୂଜା, ତରୁଣ କବିର ଆଶା, ପ୍ରାବୃଟ ସମ୍ଭାଷଣ, ରେଙ୍ଗୁନ ଚିଠି, ନିଦ୍ରିତ ଭଗବାନ ପ୍ରଭୃତି କବିତା ସେ ସମୟରେ ପ୍ରକାଶପାଉଥିବା ଉତ୍କଳସାହିତ୍ୟ, ସହକାର ପ୍ରଭୃତି ପତ୍ରିକାରେ ପ୍ରକାଶପାଇ ପାଠକମାନଙ୍କ ଦ୍ବାରା ବିଶେଷ ଆଦୃତ ହୋଇଥିଲା । ୧୯୩୧ ରେ ପ୍ରଗତିସଂଘଦ୍ୱାରା ପ୍ରଥମେ ପ୍ରକାଶ ପାଇଥିବା 'ଧୂପ' କବିତା ପୁସ୍ତକ ମାନସିଂହଙ୍କ କାବ୍ୟ ଜୀବନର ଏକ ବିଶେଷ ଘଟଣା । ଏହା ତାଙ୍କୁ ପ୍ରଣୟାନୁଭୂତିର ଜଣେ ବିଦଗ୍ଧ କବି ରୂପେ ଅସାମାନ୍ୟ ସଫଳତା ଆଣିଦେଇଥିଲା । ବ୍ୟକ୍ତିନିଷ୍ଠ ଗୀତିକବିତା ରଚନାରେ ସେ ପାଶ୍ଚାତ୍ୟ କବିତା, ବିଶେଷକରି ଇଂରେଜ କବିମାନଙ୍କର ବ୍ୟକ୍ତିଗତ ଅନୁଭୂତି ପ୍ରକାଶରେ ଅବାଧ ସ୍ୱାଧୀନତା ଓ ସେମାନଙ୍କ କବିତାର ଭାଷା ଓ ଛନ୍ଦବିନ୍ୟାସଦ୍ୱାରା ବିଶେଷଭାବେ ଅନୁପ୍ରାଣିତ ହୋଇଥିବା ବିଷୟ କବି ନିଜେ ସ୍ୱୀକାର କରିଅଛନ୍ତି । 'ଧୂପ'ର ଭୂମିକାରେ ସେ ଲେଖିଅଛନ୍ତି– "କାବ୍ୟଯୋଗ୍ୟ ଅନୁଭୂତି ଲେଖକ ଜୀବନରେ ଘଟିଥିଲେ ହେଁ, ଇଂରେଜ କବିମାନଙ୍କ ସଙ୍ଗେ ପରିଚୟ ଘଟିନଥିଲେ ସେ ଅନୁଭୂତି ଏପ୍ରକାର ଆତ୍ମପ୍ରକାଶ କରିନଥାନ୍ତା । ଆମ ସାହିତ୍ୟରେ ପ୍ରେମକବିତାର ଅରଣ୍ୟ ରହିଛି– କିନ୍ତୁ ସେଥିରେ ବିଚିତ୍ରତା ନାହିଁ । ସେ ଜଙ୍ଗଲ ଯେପରି ଗୋଟିଏ ଗଛର ଜଙ୍ଗଲ । କିନ୍ତୁ ଇଂରେଜ ସାହିତ୍ୟ ପ୍ରତ୍ୟେକ କବିର ବ୍ୟକ୍ତିଗତ ବିଭିନ୍ନ ଅଭିଜ୍ଞତାରେ ଶବଳିତ । ତାହା ଦେଖି ହିଁ ନିଜର ଅଭିଜ୍ଞତାକୁ ନିଜର ସ୍ୱତନ୍ତ୍ର ରୀତିରେ ପ୍ରକାଶ କରିବାକୁ ଲେଖକର ସାହସ ହେଲା । ଅନେକ କବିତା ଇଂରାଜୀ ଛନ୍ଦର ଅନୁକରଣରେ ରଚିତ ।" 'ଧୂପ'ରେ ପ୍ରଣୟସିକ୍ତ ତରୁଣ କବି ପ୍ରାଣର ଅପୂର୍ବ

ଭାବୋଚ୍ଛ୍ୱାସ, ସରଳ ମଧୁର ଭାଷା ଏବଂ ପ୍ରବହମାନ ଛନ୍ଦ ମାଧ୍ୟମରେ ଏକ କାବ୍ୟ ନିର୍ଝରିଣୀ ସୃଷ୍ଟି କରିଛି । 'ଏଇ ସହକାର ତଳେ', 'ଆଷାଢ଼ ଅଭିସାର', 'ବର୍ଷା-ବିରହ' ପ୍ରଭୃତି କବିତାରେ କବି ପ୍ରଣୟାନୁଭୂତିର ବୈଚିତ୍ର୍ୟମୟ ପ୍ରକାଶ ପାଇଁ ପ୍ରାକୃତିକ ପରିବେଶର ଯେଉଁଭଳି ଉପଯୋଗ କରିଅଛନ୍ତି, ତାହା ତାଙ୍କର ପ୍ରକୃତିପ୍ରୀତି ଓ କଳାକୁଶଳତାର ସ୍ୱାକ୍ଷର ବହନ କରେ । ନୀତିବାଦୀମାନେ 'ଧୂପ'କୁ ପରକୀୟା ପ୍ରେମ ବା ଦେହଜ ପ୍ରେମର ଆବ୍ରୁହୀନ ପରିପ୍ରକାଶ ବୋଲି ସମାଲୋଚନା କଲାବେଳେ, ରସଗ୍ରାହୀ ଶତ ଶତ ଓଡ଼ିଆ ପାଠକଙ୍କ କଣ୍ଠରେ ଧୂପର ପଂକ୍ତିଗୁଡ଼ିକ ଅନୁରଣିତ ହେଉଥିଲା । ମାନବୀୟ ପ୍ରେମର ମିଳନ, ବିରହ, ଆନନ୍ଦ ଓ ଅଶ୍ରୁର ମନ୍ମୟ ପ୍ରକାଶ 'ଧୂପ'କୁ ଏକ ଉଚ୍ଚକୋଟୀର ପ୍ରେମକାବ୍ୟରେ ପରିଣତ କରିଛି । 'ଧୂପ'ର ଶେଷ କବିତା 'ପ୍ରେମ ଓ ମୃତ୍ୟୁ'ରେ କବି ଲେଖିଛନ୍ତି—

''ଶୁଣିବ ଯେବେ ପ୍ରିୟା ଗୋ ମୋର
ପ୍ରଣୟୀ ତବ ଜଗତେ ନାହିଁ,
ଆସିବ ମୋର ଭସ୍ମ ପାଶେ
ଦେବ ହେ ତାରେ ଦେହର ଛାଇ ।
ପାରିବ ଯଦି ଭସ୍ମ ପରେ
ପଦ୍ମପାଦ ଚାଳିବ ଧୀରେ,
ଜୀବନ ପୁଣି ଲଭିବି ସଖି,
ନିଶ୍ଚୟ ମୁଁ ମରଣ-ତୀରେ ।''

'ଧୂପ' ବୋଧହୁଏ ମାନସିଂହଙ୍କର ଶ୍ରେଷ୍ଠ ପ୍ରେମକବିତା । ଏଥିରେ ପ୍ରକାଶ ପାଇଥିବା ତାରୁଣ୍ୟର ଉଦ୍ଦାମ ପ୍ରେମ ସ୍ରୋତସ୍ୱିନୀ 'ହେମଶସ୍ୟ' ରଚନା କାଳକୁ ଦାମ୍ପତ୍ୟପ୍ରେମ ମନ୍ଦାକିନୀକୁ ରୂପାନ୍ତରିତ ହୋଇସାରିଥିଲା— ''ସୁରା ପାନ ପରେ/ପ୍ରେମ ତବ ସୁଧାସମ ପ୍ରାଣେ କାର୍ଯ୍ୟ କରେ ।'' 'ଧୂପ'ର କବିତାବଳୀ ପ୍ରେମର କଳକଳନାଦିନୀ ଗିରିନିର୍ଝର ହେଲେ 'ହେମଶସ୍ୟ'ର କବିତାଗୁଡ଼ିକ ସୁଧାସ୍ରାବୀ ଅନ୍ତଃସଲୀଳା ଫଲ୍‌ଗୁ ସଦୃଶ । 'ଧୂପ'ର କାବ୍ୟିକ ସୌକୁମାର୍ଯ୍ୟ 'ହେମଶସ୍ୟ'ରେ ଅନେକାଂଶରେ ବ୍ୟାହତ ହୋଇଛି । 'ଧୂପ'ର ଛନ୍ଦବୈଚିତ୍ର୍ୟ ପରିବର୍ତ୍ତେ ମନର କ୍ଷୁଦ୍ର କ୍ଷୁଦ୍ର ଭାବ ପ୍ରକାଶ ପାଇଁ 'ହେମଶସ୍ୟ'ରେ କବି ମୁଖ୍ୟତଃ ସନେଟ୍ ବା ଚତୁର୍ଦ୍ଦଶପଦୀ କବିତାର ସୀମିତ ପରିଧିକୁ ଅଧିକ ଉପଯୋଗୀ ମନେକରିଅଛନ୍ତି ।

ମାନସିଂହଙ୍କ କାବ୍ୟ ସୃଷ୍ଟି ବିପୁଳ— ପ୍ରେମକବିତା ତାହାର ଏକ ଅଂଶବିଶେଷ । ଦେଶାତ୍ମବୋଧ, ପ୍ରକୃତିପ୍ରୀତି, ପଲ୍ଲୀପ୍ରାଣତା, ଦୁଃସ୍ଥମାନବଙ୍କ ପାଇଁ ସମବେଦନା ଏବଂ ଇନ୍ଦ୍ରିୟାତୀତ ଏକ ଦିବ୍ୟ ଅନୁଭୂତି ପାଇଁ ପ୍ରାଣର ଅଭୀପ୍ସା ଇତ୍ୟାଦି ରୋମାଣ୍ଟିକ୍ ସୁଲଭ କାବ୍ୟଚେତନା ତାଙ୍କର ବହୁ କବିତାରେ ପ୍ରକାଶପାଇଛି । ଉତ୍କଳର ଐତିହାସିକ ଗୌରବ, ବୀରତ୍ୱ, ସ୍ୱାଭିମାନ, ଶିଳ୍ପଭାସ୍କର୍ଯ୍ୟ, ନୌବାଣିଜ୍ୟ ଇତ୍ୟାଦି କବିଙ୍କୁ ଉଦ୍‌ବୁଦ୍ଧ କରିବା ସଙ୍ଗେ ସଙ୍ଗେ

ସାଂପ୍ରତିକ କାଳରେ ଅଧଃପତିତ ଓଡ଼ିଶାର ଦୁଃଖଦୁର୍ଦ୍ଦଶା ତାଙ୍କୁ ବ୍ୟଥିତ କରିଛି । 'କୋଣାର୍କ', 'ବାରବାଟୀ', 'ମହାନଦୀରେ ଜ୍ୟୋତ୍ସ୍ନାବିହାର', 'ବନ୍ଦେ ଉତ୍କଳ ଜନନୀ', 'ଉତ୍ତିଷ୍ଠ ଉତ୍କଳ' ପ୍ରଭୃତି କବିତାରେ କବିଙ୍କର ଦେଶାତ୍ମବୋଧ ପ୍ରକଟିତ; କିନ୍ତୁ ତାଙ୍କର ଏ ଦେଶାତ୍ମବୋଧରେ କୌଣସି ସଂକୀର୍ଣ୍ଣତା ନାହିଁ । କୋଣାର୍କର ଶିଳ୍ପଭାସ୍କର୍ଯ୍ୟ ତାଙ୍କୁ ଯେଉଁଭଳି ମୁଗ୍ଧ କରିଛି, ଅଜନ୍ତା, ଏଲିଫାଣ୍ଟାର କଳାନୈପୁଣ୍ୟ ପାଇଁ ସେ ସେଇଭଳି ଆନନ୍ଦିତ ଓ ଗର୍ବିତ । ସେ ଥିଲେ ରୂପ ଓ ସୌନ୍ଦର୍ଯ୍ୟର ପୂଜାରୀ । ସତ୍ୟ, ଶିବ ଓ ସୁନ୍ଦର ଥିଲା ତାଙ୍କ ଜୀବନର ପରମ ଧ୍ୟେୟ । ବିଭିନ୍ନ କବିତାରେ ଓଡ଼ିଶାର ବରପୁତ୍ର ସାମନ୍ତ ଚନ୍ଦ୍ରଶେଖର, ଉତ୍କଳମଣି ଗୋପବନ୍ଧୁ, କବିବର ରାଧାନାଥ, କବି ଗୋପାଳକୃଷ୍ଣ ପ୍ରଭୃତିଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ସହିତ ଜାତିର ପିତା ମହାତ୍ମାଗାନ୍ଧି, ବିଶ୍ୱକବି ରବୀନ୍ଦ୍ରନାଥ, ସନ୍ଥ ବିନୋବା ପ୍ରଭୃତିଙ୍କ ପ୍ରତି ମଧ୍ୟ ଅନ୍ତରର ଶ୍ରଦ୍ଧା ନିବେଦନ କରିଛନ୍ତି । କବିଙ୍କର ଦେଶାତ୍ମବୋଧ 'ଅଗ୍ରଣୀ ଭାରତ', 'ଭବିଷ୍ୟତ ଭାରତବର୍ଷ', 'ରହ ଭରତୀୟ' ଇତ୍ୟାଦି କବିତାର ସର୍ବଭାରତୀୟ ଭାବନାରୁ ବିଶ୍ୱମାନବିକତା ଦିଗକୁ ସଂପ୍ରସାରିତ । ବହୁ କବିତା, ବିଶେଷକରି 'କମଳାୟନ' କାବ୍ୟରେ ସେ ବିଶ୍ୱମୈତ୍ରୀର ଉଦାତ୍ତବାଣୀ ଶୁଣାଇଅଛନ୍ତି ।

ପ୍ରକୃତି ବର୍ଣ୍ଣନା ମାନସିଂହଙ୍କ କାବ୍ୟ କବିତାର ଏକ ବିଶେଷ ଆକର୍ଷଣ । ପ୍ରକୃତିର ଚାରୁଚିତ୍ରଶାଳା ଚିଲିକା କୋଳରେ କବିଙ୍କର ଜନ୍ମ ଏବଂ ଚିଲିକାର ପ୍ରାକୃତିକ ସୌନ୍ଦର୍ଯ୍ୟ ତାଙ୍କ ରୂପପିପାସୁ କବି ପ୍ରାଣରେ ଗଭୀର ରେଖାପାତ କରିଥିଲା, ଯାହାର ବର୍ଣ୍ଣାଢ଼୍ୟ ବର୍ଣ୍ଣନା ତାଙ୍କର ବହୁ କାବ୍ୟକବିତା, ବିଶେଷକରି 'କମଳାୟନ' କାବ୍ୟ ଏବଂ 'ହେମଶସ୍ୟ'ର ଅନେକ କବିତାରେ ସୁନ୍ଦରଭାବେ ରୂପାୟିତ ହୋଇଛି । 'ହେମଶସ୍ୟ'ର 'ପ୍ରିୟ ଭୂମି' କବିତାରେ ନିଜ ଜନ୍ମଭୂମିର ବର୍ଣ୍ଣନା ସେ ନିମ୍ନମତେ କରିଅଛନ୍ତି—

''ବିସ୍ତୀର୍ଣ୍ଣ ପ୍ରକୃତି ଯହିଁ ଦିଗମ୍ବର ବେଶେ
ବୃକ୍ଷହୀନ-ହେମକାନ୍ତ-ସିକତା ବିସ୍ତାରେ
ମହୋଦଧି ତଟ ପ୍ରାନ୍ତେ । ସିନ୍ଧୁ-ସିକତାରେ
କ୍ରୀଡ଼ନ୍ତି ନିଶୀଥେ ତହିଁ ଜଳକନ୍ୟାଗଣ
କିଆକୁଞ୍ଜେ ଲୁଚକାଳି, କୋମଳ ଚରଣ
ବୁଡ଼େ ନାହିଁ ବାଲୁକାରେ । ବର୍ଷାରମ୍ଭେ ତହିଁ
ପୁନାଗ କୁସୁମଗନ୍ଧ ପ୍ରାଣ ଦିଏ ଦହି
ବିରହୀ ତରୁଣଙ୍କର । କ୍ଷୁବ୍ଧ ପାରାବାର
ଢାଳେ ଚୂର୍ଣ୍ଣ-ମଣି-ଚୂଡ଼ ଦୀର୍ଘ-ଊର୍ମିବାର,
ସେ ଭୂମିର ପଦତଳେ; ତା' ଗୁରୁଗର୍ଜନ
ରଚେ ତହିଁ ଶାଶ୍ୱତିକ ମୃଦଙ୍ଗ ଘୋଷଣ ।''

ମାନସିଂହଙ୍କ 'କମଳାୟନ', 'ସାଧବଝିଅ', 'ଜେମା' ପ୍ରଭୃତି କାବ୍ୟ; 'ଶୁଭଦୃଷ୍ଟି', 'ଉପେକ୍ଷିତା', 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' ଭଳି ଦୀର୍ଘ କବିତା ତଥା କେତେକ ଗୀତିକବିତାରେ ପ୍ରକୃତି ବର୍ଣ୍ଣନାର ବହୁ ସୁନ୍ଦର ଦୃଷ୍ଟାନ୍ତ ରହିଛି । ଜ୍ୟୋତ୍ସ୍ନା ପ୍ରତି କବିଙ୍କର ଏକ ସ୍ୱତନ୍ତ୍ର ଆକର୍ଷଣ ଥିବାଭଳି ମନେହୁଏ । କୋଣାର୍କ, କୋଣାର୍କର ଲାସ୍ୟଲୀଳା, ପୂଜାରିଣୀ କାବ୍ୟନାଟିକା, ମହାନଦୀରେ ଜ୍ୟୋତ୍ସ୍ନାବିହାର ପ୍ରଭୃତି କବିତା ତଥା 'ହେମଶସ୍ୟ'ରେ ଜ୍ୟୋତ୍ସ୍ନାରଜନୀର ମୁଗ୍ଧ ବର୍ଣ୍ଣନା ଦେଖିବାକୁ ମିଳେ । ଜ୍ୟୋତ୍ସ୍ନାବିଧୌତ ରଜନୀରେ ମହାନଦୀରେ ଜ୍ୟୋତ୍ସ୍ନାବିହାର ଶେଷକରି ଫେରିବାବେଳେ କବିକଣ୍ଠରୁ ନିଃସୃତ ହୋଇଛି:—

"ଇଚ୍ଛା ମୋ, ହୁଅନ୍ତା ଏହି ନିର୍ମଳା ରଜନୀ
ଅସରା, ମୁଁ ଖୋଜୁଥାନ୍ତି ସତ୍ୟ ଶୁଭ୍ରତାରେ
ଏ ସୁନ୍ଦର ଜ୍ୟୋତ୍ସ୍ନାତଳେ, ବାହି ଏ ତରଣୀ
ମୃତ୍ୟୁଯାଏ, ନ ଫେରି ସେ ମହା ଅନ୍ଧକାରେ ।"

ପଲ୍ଲୀରେ ଜନ୍ମଗ୍ରହଣ କରିଥିବା ମାନସିଂହଙ୍କର ପଲ୍ଲୀଜୀବନ ସହିତ ଘନିଷ୍ଠ ପରିଚୟ ଥିଲା । ତାଙ୍କର 'ପଲ୍ଲୀର ସନ୍ଧ୍ୟା', 'ବର୍ଷା ସନ୍ଧ୍ୟା', 'ବିଲ-ଲକ୍ଷ୍ମୀ', 'ପଲ୍ଲୀପ୍ରିୟା', 'ପଲ୍ଲୀ-ସ୍ନାନଘାଟେ', 'ରେଙ୍ଗୁନ ଚିଠି', 'ଘରପଶା', 'ନଷ୍ଟପଲ୍ଲୀ', 'ଅନୂଢ଼ା', 'କଣ୍ଟକାଚ' ପ୍ରଭୃତି କବିତାରେ ପଲ୍ଲୀ ପ୍ରକୃତିର ଜୀବନ୍ତ ବର୍ଣ୍ଣନା ସହିତ ପଲ୍ଲୀଜୀବନର ସୁଖଦୁଃଖଭରା କାହାଣୀ ସରଳ ମାର୍ମିକ ଭାଷାରେ ପ୍ରକାଶ ପାଇଛି । କବିଙ୍କର 'ଜେମା' ଓ 'ସାଧବ ଝିଅ' କାବ୍ୟ ମଧ୍ୟ ତାଙ୍କ ପଲ୍ଲୀପ୍ରାଣତାର ପରିଚୟ ପ୍ରଦାନକରେ । ପଲ୍ଲୀକବି ନନ୍ଦକିଶୋର ବଳଙ୍କ ପରେ ଗ୍ରାମୀଣ ଜୀବନର ସାର୍ଥକ ରୂପକାର ଭାବେ ମାନସିଂହଙ୍କର ଏକ ବିଶିଷ୍ଟ ସ୍ଥାନ ରହିଛି ।

ଯୁଗସଚେତନ କବି ମାନସିଂହଙ୍କ 'ତଳିଆ ଜୀବର ବିଳାପ' ଶିରୋନାମାରେ ପ୍ରକାଶିତ 'ରିକ୍ସାବାଲା', 'ମଜଦୁର', 'କୃଷକ', 'ବଢ଼େଇ', 'କିରାଣି', 'କଳା-ସେବକ', 'ସ୍କୁଲ ମାଷ୍ଟର', 'କବି କହେ' ଓ 'ଭୁଲିଯାଅ ଇତିହାସ' କବିତାରେ ସମାଜର ଦଳିତ ଓ ନିଷ୍ପେଷିତ ଜନତା ପାଇଁ ସମବେଦନାର ସ୍ୱର ଉଚ୍ଚାରିତ । ୧୯୧୭ରେ ସଂଘଟିତ ରୁଷ ବିପ୍ଳବରେ ସର୍ବହରାର ବିଜୟ ପୃଥିବୀର ବହୁ ସାହିତ୍ୟିକ ଓ ବୁଦ୍ଧିଜୀବୀଙ୍କୁ ସାମ୍ୟବାଦୀ ଚିନ୍ତାଧାରାରେ ଉଦ୍‌ବୁଦ୍ଧ କରି ଏକ ନୂତନ ଶ୍ରେଣୀର ସାହିତ୍ୟ ସୃଷ୍ଟି କରିଥିଲା, ଯାହାକୁ କି ପ୍ରଗତିବାଦୀ ବା Progressive Literature କୁହାଯାଇଥିଲା । ଏ ଶତାବ୍ଦୀର ତୃତୀୟ, ଚତୁର୍ଥ ଦଶକରେ ଓଡ଼ିଆ ସାହିତ୍ୟରେ ମଧ୍ୟ ପ୍ରଗତିବାଦୀ ସାହିତ୍ୟର ବିକାଶ ହୋଇଥିଲା । ତଳିଆ ଜୀବନକୁ ନେଇ ଲିଖିତ ମାନସିଂହଙ୍କ କବିତାଗୁଡ଼ିକ ହୁଏତ ଏହି ପ୍ରଭାବର ଫଳ । କିନ୍ତୁ ସେ କୌଣସି ରାଜନୈତିକ ଦଳ ବା ଗୋଷ୍ଠୀର ଅନ୍ତର୍ଭୁକ୍ତ ନଥିଲେ । କେବଳ 'ତଳିଆ ଜୀବର ବିଳାପ'ରେ ନୁହେଁ, ତାଙ୍କର ବହୁ କବିତାରେ ସମାଜର ଦୁସ୍ଥ ଓ ନିର୍ଯ୍ୟାତିତଙ୍କ ପାଇଁ ସହାନୁଭୂତି ପ୍ରକାଶପାଇଛି । ସେ ଥିଲେ ସଂସ୍କାରବାଦୀ ।

ସମାଜର ଅନ୍ଧବିଶ୍ୱାସ, କୁସଂସ୍କାର,ଜାତିପ୍ରଥା, ପୌତ୍ତଳିକତା, କର୍ମକାଣ୍ଡ ଇତ୍ୟାଦିର ବିରୋଧ କରି ସେ କବିତାମାନ ଲେଖିଅଛନ୍ତି । 'ଦେବ-ପୂଜା' କବିତାରେ ଦରିଦ୍ର, ନିପୀଡ଼ିତ ନରନାରାୟଣଙ୍କ ସେବାପାଇଁ ସମାଜକୁ ତାଙ୍କର ଚେତାବନୀ ଅତି ସ୍ପଷ୍ଟ :—

''ଏବେ କାଠ ପଥର ନ ପୂଜି, ଆସ ପୂଜ ଜୀବନ୍ତ ଦେବତା,
ଯା ଆଖିରୁ ଲୁହ ଯିବ ବହି, କହିଦେଲେ ପଦେ ମଧୁକଥା ।
ବନ୍ଦ କର ମନ୍ତ୍ରପାଠ ତବ, ବନ୍ଦ କର କର୍ପୂର ଆରତି,
ଦେଉଳର ବାହାରେ ଦେବତା ହାତ ପାତି ଉଭା ରହିଛନ୍ତି ।
ଦେବ-ଭୋଗ ନିରନ୍ନରେ ଦିଅ, ଦେବ-ସେବା ହେଉ ମାନବରେ,
ଦେବତାର ଦରଶନ ଲଭ, ମାନବର ପ୍ରତି ଘରେ ଘରେ ।''

ମାନବସେବା ଓ ବିଶ୍ୱମୈତ୍ରୀ ହେଉଛି ସାଂପ୍ରତିକ କାଳର ଜୀବନ ଉପରେ ଆଧାରିତ ତାଙ୍କ 'କମଳାୟନ' କାବ୍ୟର ମର୍ମବାଣୀ । ପରିଣତ ବୟସରେ ମାନବତାବାଦୀ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହୋଇ 'ବୁଦ୍ଧ' ନାଟକ ଓ ବୌଦ୍ଧଧର୍ମ ବିଷୟକ ଅନେକ କବିତା ସେ ଲେଖିଛନ୍ତି । କିନ୍ତୁ ସେ ନିରୀଶ୍ୱରବାଦୀ ନଥିଲେ । ସର୍ବଶକ୍ତିମାନ୍ ବିଶ୍ୱସ୍ରଷ୍ଟାଙ୍କ ପାଇଁ ପ୍ରାଣର ଆକୁଳତା ତାଙ୍କର 'ଜୀବନ-ଚିତା', 'କ୍ରୁଶ' ପୁସ୍ତକ ତଥା ଅନ୍ୟାନ୍ୟ ବହୁ କବିତାରେ ଅତି ମର୍ମସ୍ପର୍ଶୀ ଭାଷାରେ ପ୍ରକାଶପାଇଛି । ପ୍ରକୃତିପୂଜାରୀ ପ୍ରମୁଖ ଇଂରାଜୀ ରୋମାଣ୍ଟିକ୍ କବି ଉଇଲିୟମ୍ ୱାର୍ଡ୍ସ୍‌ୱାର୍ଥଙ୍କ ଭଳି ପ୍ରକୃତି ଭିତରେ ଏହି ଭୂମାଙ୍କର ସନ୍ଧାନ ସେ କରିଅଛନ୍ତି । ତାଙ୍କର 'ଶ୍ରୀକୃଷ୍ଣ' କବିତାର କୃଷ୍ଣ ମନ୍ଦିରରେ ପୂଜିତ କୌଣସି ଦେବ ବିଗ୍ରହ ନୁହଁନ୍ତି; ଏ ବିଶ୍ୱ ବ୍ରହ୍ମାଣ୍ଡ ହିଁ ତାଙ୍କର ସ୍ୱରୂପ ।

''ଯା ନୀଳିମା ପରିବ୍ୟାପ୍ତ ମହା ଅନ୍ତରିକ୍ଷେ,
ଯେ ପୀତ-ଦୁକୂଳ ପିନ୍ଧେ ଉଷା, ପ୍ରଦୋଷରେ,
ଯା' ଶିରେ ଚନ୍ଦ୍ରିକା-ଗୁଚ୍ଛ, ମେଘ, ବିଦ୍ୟୁଦ୍‌ବନ୍ତ
ସେ ସୁନ୍ଦର କୃଷ୍ଣ ପଦେ ମୁହିଁ ପୂଜା କରେ ।''

ମାନସିଂହ କେତେକ ଶିଶୁକବିତା ମଧ୍ୟ ରଚନା କରିଅଛନ୍ତି । ଗ୍ରନ୍ଥାବଳୀର 'କିଶୋର କବିତା' ବିଭାଗରେ ସେଗୁଡ଼ିକ ସ୍ଥାନିତ ହୋଇଛି । ଏକ ଶିଶୁକନ୍ୟାର ମୃତ୍ୟୁରେ କବିଙ୍କର ଗଭୀର ଶୋକୋଚ୍ଛ୍ୱାସ କେତେକ ଶୋକଗୀତିକାରେ ପ୍ରାଣସ୍ପର୍ଶୀ ଭାଷାରେ ପ୍ରକାଶପାଇଛି । ବ୍ୟକ୍ତିଗତ ଶୋକୋଚ୍ଛ୍ୱାସ କିଭଳି ମଣିଷକୁ ଏକ ଆଧ୍ୟାତ୍ମିକ ସ୍ତରକୁ ଉନ୍ନୀତ କରିପାରେ, ତାଙ୍କର 'ଶିଶୁର ଦାନ' କବିତା ତାହାର ଏକ ସୁନ୍ଦର ଦୃଷ୍ଟାନ୍ତ—

''ବିଳପିଲି ସିନା ବସି ମୋହ-ମୂଢ଼ତାରେ,
ବୁଝୁଛି ମୁଁ ଏବେ, ମୋର କ୍ଷୁଦ୍ର ହରା-ଧନ
କରିଅଛି ଈଶ୍ୱରେ ଓ ମତେ ମୁଖାମୁଖୀ,
ନାହିଁ ପାରିଥିଲା ଯାହା ବହୁ ଅଧ୍ୟୟନ ।''

ଗୀତିକବିତା (lyric), ଚତୁର୍ଦ୍ଦଶପଦୀ କବିତା (sonnet), ଗାଥାକବିତା (ballad), ଶୋକଗୀତି (elegy) ପ୍ରଭୃତି ପାଶ୍ଚାତ୍ୟ କାବ୍ୟରୀତିକୁ ଓଡ଼ିଆ ସାହିତ୍ୟରେ ଲୋକପ୍ରିୟ କରିବା ଦିଗରେ ମାନସିଂହଙ୍କର ଅବଦାନ କମ୍ ନୁହେଁ । କେତେକ ନୂତନ ଛନ୍ଦର ପରୀକ୍ଷା ନିରୀକ୍ଷା କରିଥିଲେ ବି ମୁଖ୍ୟତଃ ଛନ୍ଦୋବଦ୍ଧ କବିତାରେ ହିଁ ସେ ନିଜର କାବ୍ୟିକ ଉତ୍କର୍ଷ ପ୍ରଦର୍ଶନ କରିଅଛନ୍ତି । ତାଙ୍କର କାଳଜୟୀ କାବ୍ୟକୃତି ପରମ୍ପରା ଓ ନୂତନତ୍ୱର ଏକ ମଧୁର ସମନ୍ୱୟ ।

**ଗଦ୍ୟସ୍ରଷ୍ଟା ମାନସିଂହ :**

ଜଣେ ପ୍ରଭାବଶାଳୀ ଗଦ୍ୟଲେଖକ ଭାବରେ ମାନସିଂହ ଓଡ଼ିଆ ସାହିତ୍ୟରେ ସୁପ୍ରତିଷ୍ଠିତ । ମନନଶୀଳ ପ୍ରବନ୍ଧ, ସମୀକ୍ଷାଧର୍ମୀ ସାହିତ୍ୟ ସମାଲୋଚନା, ଭ୍ରମଣବୃତ୍ତାନ୍ତ, ଜୀବନୀ, ଆତ୍ମଜୀବନୀ, ଅନୁବାଦ ଇତ୍ୟାଦି ଗଦ୍ୟ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ସେ ଯଶସ୍ୱୀ ହୋଇଅଛନ୍ତି । ତାଙ୍କର ଗଦ୍ୟଶୈଳୀ ସରଳ, ପ୍ରାଞ୍ଜଳ ଓ ଆନ୍ତରିକତାପୂର୍ଣ୍ଣ । ସଂସ୍କୃତ, ଦେଶଜ, ଆବଶ୍ୟକସ୍ଥଳେ ଇଂରାଜୀ ଶବ୍ଦ ବ୍ୟବହାର କରି କଥାକହିବା ଭଙ୍ଗୀରେ ଲିଖିତ ତାଙ୍କର ଗଦ୍ୟ ଉପଭୋଗ୍ୟ ତଥା ପ୍ରଭାବଶାଳୀ । ସ୍ୱକୀୟ ମତାମତ ଯେତେ ଅପ୍ରିୟ ହୋଇଥାଉନା କାହିଁକି, ନିର୍ଭୀକ ଭାବରେ ତାହା ପ୍ରକାଶ କରିବା ତାଙ୍କ ପ୍ରବନ୍ଧ ଓ ସମାଲୋଚନାର ଏକ ବିଶେଷତ୍ୱ । ତାଙ୍କର ସାମାଜିକ ପ୍ରବନ୍ଧଗୁଡ଼ିକରେ ଏକ ସଂସ୍କାରବାଦୀ ବ୍ୟକ୍ତିତ୍ୱର ପରିଚୟ ମିଳିଥାଏ । ଉନ୍ନତ ସମାଜ ଗଠନ ପାଇଁ ସେ ଜାତିପ୍ରଥା, ପୌତ୍ତଳିକତା, ପୌରୋହିତ୍ୟ, ଯୌଥପରିବାର ଇତ୍ୟାଦି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଲୋକମାନଙ୍କୁ କର୍ମଠ, ଆତ୍ମନିର୍ଭରଶୀଳ, ଉଦାର, ଉଚ୍ଚାଭିଳାଷୀ ଓ ସଂସ୍କୃତିସମ୍ପନ୍ନ ହେବାପାଇଁ ଉଦ୍‌ବୋଧିତ କରିଅଛନ୍ତି । ଭଗବଦ୍‌ଗୀତା ନିର୍ଦ୍ଦେଶିତ କର୍ମଯୋଗରେ ଗଭୀର ବିଶ୍ୱାସ ତାଙ୍କର ବହୁ ପ୍ରବନ୍ଧରେ ପ୍ରତିଫଳିତ । ସେ ପାରମ୍ପରିକ ସାମାଜିକ ମୂଲ୍ୟବୋଧର ସମର୍ଥକ ଥିଲେ ବି ପ୍ରଥାଜୀର୍ଣ୍ଣ ସାମାଜିକ ବ୍ୟବସ୍ଥାର ପୁନଃସମୀକ୍ଷା ଓ ପୁନର୍ବିନ୍ୟାସ ପାଇଁ ବଳିଷ୍ଠ ଯୁକ୍ତି ବାଢ଼ିଛନ୍ତି । ଓଡ଼ିଶାର ଐତିହାସିକ ଗୌରବ, ବୀରତ୍ୱ, ଶିଳ୍ପ ଭାସ୍କର୍ଯ୍ୟ ଓ ସାଂସ୍କୃତିକ ପରମ୍ପରା ସମ୍ପର୍କରେ ସେ ସଦାସଚେତନ । କିନ୍ତୁ ବର୍ତ୍ତମାନ ଓଡ଼ିଶାର ଅଧଃପତିତ ଅବସ୍ଥାପାଇଁ ସେ ଗଭୀର କ୍ଷୋଭ ପ୍ରକାଶ କରିଅଛନ୍ତି । 'ଓଡ଼ିଆମାନେ ପଛୁଆ ଓ ଦରିଦ୍ର କାହିଁକି' ପ୍ରବନ୍ଧରେ ସେ ଓଡ଼ିଶାବାସୀଙ୍କୁ ଆଳସ୍ୟ ଓ ହୀନମନ୍ୟତା ପରିହାର କରି କର୍ମତତ୍ପର, କର୍ତ୍ତବ୍ୟପରାୟଣ ଓ ଉଚ୍ଚାଭିଳାଷୀ ହେବାପାଇଁ ଏବଂ ନିଜ ସଂସ୍କୃତି ଓ ଚଳଣିରେ ଯାହାକିଛି ଭଲ ତା'ର ସୁରକ୍ଷା ପାଇଁ ଯତ୍ନବାନ୍ ହେବାକୁ ପରାମର୍ଶ ଦେଇଅଛନ୍ତି । ମାନସିଂହଙ୍କ ସାମାଜିକ ଓ ସାହିତ୍ୟିକ ପ୍ରବନ୍ଧଗୁଡ଼ିକ ସଙ୍କଳିତ ହୋଇ 'କବି ଓ କବିତା', 'ଓଡ଼ିଆ ସମାଜ ଓ ସାହିତ୍ୟ', 'ମାଟିର ମହାକବି ସାରଳା ଦାସ', 'ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ' ପ୍ରଭୃତି ପୁସ୍ତକରେ ପ୍ରକାଶପାଇଛି । ସାହିତ୍ୟରେ ପଲ୍ଲବଗ୍ରାହୀତା ଓ ଅନୁକରଣର ସେ ଘୋର ବିରୋଧୀ ଥିଲେ । ତାଙ୍କର ସମସାମୟିକ ସବୁଜ କବିମାନେ ଓଡ଼ିଆ ସାହିତ୍ୟରେ

କେତେକ ନୂତନତା ଆଣିଥିବା ବିଷୟ ସେ ସ୍ୱୀକାର କରିଥିଲେ ବି, ସେମାନେ ବଙ୍ଗଳା ସାହିତ୍ୟର ସବୁଜ ଆନ୍ଦୋଳନ ତଥା ରବୀନ୍ଦ୍ରନାଥଙ୍କର ଅନୁକାରୀ ଥିବାଯୋଗୁଁ 'ପରଧର୍ମ' ପ୍ରବନ୍ଧରେ ସେମାନଙ୍କୁ ସେ ସମାଲୋଚନା କରିଅଛନ୍ତି । ମାନସିଂହଙ୍କର ସାହିତ୍ୟିକ ପ୍ରବନ୍ଧଗୁଡ଼ିକ ଅନେକ ସମୟରେ ବସ୍ତୁନିଷ୍ଠ ନହୋଇ ଅଧିକ ବ୍ୟକ୍ତିନିଷ୍ଠ ଓ ଆବେଗଧର୍ମୀ । କବି ମନନେଇ ନିଜସ୍ୱ ଅଭିରୁଚି ଓ ଦୃଷ୍ଟିକୋଣରୁ ସେ ସାହିତ୍ୟ ଓ ସାହିତ୍ୟିକଙ୍କର ମୂଲ୍ୟାୟନ କରିଅଛନ୍ତି । ତାଙ୍କ ଦ୍ୱାରା ଲିଖିତ 'ଓଡ଼ିଆ ସାହିତ୍ୟର ଇତିହାସ'ରେ ମଧ୍ୟ ଏହି ଦୃଷ୍ଟିଭଙ୍ଗୀ ପ୍ରତିଫଳିତ ।

ମାନସିଂହଙ୍କ ଭ୍ରମଣକାହାଣୀ 'ପଶ୍ଚିମପଥିକ' ତାଙ୍କର ଉଚ୍ଚଶିକ୍ଷା ପାଇଁ ବିଲାତପ୍ରବାସର ଅନୁଭୂତିକୁ ନେଇ ଲିଖିତ । ଇଂରେଜ ଜାତିର ସାମାଜିକ ଜୀବନ, କର୍ମପ୍ରବଣତା, ସମୟାନୁବର୍ତ୍ତିତା ଇତ୍ୟାଦିର ପ୍ରଶଂସା କରିବା ସହିତ ଭାରତର ସାମାଜିକ ଓ ସାଂସ୍କୃତିକ ଜୀବନର ଏକ ତୁଳନା ସେ ଏଥିରେ କରିଅଛନ୍ତି । ଏ ସୁଲିଖିତ ଭ୍ରମଣକାହାଣୀ ସେ ସମୟରେ ପାଠକମାନଙ୍କଦ୍ୱାରା ବିଶେଷ ଆଦୃତ ହୋଇଥିଲା । ସରସ୍ୱତୀ ଫଂକୀରମୋହନ ମାନସିଂହଙ୍କ ଦ୍ୱାରା ଲିଖିତ ଏକ ଉଚ୍ଚକୋଟୀର ଜୀବନୀପୁସ୍ତକ । ଫକୀରମୋହନ ତାଙ୍କ ଆତ୍ମଜୀବନଚରିତରେ ମୁଖ୍ୟତଃ ତାଙ୍କର ବ୍ୟକ୍ତିଗତ ଓ ପ୍ରଶାସନିକ ଜୀବନର ବିଶଦ ବିବରଣୀ ଦେଇଅଛନ୍ତି । ମାନସିଂହ 'ସରସ୍ୱତୀ ଫକୀରମୋହନ' ପୁସ୍ତକରେ ଫକୀରମୋହନଙ୍କ ସାହିତ୍ୟକୃତି ଉପରେ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରି ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ କର୍ଣ୍ଣଧାରରୂପେ ତାଙ୍କର ଗୁରୁତ୍ୱ ଓ ମହତ୍ତ୍ୱ ପ୍ରତିପାଦିତ କରି ଅଛନ୍ତି । ୧୯୬୫ରେ ପ୍ରକାଶିତ 'ଶିକ୍ଷାବିତ୍‌ର ଗାଥା' ମାନସିଂହଙ୍କର ଏକ ଆତ୍ମଜୀବନୀମୂଳକ ରଚନା । ଏଥିରେ ଲେଖକ ନିଜ ସଂଘର୍ଷମୟ ଜୀବନର ବହୁ ତିକ୍ତ ଅନୁଭୂତି ବର୍ଣ୍ଣନା କରିବା ସହିତ ସମସାମୟିକ ସମାଜ, ରାଜନୀତି ଓ ପ୍ରଶାସନର ଏକ ଚିତ୍ର ଉପସ୍ଥାପିତ କରିଅଛନ୍ତି । ନିଜର ସ୍ୱାଧୀନ ଚିନ୍ତାଧାରା ଓ ମତ ପ୍ରକାଶ ପାଇଁ ଚାକିରି ଜୀବନରେ ସେ କିଭଳି ନିର୍ଯ୍ୟାତିତ ହୋଇଥିଲେ ତା'ର ଦୁଃଖପୂର୍ଣ୍ଣ ବିବରଣୀ ସ୍ୱତଃ ପାଠକ ମନରେ ସହାନୁଭୂତି ଉଦ୍ରେକ କରିଥାଏ । ଅନେକ ସ୍ଥଳରେ ସେ ନିଜକୁ ଅଧମ, ମୂର୍ଖ, ଅଯୋଗ୍ୟ ଇତ୍ୟାଦି କହି ଯେଉଁ ଆତ୍ମଦୈନ୍ୟ ପ୍ରକାଶ କରିଅଛନ୍ତି, ତାହା ପରୋକ୍ଷରେ ତାଙ୍କର ଗଭୀର ଆତ୍ମପ୍ରତ୍ୟୟର ହିଁ ପରିଚୟ ଦେଇଥାଏ । 'ଶିକ୍ଷାବିତ୍‌ର ଗାଥା' ଓଡ଼ିଶାର ଜଣେ ପ୍ରମୁଖ ଗୁଣୀ, ଶିକ୍ଷାବିତ୍ ଓ ସାରସ୍ୱତ ସାଧକର ଦୁଃଖ ଅଭିମାନଭରା କାହାଣୀ । କିନ୍ତୁ ଜୀବନର ସମସ୍ତ ଦୁଃଖଦୁର୍ଦ୍ଦଶା ସତ୍ତ୍ୱେ ସେ କେବେ ଭାଙ୍ଗିପଡ଼ିନାହାନ୍ତି କିମ୍ବା ଆତ୍ମବିଶ୍ୱାସ ହରାଇନାହାନ୍ତି ।

ଜଣେ ସଫଳ ଅନୁବାଦକଭାବେ ମଧ୍ୟ ମାନସିଂହ ନିଜର ପରିଚୟ ପ୍ରଦାନ କରିଅଛନ୍ତି । ତାଙ୍କ ଦ୍ୱାରା ଅନୂଦିତ ପୁସ୍ତକ ମଧ୍ୟରୁ 'ଧମ୍ମପଦ'ର ସଟୀକ ଅନୁବାଦ ଓ ସାଧାରଣ ଲୋକ ବୁଝିପାରିବା ଭଳି ଶ୍ରୀମଦ୍ ଭାଗବତ୍ ଗୀତାର ଭାଷ୍ୟରଚନା ବିଶେଷ ଉଲ୍ଲେଖନୀୟ । ମାନସିଂହ ରେଭେନ୍ସା କଲେଜରେ ଛାତ୍ର ଥିବା ସମୟରେ ସେ ରହୁଥିବା ପଶ୍ଚିମ ଛାତ୍ରାବାସର ମୁଖପତ୍ର

'ଊର୍ମି'ର ପ୍ରତିଷ୍ଠାତା-ସଂପାଦକ ଥିଲେ । ପରେ ସେ 'ଆରତି', 'ଶଙ୍ଖ', 'ମେହେରପ୍ରଦୀପ' ଓ ଭୁବନେଶ୍ୱରରୁ ପ୍ରକାଶପାଉଥିବା ଦୈନିକ 'ସ୍ୱରାଜ୍ୟ'ର ସଂପାଦନା କରିଥିଲେ । ଜୀବନର ଶେଷ ଭାଗରେ ସ୍ୱର୍ଗତ ବିଶ୍ୱନାଥ କରଙ୍କ ଦ୍ୱାରା ସଂପାଦିତ 'ଉତ୍କଳ ସାହିତ୍ୟ' ପତ୍ରିକାର ପୁନଃପ୍ରକାଶ ପାଇଁ ଉଦ୍ୟମ କରି ତାଙ୍କ ସଂପାଦନାରେ ଏହାର ଗୋଟିଏ ମାତ୍ର ସଂଖ୍ୟା ପ୍ରକାଶ ପାଇଥିଲା । ଏସବୁ ପତ୍ରପତ୍ରିକାରେ ତାଙ୍କର ସଂପାଦକୀୟ ଥିଲା ମୁଖ୍ୟ ଆକର୍ଷଣ । ଏହା ତାଙ୍କର ପାଣ୍ଡିତ୍ୟ ଓ ସ୍ୱାଧୀନ ଚିନ୍ତାଧାରାର ପରିଚୟ ଦେବା ସଙ୍ଗେ ସଙ୍ଗେ ଓଡ଼ିଆ ଗଦ୍ୟ ସାହିତ୍ୟକୁ ବହୁଭାବେ ପୁଷ୍ଟ କରିଛି ।

## ମାନସିଂହଙ୍କର ଅନ୍ୟାନ୍ୟ ରଚନା—

ମାନସିଂହ କେତେକ ନାଟକ, କାବ୍ୟନାଟିକା ଓ ଏକାଙ୍କିକାର ରଚୟିତା । ତାଙ୍କର 'ରାଜକବି ଉପେନ୍ଦ୍ର', 'ପୁଷ୍ପିତା', 'ପୂଜାରିଣୀ', 'ନଷ୍ଟନୀଡ଼', 'ବାରବାଟୀ', 'ବୁଦ୍ଧ', 'ଦୁର୍ଭିକ୍ଷ', 'ବୁଦ୍ଧ-ଦୂତୀ', 'ଶାସନଚକ୍ର' ଓ 'ପୁଷ୍ପାଭିନୟ'— ଏହି ଦଶଟି ନାଟକ ନାଟିକା ଗ୍ରନ୍ଥାବଳୀରେ ସ୍ଥାନ ପାଇଛି । ଏଥି ମଧ୍ୟରୁ ସାମାଜିକ ନାଟକ 'ନଷ୍ଟନୀଡ଼' ପାଞ୍ଚ ଅଙ୍କ ବିଶିଷ୍ଟ ଏବଂ ଐତିହାସିକ ନାଟକ 'ବାରବାଟୀ' ଓ 'ବୁଦ୍ଧ' ପ୍ରତ୍ୟେକ ଚାରିଅଙ୍କବିଶିଷ୍ଟ । ଦୀର୍ଘ ସଂଳାପ ଓ ବହୁ ଗୀତ ସଂଯୋଜିତ ପୁରାତନ ଶୈଳୀରେ ଲିଖିତ ଏଇ ନାଟକଗୁଡ଼ିକ ଆଧୁନିକ ରଙ୍ଗମଞ୍ଚ ପାଇଁ ବିଶେଷ ଉପଯୋଗୀ ମନେହୁଏନାହିଁ । ସଂସ୍କୃତ ନାଟକ ରୀତିରେ 'ନଷ୍ଟନୀଡ଼'ରେ ସୂତ୍ରଧର ଓ ନଟନଟୀଙ୍କର ସଂଯୋଜନା ମଧ୍ୟ କରାଯାଇଛି । ଏକ ସିଦ୍ଧହସ୍ତ କବିଙ୍କ ଲେଖନୀପ୍ରସୁତ ନାଟକ ନାଟିକାର ଗୀତ ଓ ସଂଳାପର କାବ୍ୟାଂଶ ପାଠକମାନଙ୍କ ପାଇଁ ବିଶେଷ ଉପଭୋଗ୍ୟ । ଏଥିମଧ୍ୟରୁ କିଂବଦନ୍ତୀ ଉପରେ ଆଧାରିତ 'ପୂଜାରିଣୀ' କାବ୍ୟନାଟିକାର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ଏହା 'ଧୂପ'ର ସମସାମୟିକ ରଚନା । ସତ୍ୟବାଦୀରେ ପୂଜିତ ସାକ୍ଷୀଗୋପାଳ ଓ ଦ୍ୱିଜକନ୍ୟା ଲକ୍ଷ୍ମୀ ମଧ୍ୟରେ ପ୍ରଣୟର ଯେଉଁ ହୃଦୟସ୍ପର୍ଶୀ ବର୍ଣ୍ଣନା ଏଥିରେ କରାଯାଇଛି ତାହା 'ଧୂପ'ର ସରଳ ମଧୁର ଭାଷା ଓ ଛନ୍ଦ ବିନ୍ୟାସକୁ ସ୍ମରଣ କରାଇଦିଏ । ଏହି କାବ୍ୟ-ନାଟିକାର ବହୁ ସଂସ୍କରଣ ଏହାର ଲୋକପ୍ରିୟତାର ଏକ ନିଶ୍ଚିତ ପରିଚୟ ।

ମାନସିଂହ ଥିଲେ ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ଜଣେ ସିଦ୍ଧହସ୍ତ ସବ୍ୟସାଚୀ । ତାଙ୍କଦ୍ୱାରା ଇଂରାଜୀ ଭାଷାରେ ଲିଖିତ ପୁସ୍ତକମାନଙ୍କ ମଧ୍ୟରୁ The saga of the Land of Jagannath, History of Oriya Literature, Fakir Mohan Senapati ଏବଂ Kalidas and Shakespeare ବିଶେଷ ଉଲ୍ଲେଖନୀୟ । ଉତ୍କଳ ବିଶ୍ୱବିଦ୍ୟାଳୟଦ୍ୱାରା ନିଯୁକ୍ତ ହୋଇ 'ଓଡ଼ିଆ ଜ୍ଞାନକୋଷ' ସଂକଳନ ଭଳି ଏକ ବୃହତ୍ କାର୍ଯ୍ୟ ସେ ହାତକୁ ନେଇଥିଲେ ଏବଂ ଏନ୍‌ସାଇକ୍ଲୋପେଡ଼ିଆ ବ୍ରିଟାନିକା ଢାଞ୍ଚାରେ ବହୁ ଖଣ୍ଡରେ ଏହାକୁ ପ୍ରକାଶ କରିବାର ପରିକଳ୍ପନା କରି ସେ ଦିଗରେ କାର୍ଯ୍ୟ ଆରମ୍ଭ କରିଥିଲେ । କିନ୍ତୁ ନାନା ବାଧାବିଘ୍ନ ହେତୁ ତାଙ୍କର

ଏ କଳ୍ପନା ସାକାର ହୋଇପାରିନଥିଲା । ଶେଷରେ ଚାରିଖଣ୍ଡରେ ଏକ 'ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ' ପ୍ରକାଶକରି ତାଙ୍କୁ ସନ୍ତୁଷ୍ଟ ରହିବାକୁ ହୋଇଥିଲା ।

ତରୁଣ ବୟସରେ ସାହିତ୍ୟିକ ଜୀବନ ଆରମ୍ଭରୁ ଜୀବନର ଶେଷ ଭାଗ ପର୍ଯ୍ୟନ୍ତ ନିଜର ମୌଳିକ ଦୃଷ୍ଟିଭଙ୍ଗୀ, ସ୍ୱାଧୀନ ଚିନ୍ତାଧାରା ଏବଂ ନିର୍ଭୀକ ମତ ପ୍ରକାଶ ପାଇଁ ତାଙ୍କୁ ବହୁ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଛି । ଚାକିରି ଜୀବନରେ ମଧ୍ୟ ଏଥିପାଇଁ ତାଙ୍କୁ କମ୍ ନିର୍ଯ୍ୟାତନା ଭୋଗ କରିବାକୁ ପଡ଼ିନାହିଁ । ଦୃଢ଼ ମନୋବଳ ଓ ଆତ୍ମବିଶ୍ୱାସର ସହିତ ସେ ଜୀବନରେ ଏ ସମସ୍ତ ସଂଘର୍ଷର ସମ୍ମୁଖୀନ ହୋଇଥିଲେ । ଦୀପଶିଖା ଭଳି ନିଜେ ଜଳି ଜଳି ଓଡ଼ିଶାର ସାହିତ୍ୟ ଓ ସଂସ୍କୃତି ଜଗତକୁ ସେ ଆଲୋକ ଦାନ କରିଯାଇଅଛନ୍ତି । ଜୀବନରେ ସେ ଦେଇଅଛନ୍ତି ଅନେକ କିଛି, କିନ୍ତୁ ପ୍ରତିଦାନରେ କିଛି ପାଇନାହାନ୍ତି । ଜୀବନ ସାୟାହ୍ନରେ ଲିଖିତ 'ସମାଧି' କବିତା ତାଙ୍କ ରୁଦ୍ଧ ଅଭିମାନର ଏକ ଅଶ୍ରୁଳପ୍ରତିଲିପି—

''ହେ ନାଥ, ଭରିଛ ପ୍ରାଣ ନାନା ଲାଞ୍ଛନାରେ,
ଶୂନ୍ୟ ତାହା ଆଜିଯାଏ ଖାଲି ବଞ୍ଚନାରେ,
କେବେ କିନ୍ତୁ ନାହିଁ ଦିଅ ଅଯାଚିତ ନବ ଅପମାନ,
ମାପିତ ହେବାର ମୋର କ୍ଷୁଦ୍ର ଯାହା ନଗଣ୍ୟ ସମ୍ମାନ,
ମାନଦଣ୍ଡେ ଅର୍ଥ, ହାକିମିର,
ବଞ୍ଚେ, ମରେ ମାତ୍ର କବି— ଚକ୍ଷେ ଯା'ର ପରପାଇଁ ନୀର ।
ଛୋଟ ଏକ ସମାଧିଟି ଶ୍ୟାମଘାସ ପରେ
ଥାଇପାରେ ପଲ୍ଲୀ ବା ନଗରେ,
ଏକମାତ୍ର ଚିହ୍ନରୂପେ ଦୀନ ଏହି ପୃଥିବୀ-ବାସୀର,
ମୃତ୍ୟୁ-ରାଜ୍ୟେ ଯିବି ଯେବେ, ଛାଡ଼ି କୋଳ ମାଆ ଧରିତ୍ରୀର ।
ବସନ୍ତର ପୁଷ୍ପୋତ୍ସବେ, ଶାରଦ ଜ୍ୟୋତ୍ସ୍ନାରେ
ସ୍ମରି କେବେ ମୋ ଦେଶର ଯୁବକ ଯୁବତୀ,
ଆସି ସେ ସମାଧି ପରେ ପୁଷ୍ପ ଢାଳି ପ୍ରୀତିଭରେ
କବିରେ ଦେବେ ସେ ଯଦି ଶ୍ରଦ୍ଧାର ଆରତି,
ସେହି ସେ ହୋଇବ ମୋର ଶ୍ରେଷ୍ଠ ପୁରସ୍କାର,
ସେହି ମୋର ମାନଦଣ୍ଡ ଜୀବନ-ଯାତ୍ରାର ।''

ମକର ସଂକ୍ରାନ୍ତି
ତା୧୪ ।୧ ।୧୯୯୪

ଦୁର୍ଗାଚରଣ କୁଅଁର

# ଧୂପ

## ଭୂମିକା

ଏସବୁ କବିତା ଉତ୍କଳର ପାଠକପାଠିକାମାନଙ୍କ ହାତରେ ଦେଲାବେଳେ ଲେଖକର ଛାତି ଆଶଙ୍କା ଓ ଭୟରେ ମେଘାୟିତ ହୋଇଉଠୁଛି । ଯୌବନର ଅନୁଭୂତି-ପ୍ରଚୁର ଦିନମାନଙ୍କରେ ଯା'ର ଯା'ର ସଖ୍ୟ ଲାଭହେଲା, ତାଙ୍କୁ ନେଇ ଉଚ୍ଛ୍ୱସିତ ଭାବରେ ଜଣେ ଲେଖକ ଦି'ପଦ ଗାଇଦେଇଛି । ଦଳିତ ଅବହେଳିତ ଜୀବନରେ ସୁଖ ଓ ଦୁଃଖକୁ ଏପରି ଭାବରେ ଭାଷାରେ ପ୍ରକାଶ କରିବା ଏକ ବଡ଼ ବିଳାସ । ତେଣୁ ଏସବୁ ନୈତିକ କି ଅନୈତିକ ଏ ତତ୍ତ୍ୱ ନିରୂପଣ କରିବାର ପ୍ରବୃତ୍ତି କେବେହେଲେ ଲେଖକର ହୋଇନାହିଁ । ସେହି ଭାର ସେ କାଳ ହସ୍ତରେ ଛାଡ଼ିଦେଇଛି । କିନ୍ତୁ ଗୋଟିଏ କଥା ମନରେ ଉଠେ, ଯେଉଁ ଦେଶ ଓ ସମାଜରେ ମୂର୍ଖ ପୂଜାପାନ୍ତି ଓ ପଣ୍ଡିତ ଉପାସେ ମରନ୍ତି, ଯେଉଁଠି ଉପର ପାହାଚର ଲୋକ ତଳ ପାହାଚର ଲୋକକୁ ଉଠେଇନେବା ପରିବର୍ତ୍ତେ ଗୋଇଠାମାରି ଚାପିଦେବାରେ କୃତକୃତ୍ୟ ବୋଧକରନ୍ତି, ଯେଉଁଠି ଧନ ଓ ପଦର ଭୟରେ ଗୁଣ ଦାସ ହୋଇ ରହେ ବା ବାନପ୍ରସ୍ଥ ଅବଲମ୍ବନ କରେ, ସେ ଦେଶ ଓ ସମାଜ ପୁଣି କବିତାର ଅନୈତିକତା ବିଚାର କରିବ ? ରଘୁବଂଶରେ କାଳିଦାସ ଈଶ୍ୱରଙ୍କୁ କବି ବୋଲି ସ୍ତୁତି କରିଛନ୍ତି । ସୃଷ୍ଟିରୂପୀ ମହାକାବ୍ୟର ଲେଖକଭାବରେ ସ୍ରଷ୍ଟା ପ୍ରକୃତରେ ମହାକବି । କବିମାନଙ୍କର ବିଚାର ତାଙ୍କରି ହାତରେ ।

ଅନ୍ୟ ପକ୍ଷରେ ଏହା ବିନା ବିବାଦରେ ସ୍ୱୀକାର୍ଯ୍ୟ ସେ ସାହିତ୍ୟର ସମାଜ ପ୍ରତି ସେହିପରି କର୍ତ୍ତବ୍ୟ, ଅନୁଗତା ପତ୍ନୀର ଯେ କର୍ତ୍ତବ୍ୟ ଉଚ୍ଛୃଙ୍ଖଳ ସ୍ୱାମୀ ପ୍ରତି । ସାଧ୍ୱୀ ସ୍ତ୍ରୀ ଯେପରି ରତି ହୋଇ ସ୍ୱାମୀର ମନୋହରଣ କରିବ, ଅଥଚ ମନ୍ତ୍ରୀ ହୋଇ ତାକୁ ନିୟନ୍ତ୍ରଣ କରିବ, ସାହିତ୍ୟର ସମାଜପ୍ରତି ବ୍ୟବହାରର ସେହି ପଦ୍ଧତି । ନିଷେଧ ଜାଲରେ ବ୍ୟକ୍ତିର ହାତ ଗୋଡ଼ ବାନ୍ଧି ତାକୁ ଜଡ଼ କରିବାର ପ୍ରଥା ଏଠିକାର ପ୍ରଥା ନୁହେଁ । ସାହିତ୍ୟର ପ୍ରଥା ହେଉଛି, ଅନୁଭୂତିର ରସ ସଂଚାର କରି ଜଡ଼କୁ ପ୍ରାଣବାନ୍ ଓ ଆତ୍ମ-ଚେତନ କରିବାରେ । ପ୍ରାଣ ନୀତି ନୁହେଁ କି ଅନୀତି ନୁହେଁ । ତା'ର ଲକ୍ଷଣ ହେଉଛି ଯେ ତାହା ଶକ୍ତିରେ ଚଞ୍ଚଳ ଓ ଅନୁଭୂତିରେ ସରସ । ସାହିତ୍ୟର ଲକ୍ଷଣ ମଧ ଏହା ହିଁ ବା ଏହା ହେବା ଉଚିତ ।

ଏହି କବିତାଗୁଡ଼ିକର ଏ ଲକ୍ଷଣ ଅଛି କି ନାହିଁ ତାହା ମୋ ଅପେକ୍ଷା ପାଠକମାନେ ବେଶୀ ବୋଧ କରିବାର କଥା । ଆମେମାନେ ଏହା ମଧ ସ୍ୱୀକାର କରିବା ଯେ ମାନବିକ ପ୍ରେମ ଅପେକ୍ଷା ଜୀବନରେ ମହତ୍ତର ଓ ସୁନ୍ଦରତର ଅନୁଭୂତି ଅଛି । କିନ୍ତୁ ଏ ଅନୁଭୂତି ନିନ୍ଦନୀୟ ବା ଲଜ୍ଜାକର ହେବାର କୌଣସି କାରଣ ନାହିଁ । ଏହି ପବିତ୍ର ଭାରତଭୂମିରେ ଭରତ ନାମକ

ଏକ ରଷି ପ୍ରଥମେ ନାଟକୀୟ ସମାଲୋଚନା ଆରମ୍ଭକରନ୍ତି । ଏ ପ୍ରସଙ୍ଗରେ ସେ ରସମାନଙ୍କର ବିଶ୍ଳେଷଣ କରି ନରନାରୀର ସଖ୍ୟଜନିତ ଶୃଙ୍ଗାର ରସକୁ ଆଦି ବା ପ୍ରଧାନ ଓ ପ୍ରଥମ ରସ ରୂପେ ସ୍ଥାନଦେଇଛନ୍ତି । ଭରତଙ୍କ ବିଶ୍ଳେଷଣ ଉପରେ ଆଉ କାହାକୁ କିଛି କହିବାର ଏପର୍ଯ୍ୟନ୍ତ ଶୁଣାଯାଇନାହିଁ ।

ଫୁଲଟା ଶୁଖି ଝଡ଼ିଯାଏ; କିନ୍ତୁ ତା' ସମ୍ବନ୍ଧରେ ବଡ଼ କଥା– ଶୁଖି ଝଡ଼ିପଡ଼ିବାଟା ନା ସେ ଦିନେ ଫୁଟି ଧରଣୀକି ଗନ୍ଧ ଓ ରୂପରେ ମୁହୂର୍ତ୍ତକ ଲାଗି ହସେଇଦେଇଥିବାଟା ? ମନୁଷ୍ୟ ଜୀବନରେ ରୂପ ଓ ଯୌବନ କ୍ଷଣସ୍ଥାୟୀ– ଏଥିରେ ଦ୍ୱିମତ ନାହିଁ । କିନ୍ତୁ ଦିନେ ଶୁକ୍ଳକେଶ ସ୍ଥବିର ବୃଦ୍ଧ ହେବି ବୋଲି, ଆଜିର ଯୁବକ ଓ ଯୁବତୀଙ୍କୁ ତାଙ୍କର ପ୍ରାଣ-ପ୍ରାଚୁର୍ଯ୍ୟ ଉପଭୋଗ କରିବାରୁ ତାଙ୍କୁ ନିରୋଧ କରିବାରେ କି ଯୁକ୍ତି ଅଛି ? ଆଉ ଜୀବନରେ ଶୁକ୍ଳକେଶ ଓ ସ୍ଥବିରତ୍ୱ ହିଁ ସଞ୍ଚ ଯୌବନର ଅଶ୍ରୁ, ଆନନ୍ଦ ଓ ଆବେଗ ପ୍ରଭୃତି ଅପରାଧ, ଏହା ସତ୍ୟର ଅପଳାପ, ସେହିପରି କ୍ଷତିକାରକ । ଯେଉଁ ଦେଶରେ ସନ୍ୟାସ ଓ ବୈରାଗ୍ୟ ଆଦର୍ଶ ବୋଲି ଆଜି ଧରାହେଉଛି, ସେଠି ରାଜଯୋଗ ଓ ଆୟୁର୍ବେଦ ଭିତର ଦେଇ, ଜରା ବିନାଶକରି ଯୌବନକୁ ଚିରସ୍ଥାୟୀ କରିବାର ପ୍ରଚେଷ୍ଟା କିପରି ଆସିଲା ? କବିତାରେ ଓ କଳାରେ ଠିକ୍ ଏହି ପ୍ରଚେଷ୍ଟା ହିଁ ପ୍ରକାଶ ପାଉଛି । ଆମେ ଦେଖୁ ଯେ ମନୁଷ୍ୟ ବରାବର ଚେଷ୍ଟା କରି ଆସୁଛି, ତା'ର ଚିରପଳାୟମାନ ଆନନ୍ଦ ମୁହୂର୍ତ୍ତଗୁଡ଼ିକୁ ସେ ସାହିତ୍ୟ ଓ କଳାରେ କିପରି ବାନ୍ଧିରଖିବ ।

ଅନେକେ ଭାବିପାରନ୍ତି ଯେ ଏ କବିତାଗୁଡ଼ିକ ଅତ୍ୟନ୍ତ ବ୍ୟକ୍ତିଗତ । କିନ୍ତୁ ଆଜି ପଛକୁ ଅନାଇ ଲେଖକ ଦେଖୁଛି ଯେ ଏଥିରେ ବ୍ୟକ୍ତିର ସମ୍ପର୍କ ନିମିତ୍ତମାତ୍ର । ପ୍ରଥମ ଯୌବନରେ ବାପା-ମାଆ-ଭାଇ-ଭଉଣୀଙ୍କର ଉପସ୍ଥିତି ସତ୍ତ୍ୱେ ଏକ ନିଃସଙ୍ଗତା ପ୍ରତ୍ୟେକ ଜୀବନରେ ଆସେ । ଏହା ପ୍ରାୟ ସାର୍ବଜନୀନ । ତେବେ ପିତୃ-ମାତୃ-ଭ୍ରାତୃହୀନ ଏକ ନିଃସଙ୍ଗ ତରୁଣକୁ ଯେଉଁମାନେ ସଖ୍ୟ ଦାନକରି ତାକୁ ଅନୁଗୃହୀତ କଲେ, ତାଙ୍କର ମହିମ୍ନ ସ୍ତବ ଗାଇବା ତା' ପକ୍ଷରେ କି ବିଚିତ୍ର ବ୍ୟାପାର ? ସେ ବୟସ ଓ ସେ ଅବସ୍ଥାରେ ଯେକୌଣସି ତରୁଣ, ଯେକୌଣସି ନର ବା ନାରୀର ସଖ୍ୟ ପାଇ ଉଚ୍ଛ୍ୱସିତ ହୋଇଉଠିବା ସ୍ୱାଭାବିକ । ତେଣୁ ଲେଖକ ଆଜି ଭାବୁଛି ଯେ ଏ କବିତାସବୁ ପ୍ରକୃତରେ ବ୍ୟକ୍ତିନିରପେକ୍ଷ । ଏସବୁ ଏକ ନିଃସଙ୍ଗ ତରୁଣ ହୃଦୟ ଉପରେ ଅନ୍ୟ ହୃଦୟମାନଙ୍କର ପ୍ରତିକ୍ରିୟାର ଚିତ୍ରମାତ୍ର । ସେ ହୃଦୟ ସବୁର ଢେର୍ ପରିବର୍ତ୍ତନ ହୋଇଗଲାଣି । ଯୌବନର ରଙ୍ଗିନ୍ ଚଷମାରେ ଯେଉଁ ଜଗତ ସ୍ୱପ୍ନପୁରୀ ପରି ପ୍ରତୀତ ହେଉଥିଲା, ଆଜି ତାହା ରୁକ୍ଷ, ନୀରସ ଓ ହାହାକାରମୟ । ଏ କବିତା ଗୁଡ଼ିକର ବର୍ତ୍ତମାନର ସଂସ୍କରଣ ପାଇଁ ପ୍ରୁଫ୍ ପଢ଼ିଲାବେଳେ ମନେହେଉଥିଲା ସେଗୁଡ଼ିକ ଯେପରି ଅନ୍ୟ କେଉଁ କବିଦ୍ୱାରା ରଚିତ । ତଥାପି, ଏକ ହୃଦୟର ଇତିହାସ ଭାବରେ ଏସବୁର ମୂଲ୍ୟ ଥାଇପାରେ । ଯିଏ ଲେଖିଥିଲା ଓ ଯେଉଁମାନଙ୍କ ପାଇଁ ଲେଖାଯାଇଥିଲା, ସେମାନେ କ୍ରମେ ପରିବର୍ତ୍ତିତ ଓ ଶେଷରେ ଅନ୍ତର୍ହିତ ହୋଇଯିବେ, କିନ୍ତୁ ଏ କବିତାଗୁଡ଼ିକରେ ଯଦି ସତ୍ୟ ଓ ଗଭୀର ଅନୁଭୂତିର ସଂଚାର ହୋଇଥିବ, ତେବେ ସେମାନଙ୍କର ପରିବର୍ତ୍ତନ ବା ମରଣ ନାହିଁ ।

କାବ୍ୟଯୋଗ୍ୟ ଅନୁଭୂତି ଲେଖକର ଜୀବନରେ ଘଟିଥିଲେ ହେଁ, ଇଂରେଜ କବିମାନଙ୍କ ସଙ୍ଗେ ପରିଚୟ ଘଟିନଥିଲେ, ସେ ଅନୁଭୂତି ଏ ପ୍ରକାର ଆତ୍ମପ୍ରକାଶ କରିନଥାନ୍ତା । ଆମ ସାହିତ୍ୟରେ ପ୍ରେମକବିତାର ଅରଣ୍ୟ ରହିଛି; କିନ୍ତୁ ସେଥିରେ ବିଚିତ୍ରତା ନାହିଁ । ସେ ଜଙ୍ଗଲ ଯେପରି ଗୋଟିଏ ଗଛର ଜଙ୍ଗଲ । କିନ୍ତୁ ଇଂରେଜୀ ସାହିତ୍ୟ ପ୍ରତ୍ୟେକ କବିର ବ୍ୟକ୍ତିଗତ ବିଭିନ୍ନ ଅଭିଜ୍ଞତାରେ ଶବଳିତ । ତାହା ଦେଖି ହିଁ, ନିଜର ଅଭିଜ୍ଞତାକୁ ନିଜର ସ୍ୱତନ୍ତ୍ର ରୀତିରେ ପ୍ରକାଶ କରିବାକୁ ଲେଖକର ସାହସହେଲା । ଅନେକ କବିତା ଇଂରେଜୀ ଛନ୍ଦର ଅନୁକରଣରେ ରଚିତ ।

ପ୍ରଗତିସଂଘଦ୍ୱାରା 'ଧୂପ' ପ୍ରଥମେ ପ୍ରକାଶିତ ହୋଇଥିଲା । ଲେଖକ ଓ ତାହାର କେତେକ କଲେଜ ତରୁଣ ବନ୍ଧୁ ଏହି ସଂଘ ଆରମ୍ଭ କରିଥିଲେ । ଦେଶକୁ ଉଠେଇବାର ନାନା ସ୍ୱପ୍ନ ଭିତରେ 'ସାହିତ୍ୟ' ଏକ ପନ୍ଥା ଥିଲା । କିନ୍ତୁ ଜୀବନ ସଂଗ୍ରାମର ତାଡ଼ନାରେ ସେ ସଂଘର ସଦସ୍ୟବୃନ୍ଦ ଏ ଦେଶ ଓ ଏ ଦେଶ ବାହାରେ କାହିଁ କାହିଁ ନିକ୍ଷିପ୍ତ । ପ୍ରତ୍ୟେକର ଜୀବନ ଏପରି ଆତ୍ମକେନ୍ଦ୍ରିକ ହୋଇଯାଇଛି ଯେ ଦେଶର କଥା ଦୂରେଥାଉ, ପରସ୍ପରକୁ 'କିପରି ଅଛ' ବୋଲି ପଚାରିବାର ପ୍ରବୃତ୍ତି କାହାରି ନାହିଁ । ସେମାନଙ୍କ ମଧ୍ୟରୁ ଜଣେ ଶ୍ରୀ ଭଗବତୀଚରଣ ପାଣିଗ୍ରାହୀଙ୍କର କଣ୍ଠସ୍ୱର ଚିରଦିନ ପାଇଁ ନୀରବିତ । ସେ ଲେଖକର ବିଶିଷ୍ଟ ସଖା ଥିଲେ । ଏସବୁ କବିତାର ନୂତନ ସଂସ୍କରଣ ଦେଖିଥିଲେ ହୁଏତ ସେ ଖୁସିହୋଇଥାନ୍ତେ । 'ପ୍ରଗତି'ର ଅତ୍ର-ତତ୍ର-ବାସୀ ସଦସ୍ୟ ବନ୍ଧୁମାନଙ୍କୁ ଶେଷବାର ସ୍ମରଣ କରି ବିଦାୟନିଏଁ । ଯେଉଁମାନଙ୍କ ସହବାସରେ ଜୀବନର ମଧୁରତମ ଦିନଗୁଡ଼ିକ କଟିଯାଇଛି, ଜୀବନର ଅର୍ଦ୍ଧପଥରେ ତାଙ୍କରି କଥାସବୁ ଯେ ବାରମ୍ବାର ମନେପଡ଼ିବ, ଏଥିରେ ବିଚିତ୍ର କ'ଣ ? ସେମାନଙ୍କ ଜୀବନରେ ଶାନ୍ତି ସୁଖର ସଂଚାର ହେଉ ।

**ଲେଖକ**

# ତରୁଣ କବିର ଆଶା

ଏଡ଼େ ବିରାଟ ସେ, ପାଏ କି ଭାଷା,
ହାୟ ରେ ତରୁଣ କବିର ଆଶା !
ଭାବିଥିଲି ଯିବି ଅସୀମ ପଥେ
ସୁରଭି-ଶୀତଳ-ମଳୟରଥେ
କୁସୁମ-ଫଗୁଳ ଫଗୁଣ-ପୁରେ
ବାହି ଗୋ ଦୂରେ !
ଅଶୋକକଳିକା ଶ୍ରବଣେ ଗୁଞ୍ଜି
ଚରମେ ଝୁଲାଇ ବଉଳ-ପୁଞ୍ଜି
ପରିମଳ ପରି ଯାଆନ୍ତି ମିଶି
ମୁଁ ଦଶ ଦିଶି !
ପରିମଳ ସମ ଗଗନେ ଭାସି
ପାଗଳ କରନ୍ତି ଜୋଛନାରାଶି;
ଜୋଛନା ଡାକନ୍ତା 'ଆସ ହେ ପ୍ରିୟ
ଚୁମ୍ବନ ନିଅ !
ଚଇତି-ପବନ ସଙ୍ଗୀତ ଧରି
ସେପାର ଆକାଶେ ଯାଆନ୍ତି ଚଳି,
ମୁକତି ଲଭନ୍ତା ପରାଣ ମମ
ବିହଗ ସମ !
କୋକିଳ ଡାକନ୍ତା, 'ଆସ ହେ ଭାଇ'
ତରୁଣ ସେ କବି ହୁଅନ୍ତା ବାଇ,
ଗୋଲାପ କହନ୍ତା, 'ଆସିଲ ସତେ,
ଏତେ ଦିନକେ ?'
ଭାବିଥିଲି ଦୂରି ମଣିଷ-ତ୍ରାସ
ମଧୁର କରିବି ଧରଣୀ-ବାସ
ଏକଇ ଆଦେଶେ, ଜୀବର ହିତେ
ପୃଥିବୀ ପୀଠେ ।

ଦେଶରୁ ଦେଶକୁ ଯାଆନ୍ତି ଉଡ଼ି
ନିଖିଳ ଜାତିର ହୃଦୟ ଜୁରି
ପ୍ରେମର, ଜ୍ଞାନର ପ୍ରଚାର କରି
ପରାଣ ଭରି ।
ଭାବିଥିଲି ଅବା ବକୁଳ ତଳେ
ସୁରଭି କୁସୁମ ଶୟନ ପରେ
ଯାପିବି ଜୀବନ ପ୍ରେୟସୀ ଧରି
ସ୍ୱପନ ପରି ।
ବାଛିନେଇଥିଲି ମୋର ପ୍ରେୟସୀ
ଲାବଣ୍ୟ ପ୍ରତିମା, ସମବୟସୀ
ଭାବିଥିଲି ତାରେ କରିବି ସାଥୀ
ପରାଣ ପାତି ।
ଭାବିଥିଲି ଛାଡ଼ି ପୃଥିବୀ ବାଧା
ପୂଜିବି ସେ ମୋର ହୃଦୟ-ରାଧା
ବଜାଇ ମୁରଲୀ ମୁଁ ଅହରହ
କାହିଁ ବିରହ ?
ଅସର ଚାନ୍ଦିନୀ ଯାମିନୀ ତଳେ
ସେ ରାଧା କୋମଳ ଜଘନ ପରେ
ଜୀବନ ମରଣ ଯାଆନ୍ତି ଭୁଲି
ସପନ ପରି ।
ବିଜନ ତଟିନୀ ବେତସ ଗେହେ
ଢାଳି ଦେଇଥାନ୍ତି ଅଳସ ଦେହେ
ଚମକନ୍ତି ଶୁଣି ନୂପୁର ଧ୍ୱନି
ପ୍ରେୟସୀ ମଣି ।
ମାନସୀ ଆସନ୍ତା ହଲାଇ ବେଣୀ
ଚତୁରେ ଚଳାଇ ନୟନ ବେନି,
ଲଗାଇ ଦିଅନ୍ତା ପ୍ରିୟରେ ତାର
କୁସୁମ-ହାର୍ ।
ପାଶରେ ଥାଆନ୍ତା ରସ କବିତା,
ଚିର-ଯଉବନ ପ୍ରଣୟ-ଗୀତା
ପ୍ରେୟସୀ ଗାଆନ୍ତା, ଚୁମ୍ବନ୍ତି ମୁଖ
ପୂରନ୍ତା ବୁକ ।

ହାଇରେ ତରୁଣ କବିର ଆଶା
ଏଡ଼େ ବିରାଟ ସେ, ପାଏ କି ଭାଷା,
ଆକାଶ ବସୁଧା କେତେ ସେ କରେ
ନିମିଷକରେ ।
କାହିଁ କଳପନା କାହିଁ ଜୀବନ
ତରୁଣ କବିର ଜଳଇ ମନ,
ଚାରିଆଡ଼ୁ ବାଜେ ଦାରୁଣ ବାଧା
କାହିଁ ତା ରାଧା !
ନାହିଁ ରାଧା, ନାହିଁ ବେତସ-ଲୀଳା
ନାହିଁ ପାଶେ ବେଣୀହଲା ଛଇଳା,
ପ୍ରଣୟରେ ମାତି ହେବାକୁ ଗେଲ
କାହିଁ ତା ବେଳ !
ବାଲ୍ୟତର ସାଥୀ ନାହିଁ ତା ପାଶେ
ବାଳିକା ସେ ଗଲା ଆନର ଆଶେ,
କାହା ଗଳେ ସୁଖେ ଛନ୍ଦିବ ବାହୁ
କହ ସେ ଆଉ ?
ପ୍ରଣୟୀ ହେବାର ଛାଡ଼ିଛି ଆଶ
କେ ବାଳା ବାନ୍ଧଇ ପ୍ରଣୟ-ପାଶ
କେବଳହିଁ ପ୍ରାଣ-ପୀରତି-ଲଭି
ଗରିବ କବି !
ଗରିବ କବିରେ ସଂସାର ପୀଡ଼େ
କବିତାକୁ ବେଳ ନାହିଁ ଏ ଭିଡ଼େ,
ଫଗୁଣ ଚଳଇ ଚଇତ ଆସେ
କି ଯାଏ ଆସେ !
ପ୍ରଣୟ-କବିତା-ସ୍ୱପନ ନାହିଁ
ନିମିଷେ ନିମିଷେ ଗଲେ ଉଭାଇ,
ମଣିଷ ବେଢାରେ ଯାଉଛି ଦ୍ରବି
ତରୁଣ କବି !
ଘୁଞ୍ଚାଇ ନେବାର ଜଗତ ବ୍ୟଥା
ସୁଦୂର ସ୍ୱପନ । ନିଜର କଥା

ନପାରେ ତୁଳାଇ ଗରିବ କବି
　　　　　　　　କରୁଣ ଛବି ।
ମଣିଷ ହୋଇ ତା ଏଡ଼େ ବିଚାର
ଧରାରେ ସରଗ ସୃଜନା ତାର ।
ଏ କଳପନାକୁ ପାଏ କି ଭାଷା,
ହାଇରେ ତରୁଣ କବିର ଆଶା ।

## ପାପ ଓ ପ୍ରେମ

(୧)

ହେ ସମବୟସି, ତୁମର ମୋର ଯେ ପୀରତି
ନିଷ୍ଠୁର କେତେ ବୋଲୁଛନ୍ତି ପାପ କୀରତି ।
　　ତୁମରେ ବୋଲନ୍ତି କୁଳଟା ଅସତୀ ରମଣୀ
　　ମୋତେ ବା ବୋଲନ୍ତି ବ୍ୟଭିଚାରୀ ନୀଚ ବ୍ୟସନୀ,
　　ବ୍ୟବହାର ଦେଖି ନିର୍ବୋଧ ଜନତାର ଗୋ,
　　ବୁଝେ ଅବା ନାହିଁ ଜିଇଁବାର ଅଧିକାର ଗୋ
ଏଡ଼େ ଅପରାଧ ଜୀବନେ କରିବା ପୀରତି ।
ହୃଦୟେ ହୃଦୟ ମିଶିବାକୁ ଗଲେ
ଧର୍ମ ରହେନା ପୁଣି ମହୀତଳେ
　　ଏକ ଆନ ପାଇଁ ଭାବିବା ଗୋ ପାପ-କୀରତି,
　　ହେ ସମବୟସି, ତୁମର ମୋର ଯେ ପୀରତି ।

(୨)

ପ୍ରଣୟ କି କଥା ଜାଣିଥିଲେ ଏହା କହି କି ?
ପରାଣ ମିଳିଲେ ପାପ କିପାଁ ଆସେ ମହୀକି ?
　　ଚିରଉପବାସୀ କି ଜାଣିବ ଏହି ଜନତା
　　କି ପୀୟୂଷ ଢାଳେ ପରାଣେ ପ୍ରଣୟ-ମମତା ?
　　ଦରିଦ୍ର ଯେ ଗୋ ଜାଣିବେ କେସନେ ଜୀବନେ
　　କିବା ଅନୁଭବ ପୀରତି-ପୀୟୂଷ ସେବନେ,
ପ୍ରିୟତମ ବୋଲି ଡାକିବା କି ସୁଖ ସହୀକି,
　　ଏକ ହୃଦ କଥା ଆନ-କାନ ପାଶେ
　　ଗୋପନେ କହିବା ଚୁପି ଚୁପି ଭାଷେ

ନୟୟ ଲୋତକେ ସ୍ୱର୍ଗ କରିବା ମହୀକି,
ପ୍ରଣୟ କି କଥା ଜାଣିଥିଲେ ଏହା କହି କି ?

(୩)

ଜନତା କି କେବେ ସୁଖଦୁଃଖ ମୋର ଜାଣିବ,
ନୟନୁ ଲୋତକ ପୋଛିବାକୁ କର ଆଣିବ ?
ପାପେ ତେବେ ମୋର କିପାଇଁ ଏ ବ୍ୟଥା କହ ତ,
ସେନେହ ଖୋଜିଲେ ସରେ କି ଧରମ ମହତ ?
ପରାଣେ ପରାଣ ମିଶିଲେ କି ନାରାୟଣ ହେ,
ଶୁଣିଛ କେ କାହିଁ କରିବାର ପଳାୟନ ହେ,
ସେ କଥା ମୂର୍ଖ ସମାଜ ତ ନାହିଁ ଜାଣିବ
ନିର୍ମମ ଖାଲି ଖୋଜି ଅପରାଧ
ସୃଷ୍ଟି କରିବ ମିଛ ଅପବାଦ
ଈଶ୍ୱର ନାମେ ହିଂସାରେ ବାଣ ହାଣିବ ।

(୪)

ନୟନୁ ଯାହାର ଲୋତକ ମୋ ପାଇଁ ବହିଲା
ମୋ' ନୟନେ ସେ ତ ପରମପୂଜ୍ୟା ମହିଳା,
ସତୀଶିରୋମଣି ନ ହେଲା ବା ସେହି କାମିନୀ
ଅସତୀର କିହେ ନାହିଁଛି ପ୍ରଣୟ-ଯାମିନୀ ?
ସତୀ ଅସତୀରେ ଭିନ୍ନ କି ହୁଏ ପରାଣ ?
ପ୍ରାଣ ଯଦି ଅଛି, ଅଛି ହେ ପ୍ରଣୟ ଧିଆନ ।
ସତୀରେ ତା'ଗୁଣ, ଅସତୀରେ ଦୋଷ ହୋଇଲା,
ମୂର୍ଖ ଜନତା କର ତା' ବିଚାର
ପ୍ରଣୟକୁ ଦିଅ ତାର ଅଧିକାର,
ନ କହ ପୁରୁଣା ପୋଥି ଏଥେ କିବା କହିଲା,
ମୋ ନୟନେ ସେ ତ ପରମପୂଜ୍ୟା ମହିଳା ।

(୫)

ନୟନ-ବାରିରେ ସିକ୍ତ ଯା' ପ୍ରୀତି ସରଣୀ
ଘୃଣ୍ୟ କି ହେଲା କୁଳଟା ବୋଲି ସେ ଘରଣୀ ?
ମଙ୍ଗଳ-ଦୀପ ଜାଳିଲା ଯେ ଏକ ଭବନେ
ସଙ୍ଗୀତମୟ କରିଲା ଯେ ଏକ ଜୀବନେ,

ଛାୟାତଳେ ଯାର ପାଇଲା ଶାନ୍ତି ମଧୁର
ଆଉ ଏକ ପ୍ରାଣ କ୍ଳାନ୍ତ ବ୍ୟଥିତ ବିଧୁର
ସେ ଜୀବନେ ମୂଲ ଦେବନି କି ଏକ ଧରଣୀ,
ପ୍ରଣୟ କି ହାୟ ଏଡ଼େ ଅପରାଧ
ହିୟା ଖୋଲି ଦେଲେ ମିଳେ ଅପବାଦ
ମନର ମଣିଷେ ମନ ଦେଲେ ହାୟ, ଘୃଣ୍ୟ ହୋଇବ ଘରଣୀ ?

(୬)

ମୂର୍ଖ ଜନତା ବୁଝେ ନାହିଁ ମନ-ଯାଚନା
ଏକ ଆନ ପାଇଁ ବିଳପିବା କିବା ଘଟଣା,
ଜୀବନ-ଦୁଆର ରୁନ୍ଧି ଗୋ ନୀତି-ପାଷାଣେ;
ଜୀବନ ଦେଉଳେ ଉଡାଏ ଗୋ ନୀତି ନିଶାଣେ
ସ୍ନେହର ମୂଲ୍ୟ ନିର୍ବୋଧ ଦେଇ ପାସୋରି
ଦେହର ମୂଲ୍ୟ ଧରିଅଛି ସେ ଗୋ ଆବୋରି,
ସ୍ନେହ ଯେ ଜୀବନେ କରିଦିଏ ପାପ ମାଜଣା;
ନାହିଁ ଜାଣେ ସଖି, ମୂର୍ଖ ଜନତା
ପାପ ବୋଲି କହେ ପ୍ରଣୟ-ମମତା ।
ଅଶ୍ରୁ-ଧଉତ-ପୀରତିକି ପାପ-ଘଟଣା;
ମୂର୍ଖ ଜନତା ବୁଝେ ନାହିଁ ପ୍ରୀତି-ରଚନା ।

(୭)

ତେବେ ଲାଞ୍ଛିତା ସୁନ୍ଦରୀ ପ୍ରାଣ-ସଜନି,
ସ୍ନେହେ ତବ ହେଉ ଆର୍ଦ୍ର ନିତି ମୋ ରଜନୀ
ମୂର୍ଖ ଜନତା କହୁଥାଉ ପାପ ବୋଲି ଗୋ
ତବ କରତଳ ଦିଅ ମୋ କପାଳେ ବୋଳି ଗୋ,
ଈଶ୍ୱର ଆଗେ ଏ ପାପ ଅଶ୍ରୁ-ଲଳିତ
ଦେଖାଇବା, ହେଉ ପାପ ଓ ପ୍ରଣୟ କଳିତ
ନର ଯା ବୁଝେନା ଦେବତା ବୁଝିବ ସଜନି,
ଏହି ପାପ ଦେଇ ବେନି ପ୍ରାଣେ ସଖି,
ଜୀବନ୍ ଯାଉ ତା' ରସ-ଧାରା ରଖି,
ଆଦରେ ଆର୍ଦ୍ର ହେଉ ମୋର ପାପ-ରଜନୀ
ପାପ ଦେଇ ମତେ ପୀୟୂଷ ପିଆଅ ସଜନି !

—

## ଗୋପନ କଥା

ନ କହିବାକୁ ଯାହା ତମେ ଗୋ ଥିଲ କହି
ତମର ମୋର ସବୁ ଘଟିଛି ଯାହା ସହି;
ପାରିନି କଥା ରଖି, କ୍ଷମିବ ମତେ ସଖି,
ମୋ ସାଥୀ-ଜନେ ରାଣି, ଦେଇଛି ତାହା କହି,
ନକହିବାକୁ ଯାହା ତମେ ଗୋ ଥିଲ କହି ।

କେସନେ ଏଡ଼େ କଥା ଗୋପନେ ରଖି କହ
ଏଡ଼େକ ଗଉରବ, ନିବିଡ଼ ଏ ପ୍ରଣୟ,
ରାଣୀର ଏ ଯେ ମାନ, ପ୍ରିୟାର ଏ ଯେ ଦାନ
କାହାକୁ ନଦେଖାଇ ରହିବା ଦୁରୁବହ
କେସନେ ଏଡ଼େ କଥା ଗୋପନେ ରଖି କହ ?

ଜୀବନେ ଯଦି କିଛି ଥାଏ ମୋ ଗଉରବ
ଶ୍ରେଷ୍ଠ ତହିଁ ରାଣି, ପ୍ରଣୟ-ଦାନ ତବ,
ତା'ଘେନି ଏ ଜଗତେ ଜାଣିବେ ଲୋକେ ମତେ
ନକହି ତା' କିପରି ରହିବି ମୁଁ ନୀରବ
ସେ ପରା ହେଲା ମୋର ଶ୍ରେଷ୍ଠ ଗଉରବ ।

କ୍ଷମିବ ସଖି ମୋର ଏକ ଏ ଅପରାଧ
କ୍ଷମିବ ଯଦି କିଛି ଘଟେ ଗୋ ପରମାଦ,
ସ୍କନ୍ଧେ ସହି ଭାର, ରଖ ତ ହେମ-ହାର
ସେପରି ଏ ଦୋଷୀରେ ଦେବ ଗୋ ପରସାଦ,
ତୁମରି ଗୁଣ ଗାଇ ସିନା ଏ ଅପରାଧ ।

## ମିଳନ-ପଥ

ଯେ ପଥେ ପ୍ରିୟେ, ଆସୁଥିଲ ମୋ' ପାଶେ
ଏ ଦେହ ମିଶିଯାଉ ସେ ପଥ-ଘାସେ ।
ଆଉ ତ ଆସିବାର
ରଚିବା ଅଭିସାର

ସେ ପଥେ, ଯୋଗ ନାହିଁ ମଧୁର-ରାସେ
ଏ ଦେହ ମିଶୁ ତେବେ ସେ ପଥ-ଘାସେ ।

ସେ ପଥେ କେତେ କଥା ଘଟୁଛି ସହି
ତା' ସ୍ମୃତି ରେଣୁ ଭେଦି ଯାଇଛି ରହି;
ଆଉ କେ ଜାଣି ନାହିଁ
ଆଉ କେ ଶୁଣି ନାହିଁ
ପ୍ରାଣର କଥା ଯାହା ହୋଇଛି କହି
ବିଜନ-ପଥ ଖାଲି ଶୁଣିଛି ରହି ।

ତନ୍ଦ୍ରା-ବିଜଡ଼ିତ ନଗର ଜନେ
ପିଶାଚ-ପୁରୀ-ଭାଷା ଭାସେ ପବନେ,
ଏକାଳେ ନିଶୀଥରେ
କେ ଆସେ ସେ ପଥରେ
ଫୁଟାଇ ସରସିଜ ଚାରୁ-ଚରଣେ ?
ନିଦ୍ରା-ଭୋର ଯେବେ ନଗର ଜନେ ।

ଉତର ଦେବ ତାର ସାଖୀ ସେ ପଥ
କହିବ, ଆସେ ମୁଖ କରି କେ ନତ
ଗଭୀର୍ ନିଶା ତଳେ,
ବିଜନ ପଥ ପରେ
ଯିବାକୁ ଅଭିସାରେ ପ୍ରିୟ ନିକଟ
କହିବ, ଆସେ ମୁଖ କରି କେ ନତ ।

ପ୍ରିୟେ ଗୋ ପ୍ରିୟେ ଯାଇ ରହିଲ କାହିଁ
ଜୀବନେ ମିଳିବାର ସୁଯୋଗ ନାହିଁ,
ଦୁହିଁଙ୍କ ଇତିହାସ
ଉଦରେ କରି ଗ୍ରାସ
ରହିଲା ତେଣେ ପଥ ପ୍ରବାସ-ବାହୀ
ଦୁହେଁ ଯେ ଦୁଇ ଦେଶେ ରହିଲେ କାହିଁ !

ପ୍ରିୟାକୁ ଲଭିବାର ନାହିଁ ତ ଆଶ
ପ୍ରିୟା ପାବନ ପଥେ ହୁଏ ମୁଁ ଘାସ
ସେ ପଥ-ରେଣୁ ତଳେ
ଶୋଣିତ ସମ ଥରେ

ପ୍ରିୟାର ସୁକୋମଳ-ଚରଣ-ବାସ
ସେ ଲାଭେ ହେବି ମୁହିଁ ସେ ପଥେ ଘାସ ।

## ଅପ୍ରତ୍ୟୟ

ଜଗତ ଯାଏନା ପ୍ରତେ
ଏତେ ଦାନ ତମେ ରାଣି ! ଯାହା ଦେଲ ମତେ ।

ରାଣୀ ତମେ, ତବ ପୂଜାରୀ ଗୋ ଶତ ଶତ
ଅଗୁରୁଗନ୍ଧେ ଆମୋଦିତ ତବ ପଥ,
ପ୍ରାଙ୍ଗଣେ ତବ ମେଳା କେତେ ରସିକର
ଧନିକ, ସୁଭଗ ଲଭିବାକୁ ତବ କର ।
ସେ ସକଳୁ ବାଛି ଦରିଦ୍ର ଅନୁଗତେ
ସେ ମୋହନକର କଣ୍ଠେ ମୋ ଢାଳି
ବହ୍ନି ଅଧରେ ଗାଢ଼େ ଦେଇ ଜାଳି
ସମ୍ରାଟ ଯାହା କରିଦେଲ ରାଣି ! ମତେ
ଜଗତ ଯାଏ ନା ପ୍ରତେ ।

ଅପଦାର୍ଥର ଥିଲା କିବା ଅଧିକାର
ପ୍ରଣୟେ ଗୋ ତବ, ଅୟି ଦୟା-ଅକୂପାର !
ରାଣୀ ତମେ ବାଣୀ ନ ଆସେ ରୂପକୁ ତବ
ହାଣି ଆଖି ଢ଼ାଳି ଦିଅ ଶିରୀ-ଗଉରବ,
କେତେ ତ ଭିଖାରୀ ଘେରିଥିଲେ ତବ ରଥେ
କଲ ଯା ସକଳେ ଦୂରେ ପରିହାର
ଡାକି ନେଇ ପାଶେ ଦେଇ ଅଧିକାର
ଗୁରୁ ଗୌରବ ଗର୍ବିତ କଲ ମତେ
ଜଗତ ଯାଏ ନା ପ୍ରତେ ।

ଦୂରୁ ଦେଖି ଗୁରୁ ପରାୟେ ପ୍ରଣତି ବିହି
ତବ ପଥ-ରେଣୁ କପାଳେ ଥିଲି ମୁଁ ଲିହି ।
ତବ ରାଜସଭା ଉତ୍ସବ ଘନ ରବ
ଆଣୁଥିଲା ରାଣି ! ବିମୁଗ୍ଧ ଅନୁଭବ,

ଦୂରୁ ଦେଖି ଖରେ ବରିନେଲ ଯାହା ପଥେ,
ପ୍ରେମ-ମଧୁ ଦେଇ ପରାଣ-ପିପାସା
ନିବାରି, ବଢ଼ାଇ ଦେଇ ମୋର ଆଶା
'ସଖି' ବୋଲି ମୁଖେ ଡକାଇଲ ଯାହା ମତେ
ଜଗତ ଯାଏ ନା ପ୍ରତେ ।

ତା'ପରେ ମଧୁରେ ପୁହାଇଲ କେତେ ରାତି
ଶୁଣାଇ ମୋ' ଆଗେ ପ୍ରଣୟ-ପେଲବ ଛାତି,
କହିଲ, 'ହେ ମୋର ସଖା ଅନ୍ତରତମ,
ଅନ୍ତରୁ ଦୂର ନ କରିବ ସ୍ନେହ ମମ'
ଜୀବନର ଦାନ ଢାଳିଦେଇ ମୋର ପଥେ,
ପରାଣେ ଯା ଢାଳି ଦେଇଗଲ ମଧୁ
ଅତି ଲୋଭନୀୟ ଅୟି ବରବଧୂ !
ଚିରକାଳ ଲାଗି ଧନବାନ୍ କରି ମତେ,
ଜଗତ ଯାଏନା ପ୍ରତେ ।

ଏ ଯେ ଗୌରବେ ଯୋଗ୍ୟ ମୁଁ ନୁହେଁ ସଖି !
ସରମେ ସଳଖେ ଚରଣ ନ ପାରେ ରଖି,
ଦୀନ ହୀନେ ଏଇ ମହାସମ୍ମାନ ଢାଳି
ଚଉଦିଗେ ଖାଲି ଉଠାଇଛ କରତାଳି
ଅଛି ରାଣି ! ଏବେ ପଣତେ ଲୁଚାଅ ମତେ
ଜନତାର ଏଇ ରୂଢ଼ ପରିହାସ
କଥା କହିବାର ଧରି ଦରହାସ
ବଡ଼ ବ୍ୟଥା ଦିଏ ,କି କରିବି କହ ସତେ,
ଜଗତ ଯାଏନା ପ୍ରତେ ।

## ଦେଖାହେଲା କିପାଁ

ଦେଖା ହେଲା କିପାଁ, ଦେଖା ହେଲା କିପାଁ
ହେ ସହଚରି,
ବାଜିଲା କିପାଇଁ ଅପବାଦ କହ
ଜଗତ ଭରି ।

ତୁମେ କାହିଁ ଥିଲ, ମୁହିଁ ଥିଲି କାହିଁ
ଥିଲା କି ଜଣା ?
ଦୁଇର ଜୀବନ ସୁଖେ ଚଳୁଥିଲା
ନୋହି ଆପଣା ।
ପରିହାସେ କି ଗୋ ଦୁଇରେ ବିଧାତା
ଦେଲା ଭେଟାଇ ?
ଭେଟୁ ଭେଟୁ ଦୁହେଁ ସରମ ଛାଡ଼ିଲୁ
ପ୍ରଣୟ ପାଇଁ ।
ବହୁ କାଳୁ ମୋତେ ଚାହିଁବସିଥିଲ
ଯେସନେ ସହି,
ଯୁଗଯୁଗାନ୍ତ ପ୍ରଣୟ-ପିପାସା
ହୃଦୟେ ବହି ।
ଅତି ପରିଚିତ ସମ ତେଣୁ ମତେ
ଡାକିଲ ପାଶେ,
ଗୁରୁ ଅପମାନ ବରିନେଲ ମୋର
ପୀରତି ଆଶେ ।
ମନା ମାନିଲନି, ବନ୍ୟା-ନଦୀର
ପ୍ରବାହ ସରି,
ମୋ ପାଶେ ଆସିଲ, କୁଳ, ମାନ, ଖ୍ୟାତି
କା'ରେ ନ ଡରି ।
ସକଳେ ଜାଣିଲେ ନିନ୍ଦା ରଟିଲେ
ମାରିଲେ ତାଳି,
ଗୁରୁଜନେ ଦେଲେ ଲାଞ୍ଛନା ଶତ
ଉପରେ ଢାଳି ।
କୁସୁମ-କୋମଳ ତନୁରେ ଲାଗିଲା
କଠିନ ବ୍ୟଥା
ନିଠୁର ସରମେ ଇତର ଆଗରେ
ନଇଁଲା ମଥା ।
ଆହା ଏତେ କଥା ହେବ ବୋଲି କହ
କେ ଭାବିଥିଲା

ପ୍ରଥମେ ଯେ ଦିନ ସେ ଆଖିରେ ମୋର
ଆଖି ମିଶିଲା ।
ଦେଖୁ ଦେଖୁ ହାୟ, ଚୁମ୍ବକ ସମ
ହୋଇଲେ ଟାଣି
ପ୍ରଣୟେ ବିପଦ ଯାହା ସବୁ ତାହା
ଜାଣି ଗୋ ରାଣି !
ଫଳେ ତାର ରାଣି ! ସମାଜ ରଖିଛି
ଦୁହିଁକି ବାରି,
ଦେଖାହେଲେ ଙନେ କହିଥାଁନ୍ତି କଥା
ନୟନ ଠାରି ।
ହାୟ ରାଣି ! ଦୁଇ ଅଜଣା ସେଦିନ
ମିଳିଲେ କାହୁଁ,
ଜୀବନଟାଯାକ ସହିବାକୁ ହେଲା
ମିଳନ ଦାଉ ।

## ଅଶ୍ରୁର ଆନନ୍ଦ

ଥର ଥର କରି ଅଶ୍ରୁ ଯେ ବହିଯାଏ,
ପ୍ରିୟା ଗୋ ମୋର,
ତହିଁରେ ମୁଁ ତବ ଗଭୀର ପରଶ ପାଏ ।
ପୀରତି ତୁମର ନିବିଡ଼ ଦେଉଛି ବ୍ୟଥା,
ଗଭୀର ପ୍ରବେଶ, ବ୍ୟଥା ନାହିଁ ପାଏ କଥା
ପ୍ରିୟା ଗୋ ମୋର,
ଏକ ଭାଷା ତାର ଅଶ୍ରୁ ଓ ନୀରବତା ।
ସେହି ଭାଷା ଘେନି ହୃଦୟ ମୋ ଥରେ ଥରେ, .
ତରଳ-ବ୍ୟଥାରେ ଗଣ୍ଡ ମୋ ଓଦା କରେ,
ପ୍ରିୟା ଗୋ ମୋର,
ପ୍ରଣୟ ତୁମର ପାଏ ସେ ଅଶ୍ରୁତଳେ ।
ପୀରତିରେ ଏତେ ବେଦନା ନଥିଲି ଜାଣି
ବେଦନାରେ ପୁଣି ସୁଖ ମିଳେ ଏତେ ରାଣି,

ପ୍ରିୟା ଗୋ ମୋର,
କିବା ଦେଲ ମତେ ପ୍ରଣୟର ବାଣ ହାଣି !

ବ୍ୟଥା ତଳୁ ମତେ ଆନନ୍ଦ ଅଛ ଦେଇ
ଏଡ଼େ ଦାନ ମତେ ଜୀବନେ ଦେଇନି କେହି,
ପ୍ରିୟା ଗୋ ମୋର,
ଜୀବନ ମୋହର କିଣୁଅଛ ବ୍ୟଥା ଦେଇ ।

ପ୍ରତି ନୀରଧାରେ ନିକଟତର ଗୋ ଆସ,
ସେତେ ଆପଣାର ଯେତେ ଦିଅ ପ୍ରାଣେ ପ୍ରାସ,
ପ୍ରିୟା ଗୋ ମୋର,
କ୍ରନ୍ଦନେ ପାଏ ପୀରତି ମୋ ଅବକାଶ ।

ଅଶ୍ରୁ-ଆହୁତି, ପ୍ରଣୟ-ଯଜ୍ଞେ ମମ
ବ୍ୟଥାରେ ଅଗ୍ନି ଜଳୁଅଛି ନିର୍ମମ,
ପ୍ରିୟା ଗୋ ମୋର,
ଭାବୁଛ କି ମୁହିଁ ଚାହେଁ ତା'ର ଉପଶମ ?

ନାହିଁ ସଖି ନାହିଁ ! ଚାହେଁ ମୁଁ ପରମ ବ୍ୟଥା
ନୟନେ ଲୋତକ, ମୁଖେ ଅବ୍ୟକ୍ତ କଥା,
ପ୍ରିୟା ଗୋ ମୋର,
ତହିଁରେ ପାଏ ମୁଁ ପୀରତିର ସଫଳତା ।

## ପ୍ରଣୟ-ବ୍ୟଥା

ଅୟି ପ୍ରିୟେ,
ଜାଣ କି ଗୋ ପ୍ରେମ ତବ କିବା ବ୍ୟଥା ଦିଏ ?
ଅକାରଣ ଶତବାର ନେତ୍ରୁଁ ମୋର ନୀର ବହି ପଡ଼େ,
ଅକାରଣ ବାର ବାର ବକ୍ଷତଳୁ କି ବିଳାପ ଝରେ ।
ବୈଶାଖ କାନନ ସମ ଦଗ୍ଧ ମତେ କରେ ନିଜ ନିଆଁ,
ଏକଇ ତାରଣ ବୋଲି ହିୟା ମୋର ଡାକେ 'ପ୍ରିୟା' 'ପ୍ରିୟା' ।
ମନେହୁଏ ଧୂପ ସମ ଦଗ୍ଧ ହୋଇ ବାଷ୍ପ ଯିବି ହୋଇ,
ପ୍ରଣୟର ଅଗ୍ନି ଶେଷେ ପ୍ରଣୟର ଭସ୍ମ ଯିବ ଥୋଇ ।

ବକ୍ଷେ ମୋର ଯଜ୍ଞ ଜଳେ, ତୁମେ ତହିଁ ଜୀବନ-ଦେବତା,
ଆତ୍ମା ମୋର ଯଜ୍ଞ-କାଷ୍ଠ, ଘୃତାହୁତି ତୁମର ମମତା ।
ଅହରହ ଏହି ଯଜ୍ଞ ଜଳୁଅଛି ଅନ୍ତରେ ମୋହର,
ମୋ ଜୀବନ ଶୋଷୁଅଛି ତା'ଶିଖାରେ, ନିତ୍ୟ ପଳ ପଳ ।
ଅନନ୍ତ ବେଦନା ମୋର ପ୍ରତି ରକ୍ତେ ଅନନ୍ତ ପିପାସା,
ଶରୀର ବନ୍ଧନ ଭେଦି ତୁମ ସଙ୍ଗେ ମିଶିବାର ଆଶା ।
ସେ ଆଶା ତ ବାଧା ପାଏ; ବାଧା ପାଇ କରଇ ଗର୍ଜନ,
ଶୋଣିତ-ତାଣ୍ଡବ ତଳେ ଚିତ୍ତ ମୋର ଲଭଇ ମଜ୍ଜନ ।
ମୁଖ ପାତି ଶଯ୍ୟା ପରେ ଶୋଇ ରହେ ଅଚେତନ ପରି,
ତୁମ ନାମ ଘୋଷିହୁଏ ଆତ୍ମା ମୋର ଆକୁଳେ ଗୁମରି ।
ଯେତେ ଡାକେ ତେତେ ଦୂରେ ପ୍ରିୟା ତୁମେ କର ପଳାୟନ,
ବ୍ୟାକୁଳ ଅନ୍ତର ମୋର ବ୍ୟର୍ଥ ବୋଲି ଭାବଇ ଜୀବନ ।
ଅହରହ ଆଶଙ୍କାରେ ଚିତ୍ତ ମୋର ପୂର୍ଣ୍ଣ ଅଛି ରହି,
'ଭ୍ରାନ୍ତ ତୁମେ' ବୋଲି ଯେହ୍ନେ କିଏ ମତେ ଦେଉଅଛି କହି ।
କେବେ ବା ଭାବଇ ନିଜେ ଦୀନ ହୀନ ଅକିଞ୍ଚନତମ,
ତୁମର ପ୍ରଣୟ ଖାଲି ଦେଖାଇଛି ମୁହିଁ କି ଅକ୍ଷମ ।
ଆହତ ଭୁଜଙ୍ଗ ପରି ଚିତ୍ତ ମୋର କ୍ରୁଦ୍ଧ ହୋଇଉଠେ,
ଫିଙ୍ଗିବାକୁ ସ୍ନେହ ତବ ଅଭିଶାପ ବୁକେ ଫୁଟିଉଠେ ।
କେବେ ବା ବିବେକ ମୋର ଚେଇଁଉଠି କରଇ ଧିକ୍କାର,
'ପାପ' 'ପାପ' ବୋଲି କ୍ଷଣେ କରେ ପ୍ରାଣେ ବିଦ୍ରୋହ ପ୍ରଚାର ।
କେତେ ଆଶା, କେତେ ବ୍ୟଥା, କି ବିଷାଦ, ଆଶଙ୍କା କି ଅବା,
ସବୁ ମିଶି ଚିତ୍ତେ ମୋର ଅହରହ କରିଛନ୍ତି ସଭା ।
ପାଗଳ ମୁଁ ହୋଇଉଠେ, ଏ ଅର୍ଗଳ ଫିଙ୍ଗିବାକୁ ମନ,
ପ୍ରିୟେ, ମତେ ପ୍ରେମ ଦେଇ କିଁପା ଏତେ କରୁଛ ଉନ୍ମନ !
ତେଣୁ କହେ ପ୍ରିୟେ,
ପ୍ରେମ ତବ ଏ କବିରେ ବଡ଼ ବ୍ୟଥା ଦିଏ ।

—

## ପ୍ରଣୟ-ସାଧନା

ସଖି, ମୋହ ଲାଗି ଲକ୍ଷ ନୟନ ତଳେ
ଦ୍ରୌପଦୀ ସମ ପାଅ ଯଦି ଅପମାନ,
ପ୍ରଣୟ-ଭିକାରୀ ନୟନେ ମୋ ଚାହିଁ ଥରେ
ହେଉ ଗୋ ତୁମର ଲଜ୍ଜାର ଅବସାନ ।

ସଖି, ରାଜପଥେ ହେଲ ଯଦି ଉଭା ଆସି
ଶ୍ରମ-ଶଙ୍କିତ ହେଲେ କି ସରିବ ପଥ ?
ମତେ ଚାହିଁ ଭୁଲ ପଥର ଯାତନା ରାଶି
ସୁଭଦ୍ରା ସମ ବାହ ଗୋ ପ୍ରଣୟୀ-ରଥ ।

ସଖି, ସତୀ ସମ ଲାଞ୍ଛନା ଯଦି ସହ
ଶିବ ସମ ମୁହିଁ ପ୍ରଣୟ-ସାଧନା ଜାଣେ,
ଅପମାନ ଭାରେ ପଥେ ଯଦି ଥକି ରହ
ମସ୍ତକେ ବହି, ମହୀ ମୁଁ ଭରିବି ଗାନେ ।

## ପ୍ରିୟାର ସାଧନା

ଅପମାନ ସହି ପୁଣି ଆସେ ପାଶେ
ଯେ ସହଚରୀ,
ନଦେବି ତାକୁ ମୁଁ ପ୍ରାଣ ଚିରି ପ୍ରେମ
କହ କିପରି ?
ମସ୍ତକ ତା'ର ନଇଁଅଛି କୋଟି-
ନୟନ ତଳେ,
ସବୁ ସହେ ପ୍ରିୟା ନୟନ ରଖି ମୋ
ଚରଣ ପରେ ।
ପାଶୋରିଲେ ମିଶେ ପ୍ରେମ ଦିଏ ମୋର
ଶକୁନ୍ତଳା,
ପାଶୋରିବ ମନ କହ କେସନେ ସେ
ସୁକୁନ୍ତଳା ?

ଗୌରବ ତାର ହରାଇଲା ସବୁ
ମୋହରି ଲାଗି
କୁଳ ମାନ ସବୁ ପଦେ ଦେଲା ମୋର
ପ୍ରଣୟ ମାଗି ।
ଅପଥ କଣ୍ଟା ବାଜିଲା ରାଣୀର
ଚରଣ ତଳେ
ମୋ ଲାଗି ବାହାରୁଁ ପ୍ରେମ-ପିପାସିନୀ
ଜନତା ଡରେ ।
ନିଷ୍ଠୁର କରୁ ପାଇଅଛି ରାଣୀ
ନିର୍ଯ୍ୟାତନା
ମୋହଲାଗି ଗଲା ସୁକୁମାରୀ ଭୁଲି
ସେ ଲାଞ୍ଛନା ।
କେଉଁ ଲାଞ୍ଛନା ମାନି ନାହିଁ ପ୍ରିୟା
ପୀରତି ଲାଗି
ସବୁ ଦେଲା ତାର ସୁଖ ମାନ ମୋର
ପ୍ରଣୟ ମାଗି ।
ଅକିଞ୍ଚନ ମୁଁ ଦେଇଛି ମୋହର
ଥିଲା ଯା' ଘରେ
ପ୍ରିୟା ଦାନ ସାଥେ ତାହାର କି ଆଉ
ତୁଳନା ଚଳେ ?
ତାହା ଜାଣି ମିଶେ ପ୍ରିୟା ତା'ପାତ୍ର
ଭରଇ ନିତି
କହିଲେ ସେ କହେ ''ନାରୀ-ପ୍ରଣୟର
ଏଇ ଯେ ରୀତି ।''
ନାରୀ ହୋଇ ପ୍ରିୟା ଶିଖାଇଛି ମତେ
ପ୍ରେମ କିପରି
ସାଧନାର ତଳୁ ପୀୟୂଷ କେସନେ
ପଡ଼ଇ ଝରି ।
ପାପ କି ପୁଣ୍ୟ ବୁଝେ ନାହିଁ ପ୍ରିୟା
ପ୍ରଣୟ ତାର

ସେ ଖାଲି ଜାଣଇ ପ୍ରିୟଲାଗି ତାର
ଲୁହ ଦେବାର ।
ଲୁହ ଦେଇ ପ୍ରିୟା ଲୁହ ବୁହାଇଛି
ନୟନୁ ମୋର
ପ୍ରେମ ଦେଇ ମତେ କରି ପକାଇଛି
ପ୍ରଣୟ-ଭୋର ।
ଆଜି ତେଣୁ ସବୁ ଦୂର ଓ ନିକଟ
ଭୁଲି ମୋ ହିୟା
ପ୍ରତି ନିଃଶ୍ୱାସେ ଉଚ୍ଚାରି ଉଠେ
'ପ୍ରିୟା ଗୋ ପ୍ରିୟା ।'

## ବନ୍ଦିନୀ ପ୍ରିୟା

ଧନ୍ୟ ସେ ଗୃହ-କାର,
ସୁ ଦୂରେ ଯହିଁ ଗୋ ବନ୍ଦିନୀ ମୋର
ଜୀବନର ଧ୍ରୁବ-ତାରା ।

ତାହାରି ପ୍ରାଚୀରେ ବାଜି ହୁଏ ଲୀନ
ରୁଚିର ବଚନ ତାର
ଚତ୍ୱର-ତଳ- ପାଷାଣ ଲଭେ ତା'
ଚରଣର ଚାରୁଭାର ।
ସେଇ ଅଙ୍ଗନ— ଗଗନେ ମିଶେ ତା
ଶରୀରର ସଉରଭ
ସେଇ ପରିସରେ ଲୁଚିଯାଏ ତା'ର
ଚରଣ-ନୂପୁର-ରବ ।
ରୂପ-ଗୌରବ-ଲୀଳା,
ପ୍ରିୟାର ମୋହର ଲଭି ହେଉଥିବ
ଜୀବନ୍ତ ଗୃହ-ଶିଳା ।

କାରାର କକ୍ଷେ କ୍ଷୟ ହୁଏ ପ୍ରିୟା-
କଙ୍କଣ କଣ-କଣ

ବହୁଦୂର-ବାସୀ ଶୁଣିବି କେସନେ
କହ ମୁଁ ତା' ପ୍ରିୟଜନ ?
ଶତକ୍ରୋଶ ଦୂରେ ଆଉ କେଉଁ ପୁରେ
ବନ୍ଦି ମୁଁ ପ୍ରିୟ ତାର
ପୋଛିବି କେସନେ କଳା ଆଖିରୁ ତା'
ଆକୁଳ ଲୋତକ ଧାର ?
ଏ କିବା ବିଡ଼ମ୍ବନା,
ଦୁଇ ଦେଶେ ଦୁଇ ହୃଦ ରଖି କେ ଗୋ
ମିଳନ କରିଲା ମନା ?

ମିଳନ-ବାଧାରେ ରାଧା ମୋର ସଢ଼େ
ଦୂରେ ରାକ୍ଷସପୁରେ
ମିଳନ ନ ପାଇ କରେ ହାଇ-ହାଇ
ପ୍ରିୟ ତା'ର ବହୁ ଦୂରେ ।
ଦେବତା କେ ଅଛି ଦେବନିକି ଦେହ
ମୋହର ମଳୟ କରି
ପ୍ରିୟତମା ପାଶେ ଉଡ଼ି ମୁଁ ଯାଆଁନ୍ତି
କାରା-ବାତାୟନ ଧରି ।
ଗଣ୍ଡେ ଅଶ୍ରୁ-ଧାର
ପୋଛି ମୁଁ ଦିଅଁନ୍ତି; ଗୋଟାଇ ରଖନ୍ତି
କପାଳେ ବିନ୍ଦୁ-ଝାଳ ।

ଧନ୍ୟ ମୁଁ ହେବି ପ୍ରିୟା ଯହିଁ ଅଛି
ହେଲେ ତହିଁ ଶିଳା-ତଳ
ତା' ପଦ-ପରଶେ ପାଷାଣେ ମୋ ହିୟା
ଚମକିବ ଥର ଥର ।
କରତଳ ତା'ର ମୋର ଦେହେ ରଖି
ବସିଲେ ଶରମ ପାଇ
ପ୍ରତି ରେଣୁ ସେହି ଶିଳାତଳେ କି ଗୋ
ଜୀବନ୍ତ ହେବ ନାହିଁ ?
ଭାଗ୍ୟ ସେ ମୋର କାହିଁ ?

ଜନ୍ମ ମୋହର ଜୀବନ-ବିରହେ
ଅଶ୍ରୁ ଢେଳିବା ପାଇଁ ।
ଅଶ୍ରୁ ମୁଁ ଢେଳେ ନିତି ନିଶା-ଶେଯେ
ଜାଣିବ କେସନ ପ୍ରିୟା ?
ଯିବ ହେ କୋକିଳ ? ଯିବ ହେ ମଳୟ ?
ଜଣାଇବ ମୋର ହିଆ ?
ପ୍ରିୟା ମୋର ଠିଆ ହୋଇଥିବ କିଆ
କଳିକା ଜୁଡ଼ାରେ ମାରି
କେହି ଜଣେ ଯାଇ କହନା ବୁଝାଇ
ସୁଖୀ ହେବ ସୁକୁମାରୀ ।
କହିବ ତାହାରେ ଡାକି,
'କିଆଫୁଲ ଯାର ପ୍ରିୟ, ଗୋ ତାହାର
ନିତ୍ୟ ସଜଳ ଆଖି ।'

କହିବ ହେ ପୁଣି 'ତୋର ଗୁଣ ଗୁଣି
ନ ସରଇ ତାର ଦିନ
ଯହିଁ ବସେ ଖାଲି ତୋର ନାମ ଲେଖି
ଶୋକକରେ ତାର କ୍ଷୀଣ ।
ତୋର ପରିଧେୟ ଦେହେ ଜାକି ଧରି
ଅସୀମ ସେ ସୁଖ ପାଏ
ତୋର ନାମ ପୁଣି ଖୋଳିଦେଉଅଛି
ଶରୀରର ଠାଏ ଠାଏ ।
ଜାଣି ରଖ ବରାନନି !
ଭୁଲେ ନାହିଁ କେବେ ପ୍ରିୟ ଗୋ ତୋହର
କି ଦିବସ କି ରଜନୀ ।'

କିଆଫୁଲ-କଢ଼ି କବରୀରୁ କାଢ଼ି
ଚୁମ୍ବିବ ପ୍ରିୟତମା
ଚାରୁ ଆଖି ଧରି ତିଳ ତିଳ କରି
ସଲିଳ ହୋଇବ ଜମା ।
ବଦନ ନଇଁବ ନାସିକା ଫୁଲିବ
ଅଧର ଥରିବ ହେଳେ

ନୀର ପୋଛୁ ଧୀରେ   ବଳୟ ବାଜିବ
ପ୍ରିୟାର ପ୍ରଳୟ ବେଳେ ।
ମୁହିଁ ତ ନ ଥିବି ତହିଁ,
ଗୁରୁ ଶୋକେ ପ୍ରିୟା   ବାତାୟନ ପରେ
ସଧୀରେ ପଡ଼ିବ ନଇଁ ।

ମୋ ପାଇଁ ମଳୟ   ପ୍ରିୟାର କପୋଳେ
ବୁଲାଇ ଦେବୁରେ ହାତ
ପୋଛି ଦେବୁ ଧୀରେ   (ଭାଗ୍ୟ ତୋହର)
ଗଣ୍ଡ ଅଶ୍ରୁ-ସ୍ନାତ ।
କୃଷ୍ଣ ଚିକୁର   ବ୍ୟସ୍ତ ଆକୁଳ-
ବକ୍ଷେ ପଡିଲେ ଖସି
ମୋ ଲାଗି ମଳୟ !   ଗତି କରି ଥିର
ସଜାଡ଼ିବୁ ଜୁଡ଼ା ବସି ।
ଉପାୟ କି ଅଛି କହ,
ଭୋଗିବାକୁ ହେବ   ସିନା ଏହିପରି
ଦୁହେଁଯାକ ଏ ବିରହ ।

ଦୂରବାସୀ ପ୍ରିୟ-   ଉରେ ନିତି ବ୍ୟଥା
ତୁମ ପାଇଁ ବନ୍ଦିନୀ !
ଉପାୟ କି ଅଛି   ନେଇଛି ତ ଆନ
ଶରୀର ତୁମର କିଣି ।
ରୂପ ତା'ରେ ଦିଅ,   ସ୍ନେହ ମାଗେ ପ୍ରିୟ
ଲକ୍ଷ ଯୋଜନ ଦୂରୁ
ଦିନେ ଦିନେ ଖାଲି   ମଙ୍ଗଳ-ଧୂପ
ମୋ ନାମେ ଉଠୁ ସେ ପୁରୁ ।
ଉପଭୋଗ ପ୍ରଣୟର
ତାହାଠାରୁ ବଳି   ନାହିଁ ପ୍ରିୟତମେ
ପବିତ୍ର ମନୋହର ।

—

# ଆଷାଢ଼-ଅଭିସାର

(୧)

ଏଇ ଆସେ,ଏଇ ସୁନ୍ଦରୀ ଧୀର ଗମନେ,
ଭେଟିବାକୁ ପ୍ରିୟ ତେଜି ତା'ର ନିଜ ଭବନେ ।
କୃଷ୍ଣା ରଜନୀ, ଘନ ମେଘମାଳା ଆକାଶେ,
ବିରଳ ତାରକା, ମେଘ ବିଦ୍ୟୁତ ପ୍ରକାଶେ ।
ନୀରବ ନଗର, ଜନହୀନ ରାଜ-ସରଣୀ,
ଘରେ ଘରେ ଦୀପ ନିଭାଇ ଦେଲେଣି ଘରଣୀ ।
ଆର୍ଦ୍ର ଧରଣୀ, ଶୀକର-ଶୀତଳ ପବନ,
ଭେକ ଡାକି ଉଠେ 'ଜୀବନ ଆଉ ଗୋ, ଜୀବନ ।'
ଭବନ-ପ୍ରଦୀପ ନିଭାଇ ଏକାଳେ ପ୍ରେୟସୀ,
ଏଇ ଆସେ ମୋର ଅଭିସାରେ ସମ-ବୟସୀ ।

(୨)

ଚାରୁ ମୁଖ ତାର ଦୂରୁ ଦେଖା ନାହିଁ ଯାଉଛି,
ଛାୟା ଖାଲି ତାର ଶୁଭ ଅଭିସାର କହୁଛି ।
ଏଇ ପାଖ ହେଲା, ନୂପୁର ଚରଣେ ଶୁଭିଲା,
କବରୀ-କୁସୁମ ଗନ୍ଧ ମୋ ନାକେ ଲାଗିଲା ।
ଆରେ ପଥ-ଘାସ, ପ୍ରିୟା-ପଦ ପ୍ରାସ ପାଇବ,
ନୋଇଁ ଦେବୁ ମଥା ପ୍ରିୟା ଯେବେ ପାଦ ଥୋଇବ ।
ଶରୀର ତୋହର କୋମଳ କରରେ ସରଣୀ,
ପ୍ରଥମେ ତା'ପାଦ ଛୁଉଁଛି କଠିନ ଧରଣୀ ।
ଆଷାଢ଼-ପବନ, ଲୋଭେ ଚୁମ୍ବନ ପ୍ରିୟାରେ
ଦେବୁ ନାହିଁ; ଭୀରୁ ଥରି ଯେ ଉଠିବ ହିୟାରେ ।
ବିଦ୍ୟୁତ୍, ତୁମେ ନିଭୃତେ ରହ ଟିକିଏ,
ଥରେ ଖାଲି ପ୍ରିୟା ଦେଉ ତା' ଅଧର ବିକି ହେ ।

(୩)

ନୂପୁର ନୀରବ, ପାଖେ ଏବେ ଠିଆ ପ୍ରେୟସୀ,
ମୋ ଗାଲେ ସୁରଭି ନିଃଶ୍ୱାସ ତାର ବରଷି ।
ଘର ଛାଡ଼ି ଏଇ ପରପାଖେ ଠିଆ ତରୁଣୀ,
ପ୍ରେମ ଲାଗି ସେ ତ ଆଷାଢ଼-ଆକାଶ ଡରୁନି ।

ଉପରେ ଭୀଷଣ ବାରିଦର ମାଳା ଗରଜେ
ଉତ୍ତରା ବାୟୁ ଉତ୍ତଳ ହୋଇ ତରଜେ ।
ନଗର ନୀରବ, ନିର୍ଜନ ସାରା-ସରଣୀ,
ଭେକ-ଝିଂକାରୀ ଚିତ୍‌କାରେ ପୂରେ ଧରଣୀ ।
ଏକାଳେ ଏକାକୀ ପଥ ପାଶେ ଉଭା ତରୁଣୀ,
ପ୍ରେମ ଲାଗି ସେ ତ ଆଷାଢ଼-ରଜନୀ ଡରୁନି ।

(୪)

''ବନ୍ଧୁ ହେ ମୋର, ଦେଖୁଛ କି ଘୋର ରଜନୀ,
ଏ ରାତିରେ କିପାଁ ଭବନ ଛାଡ଼ିଲ ସଜନି ?''
ପ୍ରିୟା ତହୁଁ କହେ, ''ପରାଣ ନ ସହେ ପ୍ରିୟ ହେ,
ତୁମର ବିରହ, ତିକ୍ତ ଲାଗଇ ଗେହ ହେ ।
ନାହିଁ ଲାଗେ ମନ କେବେ ହେଲେ ଗୃହ-କରମେ,
ପ୍ରିୟତମ, ଖାଲି ତମ କଥା ଶୁଣେ ମରମେ ।
ତେଣୁ ଆଜି ପ୍ରିୟ, ଖୋଜିଲି ବାହାର-ଧରଣୀ,
ତୁମର ଆଲୋକ ପାଇଁ ନେଲି ରାଜ-ସରଣୀ ।
ବୁକେ ଅନ୍ଧାର, ଅନ୍ଧାର ପୁଣି ବାହାରେ,
ଆଲୋକ ମାଗିଲେ, ଫେରାଇ ଦେଇଛ କାହାରେ ?''

(୫)

ସୃଷ୍ଟିରେ ଆଜି ପ୍ରଳୟ ହେଉଛି ରଚନା,
ହୃଦୟେ ପ୍ରଳୟ ଭୋଗଇ ମଧୁର-ବଚନା ।
ପ୍ରଳୟରେ ପୁଣି ସୃଷ୍ଟିର ହୁଏ ପ୍ରକାଶ,
ବିଦ୍ରୋହେ ହୁଏ ତରୁଣ-ଜୀବନ ବିକାଶ ।
ଘର ଛାଡ଼ି ତେଣୁ ଏ ତରୁଣୀ ଆଜି ଆସିଲା,
ପ୍ରାଣ ଭୋଗ ପାଇଁ ବିଦ୍ରୋହୀ ହେଲା ସୁଶୀଳା ।
ନୀଡ଼େ ନପାଏ ଯା' ବିହଗ ତା' ବୁଲି ଖୋଜଇ
ନୀଡ଼ ଛାଡ଼ି ତେଣୁ ସୀମାହୀନ ମେଘେ ହଜଇ ।
ତେଣୁ ପ୍ରିୟା ମୋର କୁସୁମ କୋମଳା ତରୁଣୀ,
ନ-ପାଇବା-ଧନ ଖୋଜି, ଏ ରଜନୀ ଡରୁନି ।

(୬)

''କିବା ମାଗ ମତେ କହ ଥରେ ମଧୁ-ବଚନା''
ପ୍ରିୟା କହେ, ''ପ୍ରିୟ, ସ୍ନେହ ଖାଲି ମୋର ଯାଚନା ।

ମତେ ଚାହିଁ ଥରେ 'ଭଲପାଅ' ବୋଲି କହ ହେ,
ଆଶ୍ରୟ ପାଉ ତରୁଣୀ ତା' ଗୁରୁ-ବିରହେ ।''
କହୁ କହୁ ପ୍ରିୟା ସହସା ମଉନ ହୋଇଲା,
ବିଶାଳ ନୟନୁ ଉଷ୍ଣ ଲୋତକ ବୋହିଲା ।
ତାର ଚାରୁମୁଖ ଦୁଇ ହାତେ ଧୀରେ ଧଇଲି,
''କାନ୍ଦନା ପ୍ରିୟେ'' ବୋଲି ଭର୍ତ୍ସନେ କହିଲି ।
''ଯାହା କିଛି ମୋର ଅଛି ସବୁ ଦେବି ତୁମରେ,
ନିଖିଳ ହୃଦୟ ଢାଳିବି ଏ କର-କମଳେ ।
ଯାଅ ସଖି, ଏବେ ଘରେ ଯାଅ ଫେରି ତରୁଣି,
ନାରୀ ଲାଗି ନୁହେଁ ଜାଣ ଗୋ ଏ ରାଜ-ସରଣୀ ।
ଆକାଶ-ବିହାରୀ ମୁହିଁ ଯାଏ ଦୂର ଗଗନେ,
ତୁମେ ଥାଅ ତୁମ ନୀଡ଼ ରଚି ନିଜ ଭବନେ ।
ବେଳେ ବେଳେ ଯେବେ ସଖା ଖୋଜିଉଠେ ପରାଣ,
ଦୂରସ୍ଥ ମତେ ପ୍ରେୟସୀ କରିବ ଧିଆନ ।''

(୭)

ବାରିଦ ବାଜିଲା ଗଭୀରେ ଆଷାଢ଼-ଆକାଶେ
ସୁପ୍ତ-ନଗରୀ ହସଇ ଦାମିନୀ ବିକାଶେ ।
ଭେକ, ଝିଂକାରୀ ଚିତ୍କାରେ ପୂରେ ଧରଣୀ,
ଭୀଷଣ ବିଜନ ଅନ୍ଧାର ରାଜ-ସରଣୀ ।
ପ୍ରିୟାର-ଭବନ ଦୂରେ ଦେଖାଯାଏ ଅଳପେ,
ପ୍ରାବୃଟବାୟୁ ସନ୍ ସନ୍ କିବା ଜଳପେ ।
ଚାହିଁ ନିଜ ନୀଡ଼େ ମତେ ଚାହେଁ ପୁଣି ପ୍ରେୟସୀ,
ଧରେ ମୋର କର କୋମଳ-ପରଶେ କରଷି ।
ମତେ ଚାହିଁ କହେ ''ପ୍ରିୟତମ, ଏକି କର ହେ,
ଭାବନା କି ଖାଲି ଭ୍ରମିବ ମୋର ଏ ବିରହେ ?''
ସେ ନୀଡ଼ ଛାଡ଼ିଛି ତମ ନୀଡ଼-ସୁଖ ପାଇଁ କି,
ମତେ ରଖିବାକୁ ପକ୍ଷ ତୁମର ନାହିଁ କି ?
କହି ଏହା ପ୍ରିୟା ପରଶେ କଣ୍ଠେ କୋମଳେ
ମୋ ମୁଖ ଲାଗିଲା ସୁନ୍ଦରୀ ମୁଖ-କମଳେ ।

ଆଷାଢ଼-ପବନ ସନ୍ ସନ୍ ବହି କହିଲା
''କି କଲା ତରୁଣି ! ଦୁଃଖ ଯେ ସାଥୀ ପାଇଲା ।''

## ଏଇ ସହକାର ତଳେ

ଏଇ ସହକାର ତଳେ
ସେଦିନ ପ୍ରିୟାର କର-କଂକଣ ଭିଡ଼ିଥିଲା ମୋର ଗଳେ ।
ଚାନ୍ଦିନୀ ରାତି ଉଠିଥିଲା ମାତି
ମଳୟ ପରଶ ପାଇ,
ବନପଖୀ ଦୂରେ କରୁଣ ମଧୁରେ
ଯାଉଥିଲା କିବା ଗାଇ ।
ଜ୍ୟୋତ୍ସ୍ନା ଓ ଛାୟା ରଚିଥିଲା ମାୟା
ଚିତ୍ର ଏ ତରୁତଳେ,
ସହଚରୀ ମୋର ପ୍ରଣୟ-ବିଭୋର
ଭିଡ଼ିଥିଲା ମୋର ଗଳେ,
ଏଇ ସହକାର ତଳେ ।

ନଗରେ ପ୍ରଦୀପ ନିଭି ଆସୁଥିଲା
ନିଶୀଥ-ନିଦ୍ରା ପାଇଁ,
ପ୍ରାନ୍ତର ଭରି ଝିଂକାରି କରି
ଉଠୁଥିଲା ସାଇଁ ସାଇଁ ।
ଶଂକିତେ ଗୋରୀ ଥର ଥର କରି
ଚଉଦିଗେ ଚାହୁଁଥାଏ,
ପ୍ରତିଥର ମୁହିଁ ସହଚରୀ-ମୁଖ,
ଅଧର-ମଦ୍ୟ ପାଏ,
ଭୟେ, ଭୟେ, ତରତରେ
ଏଇ ସହକାର ତଳେ ।

ଦୁହେଁ ଦୁଇଠାରେ ଘନେ ମିଶିବାରେ
ପ୍ରାଣ ମନ ଧରି ଚେଷ୍ଟା,

ଜିଣିବ କେ କାରେ ପ୍ରାଣ ବିକିବାରେ
ଏଥିଲାଗି ଭାରି ନିଷ୍ଠା ।
ସକଳ ଜଗତ ଦୂର ଓ ନିକଟ
ପାସୋରି ସେ ମହାକ୍ଷଣେ,
ଶୁଣୁଥାଇ ମହା- ସଂଗୀତ, ପ୍ରିୟା
କଂକଣ କଣ-କଣେ,
ବାଜେ ଯେବେ ତାର କରେ,
ଏଇ ସହକାର ତଳେ ।

ପିଆଉ ମଦିରା ଥରେ ସେ ଅଧୀରା
ଚମକିଲା ମୋର ବକ୍ଷେ,
ବାହୁମାଶ ତାର ଶିଥିଳିତ କରି
ଚାହିଁଲା ମୋହର ବକ୍ଷେ ।
ମୋ ନୟନେ ଚାହିଁ ଅଧର ଥରାଇ
କହିଲା ''ମୋ ଆଡ଼େ ଚାହଁ,
ତମ ଲାଗି ଯେହୁ କଳଂକ ବହେ
ସତେ ତାକୁ ଭଲ ପାଅ ?''
ଉତ୍ତରେ ବାହୁ ଭିଡ଼ିଲି ତାହାର ଗଳେ,
ଏଇ ସହକାର ତଳେ ।
ସହକାର ତଳ ବାୟୁ ଉଦ୍‌ଥଳ
ହୋଇଗଲା ପ୍ରିୟା-ଗଂଧେ,
ଶିଥିଳ ଚିକୁର ଚୁମ୍ବନାକୁଳ
ପଡ଼ିଲା ରୂପସୀ ସ୍କନ୍ଧେ ।
ନିଶୀଥ ଜ୍ୟୋସ୍ନା ଧୀରେ କଲା ମନା
ପ୍ରାନ୍ତରେ ରହିବାକୁ,
ମଳୟ କହିଲା ମଦିରା ସରିଲା ?
ଯାଅ ତେବେ ଶୋଇବାକୁ ।
ମିଶିବ ତ କେତେ ଥରେ,
ଏଇ ସହକାର ତଳେ ।

ସହକାର ତଳ ଆଉ କେତେ ଥର
ଦେଖିଲା ଆମ୍ଭ ରାସ ?

ଜ୍ୟୋସ୍ନା ନିଶାରେ    ଦେଖିଲା କି ଆଉ
ଉଡ଼ିବାର ପ୍ରିୟା-ବାସ ?
ମିଳିନାହୁଁ ଆଉ,    ମିଶି ନାହିଁ ବାହୁ
ରୋମାଞ୍ଚ କରି ଜାତ,
ଦୁହେଁ ଦୂରେ ଦୂରେ,    ଭିନ୍ନ କରିଛି
ସମାଜ ଦଣ୍ଡ-ଘାତ ।
ଭେଟି ନାହୁଁ ତାହା ପରେ,
ଏଇ ସହକାର ତଳେ ।

ଜ୍ୟୋସ୍ନା ରଜନୀ    କେତେ ଥିବ ପାହି
ସେଦିନୁ ତୋହର ଶିରେ,
ପଲ୍ଲବ ତୋର    ଉଠିଥିବ ଥରି-
କେତେ ବାର ପିକ-ଗିରେ,
ଚୂତ ! ତୋର ତଳେ    ପୁଣି କେତେ କରେ
କଂକଣ ଥିବ ବାଜି,
ଚୁମ୍ବନ-ରାଗେ    ହୋଇଥିବ କେତେ
ନାଗରିକା ଓଠ ମାଜି ।
ବାହୁ ଭିଡ଼ିଥିବ ଗଳେ,
ଏଇ ସହକାର ତଳେ ।

କହ ଚୂତ ! କହ    ସେପରି କି ଆଉ
ଦେଖିଛୁ କାହାରେ ଚକ୍ଷେ,
ଗୁରୁ ସୁରାମୟ    ସେପରି ପ୍ରଣୟ
ଗଭୀର କାହାର ବକ୍ଷେ ?
ପ୍ରିୟା ସମ ମୋର    ପୀରତି-ବିଭୋର
ଦେଖିଛୁ କାହାରେ ଆଉ ?
ନିବିଡ଼େ ସେପରି    କହ ପ୍ରିୟେ ଧରି
ବାନ୍ଧିଛି କିଏ ବାହୁ ।
ମିଶିଅଛି ପ୍ରାଣତଳେ
ଏଇ ସହକାର ତଳେ ।

ସାକ୍ଷୀ ତୁ କହ    ମୋହର ପ୍ରଣୟ
ସମାନ ଜଗତେ ନାହିଁ,

ମୋର ପ୍ରିୟା ସରି ନାହିଁ ସୁନ୍ଦରୀ
ନାହିଁ ବା ପ୍ରଣୟ-ଦାୟୀ ।
କ୍ଷଣକର ସୁଖେ ଦରିଦ୍ର ମୁହିଁ
ସମ୍ରାଟ ହୋଇ ଉଠେ,
କେହି ପାଇନାହିଁ ଦଣ୍ଡେ ଯା' ଦେଲା
ପ୍ରିୟା ମତେ ଓଠ-ପୁଟେ ।
ସେ କଥା କହ ତୁ ଥରେ,
ଏଇ ସେହି ତୋର ତଳେ
ଭୁଲିଯିବି ମୁହିଁ, ପ୍ରିୟା ନ ଦେଖିବା-
ଦୁଃଖ ଏ ଜୀବନରେ ।

## ବିରହୀ

ଦୂରେ ଦୂରେ ଦୂରେ
ପରାଣ-ପ୍ରିୟା ରହିଲା ଯାଇ
କାହାର ଅନ୍ତଃପୁରେ ।
ଜୀବନ ସାରା ଅଗ୍ନିଜଳେ
ବିରହୀର ଏ ବକ୍ଷ ତଳେ
କପୋତ ପରି
ଚିତ୍ତ ମୋର ଝୁରେ,
ଦୂରେ ଦୂରେ ଦୂରେ ।

ଏକା ଏକା ଏକା
ମୋ ଲୁହ ମୋର ହାତରେ ପୋଛି
ଭୂଇଁରେ କାଟେ ରେଖା ।
ତା ଛଡ଼ା ମୋର ପ୍ରିୟା ଯେ ନାହିଁ
ନୟନ ମୋର ପୋଛିବା ପାଇଁ
ନାହିଁ ଯେ ହୁଏ
ସେ ପ୍ରିୟା ସାଥେ ଦେଖା,
ଏକା ଏକା ଏକା ।

ପ୍ରିୟା ପ୍ରିୟା ପ୍ରିୟା
ଯହିଁ ମୁଁ ଯାଏ, ଯହିଁ ମୁଁ ଥାଏ
ଡାକଇ ମୋର ହିୟା ।
ପ୍ରିୟା ଯେ ମୋର ସୁଦୂର ଭୂମେ
ଆଉ କା ଓଠ ନୀରବେ ଚୁମେ
କୁଣ୍ଠିତରେ କରଇ ଓଠ-ପିଆ,
ପ୍ରିୟା ପ୍ରିୟା ପ୍ରିୟା ।

ସଖି ସଖି ସଖି,
ତୁମରି ଲାଗି ଆଉ କା ପ୍ରେମ
ପାରୁ ନାହିଁ ମୁଁ ରଖି ।
ତୁମେ ତ ଗଲ ଅନ୍ୟ ସାଥେ
ମୋ କାଳ ମୁହିଁ କିପରି କାଟେ,
କଲୁ ଯେ ମତେ ନଷ୍ଟ-ନୀଡ଼ ପଖୀ,
ସଖି ସଖି ସଖି ।

ହରି ହରି ହରି,
ଜୀବନ ମୋର ଭୋଗିବି ସିନା
ଦଗ୍‌ଧ ବୃକ୍ଷ ପରି ।
ଯେ ଯାହା ପ୍ରିୟା ରହିଲେ ନେଇ
ମୋ ପ୍ରିୟତମେ କାହାରେ ଦେଇ
ଏକଲା ବୁଲେ
ଦିବସ ଶର୍ବରୀ,
ହରି ହରି ହରି ।

କହ କହ କହ
ପ୍ରଣୟ ଦେଇ ବିରହ କିପାଁ
ଭୋଗିଲି ଅହରହ ।
ସ୍ରଷ୍ଟା ତୋର ବିଚାର ନାହିଁ,
କାହାର ସୁଖ ଥୋଇଲୁ କାହିଁ,
ଜୀବନ ମୋର,
କରିବୁ ଦୁର୍ବିସହ,
କହ କହ କହ ।

# ବସନ୍ତ-ବିରହୀ

ବସନ୍ତେ ଆଜି ପ୍ରିୟା ମୋର ନାହିଁ ପ୍ରିୟା
ବହୁ ଦୂରେ ସେ ତ ବନ୍ଦିନୀ ପରକୀୟା ।
ମଳୟ ପବନ ତେବେ ଅକାରଣ
ବୋଲି କାଁଦେ ମୋର ହିୟା,
ବନ୍ଦିନୀ ଯଦି ପ୍ରିୟା ।

ମନ୍ଦାର ତେବେ ଫୁଟିଲା କିପାଇଁ ଆଜି,
ତା ଘେନି କାହାର କବରୀ ମୁଁ ଦେବି ସାଜି ?
ତୁଳନା ତାହାର ସଙ୍ଗେ କାହାର
ଅଧର ହୋଇବ ଆଜି,
ଫୁଟିଲା କିପାଁଇ ବନେ ମନ୍ଦାର ରାଜି ?
କନକ-ଚମ୍ପା ବନେ କିପାଁ ବିକଶିଲା,
ବାସ ତୁଳିବାକୁ ନାହିଁ ପାଶେ ଚାରୁଶୀଳା,
ଯୋଜନଗନ୍ଧା କା'ପୁରେ ବନ୍ଧା
ସୁରଭାଇ ଗୃହଶିଳା,
କନକ-ଚମ୍ପା ଏଥି କିପାଁ ବିକଶିଲା ?

ବନେ ଏତେ ଫୁଲ ଫୁଟିଲା କିପାଇଁ କହ,
ପ୍ରାଣ ଯଦି ଯାଏ ଭୋଗି ଭୋଗି ଏ ବିରହ ।
ପ୍ରିୟା ଯଦି ଦୂରେ ମୁହିଁ ଏଥି ଝୁରେ
ମୁଖ ତାର ଅହରହ,
ବନେ ଏତେ ଫୁଲ ଫୁଟିଲା କିପାଇଁ କହ ?

ପ୍ରିୟା ଥିଲେ ପାଶେ ଚଟୁଳ ତା' ମୁଖ ଧରି,
ଫୁଲ୍ଲ ବକୁଳେ କବରୀ ଦିଅଁତି ଭରି,
ବକୁଳରୁ ମହୁ ଚାଟୁ କରି ବହୁ
ଚଖାଁତି ଆଦର କରି,
ପ୍ରିୟା ଥିଲେ ପାଶେ ଚଟୁଳ ତା' ମୁଖ ଧରି ।
କୁଂକୁମ ଆଉ ପଡ଼ି କି ରହଁତା ଡାଳେ,
ବିଂଦୁ ରଚନା କରି ମୁଁ ଦିଅଁତି ଭାଲେ,

ବକ୍ଷରେ ତାର ଚିତ୍ର ତିଆରି
କରନ୍ତି ମୁଁ ସେହି ଗାରେ,
କୁଂକୁମ ଆଉ ପଡ଼ି କି ରହନ୍ତା ତାଳେ ?

କେତକୀ-କଳିକା ଜୁଡ଼ାରେ ଦିଅଁତି ମାରି,
କହଁତି ମୁଁ ହସି ଆଜି ମୁଖ-ଶଶୀ
ସଜାଇବି ଭଲକରି ।
ଚାହଁତା ପ୍ରେୟସୀ ମୁଖେ ମତେ ଲାଜ ଛାଡ଼ି,
କେତକୀ ତେଣୁ ମୁଁ ଜୁଡ଼ାରେ ଦେଲି ଗୋ ମାରି ।

ପ୍ରିୟା କାହିଁ ଆଜି, ବସନ୍ତେ କାହିଁ ପ୍ରିୟା,
ବନ୍ଦିନୀ ଦୂରେ ପର ପୁରେ, ଘାରି ହିୟା
ତେବେ ମଧୁମାସ, ଖାଲି ପରିହାସ
ବୋଲି କହେ ମୋର ହିୟା,
ପ୍ରିୟା ନାହିଁ ପରା, ପ୍ରିୟା ନାହିଁ ପାଶେ ପ୍ରିୟା ।

ମଧୁମାସ ଦେଇ ବଧୂ ପାଶେ ନାହିଁ ଦେଲା,
ସ୍ରଷ୍ଟାର ଏ କି ନିଷ୍ଠୁର ଅବହେଳା,
କାରେ ସାଥେ ଧରି ମନଭରା କରି
ଅବିର କରିବି ଖେଳା,
ମଧୁମାସ ଦେଇ ବଧୂ ପାଶେ ନାହିଁ ଦେଲା ।

ସକଳେ ମାତିଲେ ପ୍ରାଣ-ପୂରା ଅନୁରାଗେ,
ନିଖିଳ ବିଶ୍ୱେ ମିଳନ-ଗନ୍ଧ ଜାଗେ,
ମୁହିଁ ଏକା ଖାଲି ପ୍ରଣୟ ଭିଖାରୀ
ବିଫଳେ ଭିକ୍ଷା ମାଗେ,
ସକଳେ ମାତିଲେ ପ୍ରାଣ-ପୂରା ଅନୁରାଗେ ।

ପ୍ରିୟା ଯହିଁ ଅଛି ବସନ୍ତ ଆସିଥିବ,
ବିରହରେ ସେ ତ ଡାକୁଥିବ ଶିବ ଶିବ,
ମଳୟ ସମୀର ନୟନର ନୀର
ବହି ଗୁରୁ ହେଉଥିବ,
ବିରହରେ ସେ ତ ଡାକୁଥିବ ଶିବ ଶିବ ।

ଦୁହେଁ ଦୁଇ ଦେଶେ, ବ୍ୟର୍ଥ ଏ ମଧୁମାସ,
ପ୍ରଣୟ ପାଇଁକି ନ ମିଳିଲା ଅବକାଶ,

ବିଧାତା କହ ତ                    କିଁପା ଅବିରତ
ଜଗତେ ଏ ପରିହାସ,
ପ୍ରଣୟ ବିହିନେ ଗଲା ଚାଲି ମଧୁ ମାସ ।

# ମୌନ-ବିଦାୟ

ବିଦାୟ ବେଳ ଯେବେ ଆସିଲା ସଖି,
ରହିଲ କିପାଁ ତୁନୀ; ନୟନ ରଖି
ଧରଣୀ ତଳେ । ନଖେ କାଟିଲ ଗାର,
ଚିବୁକ ଓଦା କଲା ନୟନ-ଧାର ।
'ବିଦାୟ ଦିଅ ମତେ ଯାଉଛି ମୁହିଁ'
କିପାଇଁ ନ କହିଲ ଭଲା ସୁମୁହିଁ ।
ମଉନ ରହି ଯାହା କହିଛ କଥା,
ପ୍ରିୟରେ ତବ ଚିର ଦେଉଛି ବଥା ।
'ଯାଉଛି' ବୋଲି କହି ପାରିଲା ନାହିଁ
ଯେହ୍ନୁ, ତାହାରେ ମନୁଁ କେହ୍ନେ ଭୁଲାଇ !
ଯାଇ ସେ ନଯାଉଛି; ରହିଛି ବୁକେ
ବିଦାୟ ଦେଇ ନିତି ଦେଖେ ତା' ମୁଖେ ।

# ପ୍ରଣୟୀ

ବକ୍ଷଭରା ଏ ପ୍ରଣୟ ମୁଁ କାରେ ଦେବି ଗୋ,
ବଡ଼ ଉଚାଟ କରେ ମତେ ଦିନ ରାତି,
ଅଶ୍ରୁ ନିଭାଇ, କାହାର ଚରଣ ସେବି ଗୋ
ସକଳ ଲୋମ ମୋ ପୁଲକିବ ଡାକି 'ସାଥୀ' ।

ପିଆଲା ଉବୁରି ଉଚ୍ଛୁଳେ ମମ ଜୀବନ,
କାହା କର-ପୁଟେ ଢାଳିଦେବି ସଖା-ସୋହାଗେ,
କାହାରେ ପାଇ ମୁଁ ଭୁଲିଯିବି ଜରା-ମରଣ,
ଜୀବନ ଲାଗିବ ମଧୁର, ଗଭୀର-ସରାଗେ ।

ବସନ୍ତ ଆଜି ମଧୁର କରିଛି ଧରଣୀ,
ମଳୟ-ମତ୍ତ ଚୁମ୍ବି କୁସୁମ-ସୁରଭି,
ଆମ୍ର-ବକୁଳ-ମଦାଳସା ପିକ-ରମଣୀ
ପ୍ରଣୟୀ ପାଇଁକି ଛାଡ଼ିଛି ମତୁଆ ପୂରବୀ ।

ବାତାୟନ ଦେଇ ଗନ୍ଧ-ବିଧୁର ଦକ୍ଷିଣା
ପରଶି ଅଙ୍ଗ, ଥରାଏ ନିଖିଳ ଛାତି,
ଅନ୍ତର-ପୁରେ ଖୋଜଇ ତରୁଣୀ ନବୀନା
ଏ ମଧୁର କାଳେ ଲୁହ-ଚିହ୍ନରା ସାଥୀ ।

ତରୁଣୀ ଜୀବନ ଝରଇ ପରା ଗୋ ଲୋତକେ
ଆଦ୍ୟ-ମଳୟେ କାନ୍ଦେ ମୋ ବୁକୁ-ଷୋଡ଼ଶୀ,
ସେ ଚାହେଁ ଜୀବନ ବିକିଦେବ କଥା ପଦକେ
କହିବ ଯେ ଖାଲି ''ତୁମରି ମୁଁ ସମବୟସୀ !''

''ବସନ୍ତେ ଆଜି କେ ଅଛ ଆସ ଗୋ ନାଗର
ପ୍ରଣୟବିଧୁରା ତରୁଣୀର ନେବ ସୁଆଗ,
ତବ ଅବଗାହେ ଧନ୍ୟ ହେଉ ଏ ସାଗର
ତୁମରି ଶ୍ରବଣେ ଧନ୍ୟ ହେଉ ତା ବେହାଗ ।''

× × ×

ସନ୍ଧ୍ୟା ଯେ ହେଲା, ନଇଲେ ତ କେହି ପ୍ରଣୟୀ,
କ୍ଳାନ୍ତ-କଣ୍ଠ କୋକିଳ ଚଳଇ ନୀଡ଼େ,
ଦିଗନ୍ତେ ଦିଗ-ମଧୁରା ମଳୟ ଚଳଇ
କେଳି-ସାଥୀ ଘେନି ହଂସ ଫେରଇ ତୀରେ ।

ଅଗଣ-ସନ୍ଧ୍ୟା ଯାପିଛି ଏକାକୀ ଦୀନ ମୁଁ
କେହି ନ ଆସିଛି କଣ୍ଠେ ମୋ ବାହୁ ଭିଡ଼ନେ,
ମରଣ ନିକି ଗୋ ସୁଖର ଏ ଘୋର-ସରମୁଁ
ସାଥୀ-ସଙ୍ଗାତ କାହାର ନାହିଁ ଏ ଭୁବନେ ?

ଜଣ ଜଣ କରି ବରି ମୁଁ ଆଣିଛି ଦେବତା
ଜଣ ଜଣ କରି କହିଛି ବୁକୁରେ ଥିଲା ଯା,
ଜଣକର ହେଲେ ନ ହେଲା ମୋଠାରେ ମମତା
ସକଳେ ତେଜିଲେ ଦୀନ ଦରିଦ୍ର ପରି ଯା ।

କେତେ ଥର ଆହା ବୁଝାଇଲି ନିଜେ ନିଜରେ—
''ଅପଦାର୍ଥର ବାନ୍ଧବ କାହିଁ ଜଗତେ ?''
ଗୁମରି ବିଳପେ ବୁକୁ-ବଧୂ ଅଭିମାନରେ
''କିପାଁ ତେବେ ବିଧି ଦେଲା ଏ ବିଳାପ ରକତେ ?''

ପରିହାସ ସେ ଗୋ, ବଡ଼ ପରିହାସୀ ଦଇବ
ଲୁହ ରଖି ଲୁହ ପୋଛିବାର ନାହିଁ ବିଧାନ,
ପତିତର କିପାଁ ଦେବ-ଭୋଗ ଆଶା ହୋଇବ
ନିଜ ଇଚ୍ଛାରେ ବିଧାତାର ସବୁ ଭିଆଣ ।

ସବୁ ଭିଆଣରୁ ପୀରତି-ଭିଆଣ ଜଟିଳ
ବିଳପି ବସିଲେ ବୋଧିବାର ଲୋକ ନଥାଏ,
କଠିନ ଆହୁରି ବାନ୍ଧିବା ଲୁହ ଆଖିର
ଯେତେ ପୋଛ, ପୁଣି ସେତିକି ଗୋ ବୁକୁ ବଥାଏ ।

× × ×

ସକଳ ସନ୍ଧ୍ୟା ପରି ମୁଁ ଆଜି ଗୋ ବିଳପେ,
ବସନ୍ତେ ଏଇ ନବଜାତ-ଘାସ- ଆସନେ,
ଅଙ୍ଗ ଚାହେଁ ଏ କାନ୍ତ-କୋମଳ ତଳପେ
ଆରେକ ଦେହର ସରସ ନିବିଡ଼ ମିଳନେ ।

ବନ୍ଧୁ କେ ଚାହ, ଅଭିସାର କର ଏଠାବେ
ବାସକ-ସଜ୍ଜା ରଚିବି ମୁଁ ସାରା ଯାମିନୀ,
ଆସ କେ ଆସିବ, କବରୀ-କୁସୁମ-ପରାଗେ
ଉଦ୍‌ବେଳ କରି ହୃଦୟ ଏ ବର-କାମିନୀ ।

ତରୁଣ ଆସିଲେ କଂକଣଧ୍ୱନି ଶୁଣିବି
ତରୁଣୀ ଆସିଲେ ନୂପୁର ବାଜିବ ଅଦୂରେ,
ତରୁଣ ଆସିଲେ ଗୀତେ ତାର ଗୁଣ ଗୁଣିବି,
ତରୁଣୀ ଆସିଲେ ତୋଳି ନେବି ତାକୁ ବୁକୁରେ ।

ଯେ ଆସିବ ଆସୁ, ନିଃଶେଷ କରି ପାତ୍ର
ପିଆଇବି ତାକୁ ସରସ ଜୀବନ-ମଦିରା,
ସାଥୀ ଖୋଜେ ଆଜି ପ୍ରାଣ ମୋର, ଏ ମୋ ଶାତ୍ର
ଉତ୍‌ପ୍ଲାବି ଉଠେ ରସର ତଟିନୀ ଗଭୀରା ।

—

# ବିରହ

ମିଳନର କାଳେ ଯେତେ ପାଖେ ଆସ
ଥାଏ ଦେହ ବ୍ୟବଧାନ,
ବିରହରେ ପ୍ରିୟେ ! ହୋଇଅଛି ଆଜି
ଶରୀରର ଅବସାନ ।
ଶୋଣିତର ସ୍ରୋତେ ସାରା ଦେହେ ଆଜି
ତୁମର ପରଶ ପ୍ରିୟା,
ଦେହମୟ ଆଜି ହୋଇଅଛ ତୁମେ
ଆବରି ରହିଛ ହିୟା ।
ବାହାରେ ଭିତରେ ସବୁଆଡ଼େ ତୁମେ—
ଅଭିନବ ଅନୁଭବ,
ନିଜ ଦେହେ ଯାକି ପାଉଛି ବିରହୀ
ମଧୁର ପରଶ ତବ ।
ଯହିଁ ଯାଏଁ ମୁହିଁଯହିଁ ଅବା ଥାଏଁ
ମୋର ଏ ପରାଣ ତଳେ,
ବୀଣା-ତାର ତଳେ ମଧୁଗୀତ ସମ
ତୁମରି ଛାୟାଟି ଚଳେ ।
ସବୁକାମ ତଳେ ତୁମ କଥା ସଖି
ବାଜୁଥାଏ ରହି ରହି,
ଆଖି ଯାହା ଦେଖୁ, ମନ ଭାବୁଥାଏ
ଦିନେ ଗୋ କି ଥିଲ କହି ।
ବିରହ-ବିଧୁର ବିରହ ମଧୁର
ଭାବେ ମୋ ବିରହୀ ହିୟା,
ବିରହ ଯେ ଦେଲା ଯୋଗ, ଭୋଗିବାକୁ
ଦେହ ସାରା ମୋର ପ୍ରିୟା

—

# ବର୍ଷା-ବିରହ

(୧)

ଆଷାଢ଼ୀ ପ୍ରାତେ କୃଷ୍ଣ ଆକାଶ ତଳେ
ପରାଣେ ଯେତେ ଦରଜ ଉଠେ ଫୁଟି,
ପାଉଛି କାହିଁ ପରାଣ-ପ୍ରିୟ ମମ
ଯାହାର କାନେ କହିବି ମୁଖ ଫୁଟି ।
ସରମ ନିକି ଲାଗିବ ମତେ ତିଳେ
ସକଳ ଆଗେ କହିବି ମୋର ବଥା,
କାହାର ଅବା ଗରଜ ଅଛି କିସ
ଶୁଣିବ ବସି ମୋହର ଦୁଃଖ-କଥା ।
ପ୍ରିୟ ଯେ ସିନା ତା’ପାଶେ କହି ଆସେ
ପ୍ରାଣର ଯେତେ କ୍ଷୁଦ୍ର ଅଳିଦୁଳି,
ପର କି ତାହା ବୁଝିବେ କେବେ ହେଲେ
କହିବେ— ‘ଆହେ, କି କହ ନିଆଁ ଚୁଲି !’
ମରମ କଥା ମରମୀ ସିନା ଜାଣେ
ସାଥିରେ ନାହିଁ ମରମୀ ମୋର ପୁର,
କେସନେ କହ କାଟିବି ଏଇ କାଳ
ଆସାର-ଓଦା ମେଦୁର-ମଂଜୁଳ ।

(୨)

ମେଘୁଆ ଦିନେ ବୃଷ୍ଟି-ମୁଖର କାଳେ
ମନଟା କିପାଁ ହୁଅଇ ଛଳ ଛଳ,
ପରାଣ ଖୋଜେ ଆହୁରି ଏକ ପ୍ରାଣ,
ହସ୍ତ ଲୋଡ଼େ ଆଉ କା’ କରତଳ ।
ଏପରି ଏକ ଆଷାଢ଼-ବୃଷ୍ଟି ଭରା—
ସକାଳେ ପ୍ରାଣ ଉଠିଲା ଯେଣୁ ଥରି,
ମନ୍ଦାକ୍ରାନ୍ତେ ଗାଇଲେ କାଳିଦାସ
ପ୍ରୋଷିତଭର୍ତ୍ତା ପିୟାରେ ଅନୁସରି ।
ଦରଜ ସେଇ ବାଜଇ ପ୍ରାଣେ ମମ
ଆଜି ଯେ ଏଇ ବର୍ଷା-ମୁଖର ପ୍ରାତେ,
କେଉଁ ପ୍ରିୟାରେ ଦେବି ମୁଁ ସନ୍ଦେଶ
ଜଳଦ ସମ କେଉଁ ବା ଦୂତ ହାତେ ?

ମୋ ପାଇଁ କେହି ପ୍ରିୟା ତ ନାହିଁ ବସି
କରଜ-ଗାରେ ବିରହ -ରାତି ଗଣି
ଦରଜ ମୋର ଶୁଣିବ କିଏ କହ,
ଉଠିଲା ଯଦି ହୃଦୟ ରଣରଣି ।

(୩)

ବୃଷ୍ଟି ଧାରା ପଡ଼ଇ ଅବିରତ
ଦୂର୍ବାଦଳ ପଡ଼ଇ ନଇଁ ଲାଜେ,
ବର୍ଷା, ଘାସ ଆଲିଙ୍ଗନ ଦେଖି
ପରାଣେ ମମ ବ୍ୟଥାର ବୀଣା ବାଜେ ।
ଶୀକର-କଣା ଛିଡ଼ିକି ଗବାକ୍ଷରେ
କପାଳେ ମୋର ମୁକ୍ତାସମ ଲାଗେ,
ପାଖରେ ମୋର ନାହିଁ ଯେ ପ୍ରାଣର ସଖୀ
ଦେଖିବ ତାହା ପରମ ଅନୁରାଗେ ।
ଜଳଦ ଡାକେ ଶୁଣିଛି ଏଇ ଦିନେ
ଫୁଟଇ ଉଠି କଦମ୍ବ-ମୁକୁଳ,
ଆଷାଢ଼େ ମୋର ବ୍ୟଥିତ ନିଃଶ୍ୱାସେ
ଗଣ୍ଡ କା'ର ହେବନି ବ୍ୟାକୁଳ ?
ସାଥୀ ତ ନାହିଁ ଆଜି ଏ ଆଷାଢ଼ୀ ପ୍ରାତ
କଟିବ ସିନା ବ୍ୟଥିତ ନିଃଶ୍ୱାସେ,
ଦରଜ ମୋର ହୃଦୟେ ଉଠି ଘରୁ
ଚାହିଁ ମୁଁ ରହେ, ଆଷାଢ଼ ଆକାଶେ ।

## ମନେ କି ଥାଏ ?

ଯହିଁ ମୁଁ ଥାଏ ବା ଯହିଁ ମୁଁ ଯାଏ
କାନେ ବାଜେ ତବ 'ମନେ କି ଥାଏ'
ହେ ପ୍ରିୟତମ,
ସ୍ୱପନେ ଶୁଣିବା ମୂରଲି ସମ ।

ଓଠ ଧରି ଛୋଟ ଚଟୁଳ ହାତେ
ନୟନ ମିଶାଇ ନୟନ ସାଥେ
ପଚାରିବାର
ପାଶୋର ଜୀବନେ ଯିବ କାହାର ?

ପଚାରିବା ସେଇ 'ମନରେ ଥାଏ'
ବାହୁଲତା ରଖି ଏ ମୋର କାୟେ
ନିବିଡ଼ କରି
ନିଦାଘ ରଜନୀ ଜ୍ୟୋସ୍ନା ସରି ।

ଗୋଟିଏ କଥାରେ କେତେ ସେ କଥା
କହି ବିରହୀର ହରିଲା ବ୍ୟଥା
ଜାଣ କି ପ୍ରିୟେ
ସ୍ମରିଲେ ପରାଣେ ଅମିୟ ଦିଏ ।

ସେଇ ଓଠ-ଧରା ଚଟୁଳ କରେ
ଅଙ୍ଗୁଳି ଲାଜ-ଆଦରେ ଥରେ
ପଚାରିବା ସେ
'ମନରେ କି ଥାଏ' ଚାହିଁ ପ୍ରୋ ଆଶେ ।

ସବୁ ମନେପଡ଼େ ସବୁ ଗୋ ପ୍ରିୟା,
ଏ ମାନ କି କେବେ ଭୁଲେ ଗୋ ହିୟା,
ଭୁଲି କି ତାରେ
ଯେ ରାଣୀର ଏତେ ଦୟା ମୋଠାରେ ?

ମନରେ ଥାଅ ଗୋ, ମନରେ ଥାଅ,
ତମେ ପୁଣି ମନୁ ପାଶୋର ଯାଅ ?
ହେ ପ୍ରିୟତମ,
ମିଶି ଯେ ଯାଇଛ ଚିତ୍ତେ ମମ ।

## ପ୍ରଣୟ- ଗର୍ବ

ସକଳେ କରନ୍ତି ଗର୍ବ ପ୍ରିୟ-ପ୍ରିୟା ଘେନି
ମୋ ଆଗେ । ତା' ଶୁଣି ପ୍ରିୟେ ମୋର ଆଖି ବେନି
ଛଳଛଳ ହୋଇ ଆସେ ଗୁରୁ ଅପମାନେ ।

ମୋର କି ବାନ୍ଧବୀ ନାହିଁ ? ସ୍ନେହ-ଅଭିମାନେ
ଚଟୁଳ-ଶ୍ରୀକରେ ଧରି ଓଠ ମୋର ସ୍ନେହେ
ସନ୍ନିଧିରେ କଣ୍ଟକିତ କରି ମୋର ଦେହେ,
ମତେ କେ କି କହି ନାହିଁ, ''କ୍ଷମାକର ମତେ;
ରାଣ ମୋର, ରାଗ ଛାଡ଼, କଥା କହ'' ସତେ ?

ମତେ କେ କି ବରାନନୀ ବ୍ରୀଡ଼ାନତ ମୁଖ
ଧୀରେ ତୋଳି, ନୟନେ ମୋ ଦେଇ ମହାସୁଖ,
କର୍ଣ୍ଣମୂଳେ ଲଜ୍ଜାବତୀ ଓଠ ରଖି ତାର
ପଚାରିନି 'ଭଲପାଅ' ବୋଲି ବାର ବାର ?

ତୁମେ ତାର ସାକ୍ଷୀ ପ୍ରିୟେ ! ଦୂରେ ବହୁଦୂରେ
ଅଛ ଯାଇ ଗଣ୍ଡବନେ ବନ୍ଦିନୀ କା' ପୁରେ ।
ପ୍ରିୟ-ଅଭିମାନୀ ଏଇ ଇତରଙ୍କ ଆଗେ
କେମନ୍ତେ ଦେଖାଇ ଗର୍ବେ ମୋର ଅନୁରାଗେ ?

କେମନ୍ତେ ଜଗତ ଆଗେ କହିବି ଶୁଣାଇ
ତବ-ମମ ପ୍ରେମ ସମ ନାହିଁ ପ୍ରେମ ନାହିଁ !
କେମନ୍ତେ ଜନତା ଆଗେ କହେ ଗର୍ବ କରି,
ମୋ ପାଇଁ ସୁଦୂରେ କାନ୍ଦେ ପରମା ସୁନ୍ଦରୀ ।

ଗୃହ କର୍ମ ତେଜି ତାର, ବାତାୟନ ପାଶେ
ପ୍ରାଣର ପ୍ରାର୍ଥନା ଲୁହେ ଦେଇ ମୋହ ଆଶେ ।
ଭାବେ ପୁଣି, ଗର୍ବ ପଛେ କରନ୍ତୁ ଇତର,
ଭାବନ୍ତୁ ପଛକେ ମତେ ଅକିଞ୍ଚିତକର;

ତୁମରି ମୋହରି ମଧ୍ୟେ ତୁମ ମୋର କଥା
ରହୁ ପ୍ରିୟେ, ନଜାଣୁ ତା' ଇତର ଜନତା ।
ସଂସାର ତା' ଗର୍ବ ନେଇ କରୁ ତା ବିଚାର,
ତୁମ ବକ୍ଷ ତଳେ ମୋର ସକଳ ସଂସାର ।

## ରାସସ୍ଥଳୀ

ପଥିକ, ଯେ ପଥେ ଚାଲ
ସେହି ପଥେ ଜାଣ ପ୍ରଣୟିନୀ ଏକ
ରଚିଥାଇ ଅଭିସାର ।

ଚରଣ-ପରଶେ ତାର,
କଠିଣ-ସରଣୀ-ପାଷାଣ ଅଙ୍ଗେ
ଉଠୁଥାଇ ଶୀତ୍କାର ।

ତା କୁଡ଼ା-ଗନ୍ଧ ପାଇ
କ୍ଷୁଧିତ ମଳୟ ଭୋଜନ ଶରମେ
ଉଡ଼ି ଯେ ପାରଇ ନାହିଁ ।

ଶରୀର-ଆଲୋକ ତାର
ଘୋଡ଼ାଇ ନପାରି ଲଜ୍ଜିତ ହୁଏ
ରଜନୀ ଅନ୍ଧକାର ।

ଶଂକିତେ ଯେବେ ଆସେ
ସାରା-ପଥେ ପରା ସେ ପ୍ରିୟତମାର
ରୂପ ଓ ଗନ୍ଧ ଭାସେ ।

ପଥ-ପାଶେ ସହକାର
ପ୍ରିୟା ଆଉ ପ୍ରିୟ ମିଳନ ପାଇଁକି
ଦିଏ ତା ଅନ୍ଧକାର ।

ଏଇ ସହକାର ତଳେ
ଏଇ ପଥ ପାଶେ ଭିଡ଼ିଥିଲା ବାହୁ
ପ୍ରିୟା ତ ପ୍ରିୟର ଗଳେ ।

ତଳେ ଏଇ ପଥ-ଘାସ
ଉପରେ ତାରକା ମନେରଖିଛନ୍ତି
ସେ ପ୍ରିୟ-ପ୍ରିୟାର ରାସ ।

ପ୍ରଣୟ କି କଥା ଜାଣ ?
ତେବେ କି ପଥିକ ଏ ଚାଲିବା-ପଥେ
ନ କରିବ ସମ୍ମାନ ?

ଏପଥର ରେଣୁ ତଳେ,
ମନେରଖି ଏକ ରୂପସୀ ପ୍ରିୟାର
ପ୍ରଣୟ ନିତ୍ୟ ଥରେ ।

ଏଇ ସହକାର ତଳେ
ମନେରଖି ଏକ ସୁନ୍ଦରୀ ଦେଲା
ପ୍ରାଣ ତାର ପ୍ରିୟ-କରେ ।

ଏ ସରଣୀ-ରେଣୁରାଶି
ଖୋଜୁଛନ୍ତି ଆଜି- କାହିଁ ଗଲା କାହିଁ
ସେ ଦିନ ମରକାଶୀ ?

ପଥିକ, ଏ ସବୁ ଜାଣି
ଗଲାବେଳେ ଏଥି, ଧରିବ ନାହିଁକି
ଚରଣ-ବସନ ଟାଣି ?

ସେ ବେନି ପ୍ରଣୟୀ ଆଉ
ମିଳିବେନି ଏଥି ମିଳାଇବେ ନାହିଁ
ନିବିଡ଼େ ଦୁଇଟି ବାହୁ ।

ଦୁହେଁ ଦୁଇ ଦେଶେ ରହି
ଦୁହିଁଙ୍କ କପୋଳେ ବିରହର ଜଳ
ନିତ୍ୟ ଯାଉଛି ବହି ।

ତେଣୁ ହେ ପଥିକ, କହେ,
ସମ୍ମାନ କର, ସମ୍ମାନ କର
ବିରହିତ ସେ ପ୍ରଣୟେ ।

ତୀର୍ଥ କରିଛ କି ହେ ?
ତୀର୍ଥଟି ତହିଁ, ମାନବର ହିୟା
ଯହିଁ ଦିଏ ଆଉ ନିଏ ।

ଏ ପଥ ତୀର୍ଥ ଜାଣ,
ଏଇ ପଥେ ପରା ମିଶିଯାଉଥିଲା
ଚୁମ୍ବନେ ଦୁଇ ପ୍ରାଣ !

ଏଇ ପଥ-ରେଣୁ ପରେ,
ପଥିକ, ଜାଣ କି ପ୍ରେମିକ ବାସନା
ଯେହ୍ନେ ତା ଚିତା ଜଳେ !

ତେଣୁ ହେ ପଥିକ କହେ,
ସମ୍ମାନ କର ଏ ପଥେ, ଯା ତଳେ
ପ୍ରେମ ଓ ବିରହ ବହେ ।

—

# ଜଣେ ମତେ ଭଲପାଏ

ଦୁର୍ଦ୍ଦିନେ ପ୍ରାଣ ଆଉ ଡର ନାହିଁ ପାଏ,
ଜାଣିଲିଣି ଯେଣୁ ଜଣେ କେହି ଭଲପାଏ ।
ଥାଉ ସେ ସୁଦୂରେ ଲକ୍ଷ ଯୋଜନ ପାରେ
ବନ୍ଦିନୀ କାରାଗୃହର ଅନ୍ଧକାରେ,
ବାଜେ ମୋର ଏଇ ହୃଦୟର ଏକ ଠାଏ,
କେଜାଣି କାହିଁକି ପ୍ରିୟତମ ସମ
ମତେ ସେ ଗୋ ଭଲପାଏ ।

ଗୃହିଣୀ ସେ, ତାର ଜଞ୍ଜାଳ ଶତ ଶତ
ମାନିବାକୁ ହୁଏ ବହୁଜନ-ମନୋରଥ ।
ତଥାପି ପାଇଲେ କ୍ଷଣକର ଅବସର
ଘରଣୀର ଘୋର ଜଞ୍ଜାଳୁ ଦିବସର
ନୀର ଡେକି ଥରେ ପୋଛିନିଏ ମୋହ ଲାଗି,
ଦେବତାଠୁଁ ନିଏ ମୋର ମଙ୍ଗଳ ମାଗି;
ମୋହ କଥା ଭାବି ଶୟନେ ନିଦ୍ରା ଯାଏ
କେ ଜାଣେ କାହିଁକି ବିଶାଳ ଜଗତେ
ମତେ ଏତେ ଭଲପାଏ ?

ସେଇ ମଙ୍ଗଳେ ବିଶ୍ୱାସ ମୋର ବଡ଼
ସେଇ ସ୍ନେହୁଁ ଆଉ ନାହିଁ ପବିତ୍ରତର ।
ସେଇ ପ୍ରେମ ମତେ ଜୀବନ ଦେଇଛି ଆଜି
ବୀର ସମ ବାହି ଯିବି ଦୁର୍ଦ୍ଦିନରାଜି ।
ଗଗନେ ମୋହର ହେଲେ ଘୋର ଘନଘଟା
ବଦନ ତାହାର ହେବ ବିଦ୍ୟୁତ୍-ଛଟା ।
ସଂଗ୍ରାମେ ଯଦି ଶୀଥିଳ ହୁଏ ଏ କର,
ଦୂରୁଁ ସେ ଡାକଇ 'ମତେ ଚାହଁ, ଅସି ଧର' ।
ସ୍ନେହ ତାର ମତେ ଦେଲା ନୂଆ ଅବତାର,
ପରାଣ ମୋ କହେ, ସବୁ ମୁଁ ସହିବି
ହେବାକୁ ଯୋଗ୍ୟ ତାର ।

ଦୁର୍ଦ୍ଦିନେ ତେଣୁ ଆଉ ଡର ନାହିଁ ପାଏ,
ଜାଣିଲିଣି ଠିକେ ଯେଣୁ ଜଣେ ଭଲପାଏ ।
ସକଳ କରମେ ପଛେ ମୋର ସେ ଗୋ ରହି
ଇଙ୍ଗିତ ଦିଏ ସମରେ ହେବାକୁ ଜୟୀ ।
ସଚିବ ସେ ମୋର, ଜନନୀ, ଭଗିନୀ, ପ୍ରିୟା
ସବୁ ରୂପେ, ସବୁ ଭାବେ ସେ କିଣିଲା ହିୟା ।
ତାହାରି କଥା ମୁଁ ଭାବୁଥାଏଁ, ଗାଉଥାଏଁ,
ଲାଜ ନାହିଁ ମୋର, ଡର ନାହିଁ ମୋର,
ସେ ଯେ ମତେ ଭଲପାଏ ।

## ସ୍ମୃତି

ବହୁତ ଦିନ ହେଲା ତୁମର କଥା କିପାଁ
ପଡ଼ିନି ମନେ,
ବ୍ୟସ୍ତ ଥିଲି ପରା ବିଗତ ଦିନଯାକ
ସକଳ କ୍ଷଣେ !
କରମ ଅବସରେ ଆଜି ଏ ପ୍ରଭାତରେ
ଅଳସେ ବସି
ଜୀବନ-କଥା ଭାବୁ ପଡ଼ିଲା ମନେ ତବ
ବଦନ-ଶଶୀ ।
ତୁମରି ପରି ଆଉ ପ୍ରିୟନ୍ତ ମୋର ନାହିଁ
ଜୀବନେ ସଖି,
ନୟନ ଲୁହେ କିଏ ପ୍ରଣୟ ହୃଦେ ମୋର
ଯାଇଛି ରଖି ?
ଆଉ କେ ମୋର ପାଇଁ ନିଜରେ ଭୁଲି ମତେ
ଦେଇଛି ସ୍ନେହ ?
କଳଙ୍କ ମାଥେ ବହି ହସି କେ କହ ମତେ
ଡାକିଛି 'ପ୍ରିୟ' !
କେହି ଗୋ ଦେଇ ନାହିଁ ତୁମରି ପରି ପ୍ରେମ
ଜାଣ ଏ ଦୀନେ,

ଯଦି ବା ସଖା-ସଖୀ ମେଳ ଏ ଜୀବନରେ
ଛାଡ଼ିନି ଦିନେ ।
ତୁମରେ କିପରି ମୁଁ ଭୁଲିବି କହ ସଖି
ଭୁଲିବି କହ,
ସକଳ ସୁଖ ମେଳେ ପ୍ରିୟା ଗୋ ବାଧେ ମତେ
ତୁମ ବିରହ ।
ଆଜି ଏ ପ୍ରଭାତରେ କରମ ଅବସରେ
ପଡ଼ିଛ ମନେ,
ସକଳ ଅବସରେ ପରାଣ-ପ୍ରିୟା ତମେ
ପଡ଼ ଗୋ ମନେ ।
ଆଉ ତ ଦେଖା ନାହିଁ ଜୀବନେ ହେବ, ରାଣି
ଜୀବନେ ଥାଉଁ,
ସ୍ମୃତିରେ ନିଧି କରି ଧରଣୀ ପରେ ଶେଷ
ଜୀବନ ଯାଉ ।
ତୁମେ କି ପ୍ରିୟା ମତେ ଭାବ ଗୋ ବେଳେବେଳେ
ମୋହରି ପରି,
ଅତୀତ କଥା ଭାବି ବିଶାଳ ଦୁଇ ଆଖେ
ଲୋତକ ଭରି ?
ପଚାରୁଁ କହିଥିଲ 'ନିରତେ ତମେ ମନେ
ପଡୁ ଯେ ଥାଅ'
ସେ ବାଣୀ ଭରସାରେ ଲିଭଇ ଆପେ ଆପେ
ବିରହ-ଦାହ ।
ଜାଣେ ମୁଁ ଜାଣେ ସଖି ଭୁଲି ନଥିବ ମତେ,
ନୁହ ସେପରି,
ଜାଣେ ମୁଁ ଏ ଜଗତେ ପ୍ରେମିକା ନାହିଁ ମୋର
ପ୍ରିୟାର ସରି ।

—

# ପାଶୋର ପ୍ରଣୟ

ଜୀବନେ ଯାକୁ ଭଲ ପାଇଲି ବାରେ
ପରତେ ନାହିଁ ଆସେ
ନିଜକୁ ନିଜ ଭାଷେ
କହିବି ଯଦି ଆଜି ଭୁଲିଛି ତାରେ,
ଜୀବନେ ଯାକୁ ଭଲ ପାଇଲି ବାରେ ।

ବିବେକ କହେ ଡାକି ଆହେ ରସିକ
ଥରେ କି ଭଲପାଇ
ଭୁଲିବା ଶୋଭା ପାଇ
ନିଠୁର-ପ୍ରାଣ ତବ, ପ୍ରଣୟ ଧିକ,
ବିବେକ କହେ ଡାକି ଆହେ ରସିକ ।

ଏ ଛାତି ତଳେ ଯାଏ ପରାଣ ମରି
ପାଇ ଏ ଉଲୁଗୁଣା
ପୁଣି ପ୍ରେମ, ପୁରୁଣା–
ହେଲା କେମନ୍ତେ ସେଇ କଥା ସୁମରି;
ଏ ଛାତି ତଳେ ଯାଏ ପରାଣ ମରି ।
କେମନ୍ତେ କିପାଇଁ ବା ଭୁଲିଲି ତାରେ,
ନିଜେ ତ ନାହିଁ ଜାଣେ
କେମନ୍ତେ ମୋର ପ୍ରାଣେ
ପଡ଼ିଲା ବାରିଧାରା ପ୍ରେମ-ଶିଖାରେ;
କେମନ୍ତେ କିପରି ବା ଭୁଲିଲି ତାରେ ।

ମନେ ତ ଅଛି ସେଇ ଲୀଳା ଆଗର;
ପରାଣ ଦିଆଦେଇ
ସକଳ ପଥ ଦେଇ,
ମୋ ପାଇଁ କାଟିବାର ନିଶି ଜାଗର;
ମନେ ତ ଅଛି ସେଇ ଲୀଳା ଆଗର ।

ନୟନେ ନୟନେ ସେ କହିବା କଥା
ନିରତ ମୁଖେ ଚାହିଁ
ଇଷିତ ପୁରେ ନାହିଁ;

ଟିକିଏ ଆଡ଼ ହେଲେ ଲାଗଇ ବଥା,
ନୟନେ ନୟନେ ସେ କହିବା କଥା ।

ସବୁ ତ ଅଛି ମନେ ପ୍ରିୟା ଗୋ ମମ,
ସେ ଦୀପ ଆଉ ଜଳେ
ନାହିଁ, ଏ ପ୍ରାଣ ତଳେ
କିପାଇଁ କରି ପ୍ରାଣେ ଫଗୁଣ ସମ;
ସବୁ ତ ଅଛି ମନେ ପ୍ରିୟା ଗୋ ମମ ।

ଭାବିବା ଆନ ଅବା ନୟନ ଢାଳି
ନେଲାଣି କିଣି ମତେ,
ଚାହିଁଛି ମୋର ପଥେ,
କୁଟୀରେ ତା'ର ପ୍ରେମ-ଜାଗର ଜାଳି;
ଭାବିବ ଆନ ଅବା ନୟନ ଢାଳି ।

ନାହିଁ ଗୋ ନାହିଁ ସଖି, ସେପରି କେହି
ମୋ ପଥେ ମୁଁ ଏକାକୀ
ନାହିଁ ତ କେହି ସାଥୀ
ଆପଣା କରିବ ଯେ ପ୍ରଣୟ ଦେଇ;
ନାହିଁ ଗୋ ନାହିଁ ସଖି ସେପରି କେହି ।

ତଥାପି ହାୟ ସଖି, ଯାଏ ନା ମନ
ତବ ସେ ପ୍ରେମ ପାଶେ
ସେ-ଦିନ-ସୁଖ ଆଶେ
ଚାଖିବା ପାଇଁ ଚିହ୍ନା-ପୀୟୂଷ-କଣ;
ତଥାପି ହାୟ ସଖି ଯାଏନା ମନ ।

ଭାବିବ ନାହିଁ ପ୍ରିୟେ ନିଠୁର ମତେ
ଯତନ ଯେବେ କରି
ପାରିଲି ନାହିଁ ଧରି
ପ୍ରଣୟ ତବ ହୃଦେ; କି ଦୋଷ ସତେ !
ଭାବିବ ନାହିଁ ପ୍ରିୟେ ନିଠୁର ମତେ !

ପ୍ରଣୟ ହାଏ ସଖି ଚପଳ ଅତି,
ବତାସି ପରି ଆସେ

ନିଖିଳ-ପ୍ରାଣ ଗ୍ରାସେ
ଫେରିଲା ବେଳେ ଯାଏ ନିଭାଇ ବତି;
ପ୍ରଣୟ ହାୟ ସଖି ଚପଳ ଅତି ।

ତୁମର ଦୀପ-ଶିଖା ଲିଭିଛି ପ୍ରାଣେ,
ବିରାଗେ ପ୍ରାଣ-ବଧୂ
ନ ପିଏ ତବ ମଧୁ
ନିରତ ଆନ ଫୁଲେ ଯିବାରେ ଟାଣେ;
ତୁମର ଦୀପ-ଶିଖା ଲିଭିଛି ପ୍ରାଣେ ।

ଜୀବନେ ଥିଲେ ସଖି, ଖୋଜିବି ଫୁଲ
ପ୍ରଣୟ-ମଧୁ ବିନା
ପରାଣ-ବଧୂ ସିନା
କଠିନ-ଉପବାସେ ହେବ ଆକୁଳ,
ଜୀବନ ଥିଲେ ସଖି ଖୋଜିବି ଫୁଲ ।

ତେବେ ଗୋ ପ୍ରିୟେ ମତେ ଦିଅ ମେଲାଣି
ପାଶୋର-ପ୍ରେମ ରାଇ,
କି ସୁଖ ଲେଉଟାଇ
ଭୁଲିଛି ମୁଁ ତ, ମତେ ଭୁଲ ଗୋ ରାଣି,
ତେବେ ଗୋ ପ୍ରିୟେ ମତେ ଦିଅ ମେଲାଣି ।

## ପ୍ରେମର ପରିମାପ

ପ୍ରେମ କି ଥରେ ଆସି ଥରକେ ହୁଏ ଶେଷ,
ଜଣକୁ ଦେଲେ ସଁପି, ନ ରହେ ଅବଶେଷ ?
ପ୍ରଥମ ଭେଟ ସାଥେ ସରେ କି ସଂଚୟ,
ଆଉ କି ଥରେ ବୁକୁ ନ ହୁଏ ରସମୟ ?

ପଛେ ଯେ ଆସେ ତାର ଆଖିରେ ନୀର ଭରି,
ସେ କି ଗୋ ଦେଖିଯିବ ଶୁଖିଲା ହୃଦ-ଝରି ?
ପ୍ରଥମ ଯଦି ନିଏ ଦ୍ୱିତୀୟ ନେବ କିକି,
ବିଶାଳ, ହୃଦ-ପୁରେ ସାଜେ କି ଏକ ସଖୀ ?

ଏକଇ ଫାଲ୍‌ଗୁନେ ଲକ୍ଷ ଫୁଲ ଫୁଟେ,
ଭ୍ରମର ଗୋଟିକରୁ ଗୋଟିକୁ ଚୁମି ଛୁଟେ,
ଗୋଟିଏ ପ୍ରାଣେ ତାର କୋଟିଏ ସଖୀ-ଡାକ,
କାହାକୁ ଦୂରେ ରଖି ଯିବ ସେ କାହା ପାଖ ?

ସବୁରି ଓଠେ ଓଠେ ଲଗାଏ ମୁଖ ତାର,
ସବୁରି ପ୍ରାଣ-ପୁଟେ ଢାଳଇ ଯା ଦେବାର ।
ଜଣେ କି ଖାଲି ନେବ ଜୀବନ ସୁଖ-ପାନେ,
ଆଉ କି ସବୁ ଯିବେ ମଉନ-ଅପମାନେ ?

× × ×

ଜୀବନ ପଥ ପରେ ଅନେକ ସାଥୀ ଡାକ;
କାହାକୁ ଦୂରେ ଠେଲି ଯିବି ମୁଁ କାହା ପାଖ,
ଜଣକ ଉପହାର ରଖିଲି ବୁକେ ତୋଳି,
କ୍ଷୁଦ୍ର ଅଧର ତା' ସାରାଟି ମୁଖେ ବୋଲି ।

ଆରେକ ଯଦି ଆସେ, ଧରି ତା ଉପହାର,
କି ଦୋଷେ ତାକୁ କହ ରୋଧିବି ମୋ ଦୁଆର ?
ଦୁଆର ପଥ ପରେ ସରଳା ଆଖି-ଲୁହ
ପୋଛିବ କାହା ନାମେ ପାଟପଣତେ କୁହ ?

ସବୁରି ଆଖି-ଲୁହ ସମାନ ନିକି ଭବେ,
ସକଳ ବୁକୁ ଏକା ବେଦନା-ଗଉରବେ ?
କି ଦାବୀ ତେବେ କହ ଏ ବୁକେ ଜଣକର,
ଅନେକ ପାଇଁ ଯଦି ଅଛି ଗୋ ଉପଚାର ?
ଏକଇ ଜୀବନେ ଗୋ ଅନେକ ଡାକ ଆସେ
କାହାକୁ ଫେରାଇବି, ଡାକିବି କାରେ ପାଶେ ?

ପ୍ରଥମା ଦେଖାଦେଲା ପଥର ଧୂଳି ପରେ,
ଧୂଳିର ଗୃହ ପାତୁଁ କିଶୋର ବୟସରେ,
ଧୂଳିର ସଂସାରେ ସେ ଥିଲା ଛୋଟ ରାଣୀ,
ଦେଇଛି ସେହିଦିନୁ ଆସନ ତାର.ଟାଣି
ଏ ବୁକେ । ଯହିଁ ଯାଏ ସେ କହେ 'ମତେ ନିଅ,
ସକଳ ବିତରଣେ ମତେ ମୋ ଭାଗ ଦିଅ ।'

ଦ୍ୱିତୀୟା ଦେଲା ଦେଖା, ସକାଳ-ଯଉବନେ
କୁମାରୀ ଅଭିଜାତା ଗୋଲାପ, ରୂପବନେ ।
ତରୁଣୀ ନ ତାକୁ ମୁଁ ଅର୍ଘ୍ୟ ଉପହାର
ଦେଇ ମାଗିଲି ତାର ମୋ ଘରେ ଅଭିସାର ।
ଆସିଛି ସେ ରୂପସୀ, ତା ପାଇଁ ଆୟୋଜନ
କରିବି ନିକି ପାତି ନ ଦେବି ମୁଁ ଆସନ ?

ତୃତୀୟା ପୁଣି ଅଛି, ନୁହେ ସେ ରୂପବତୀ,
ତଥାପି ରାତି କାଟେ ମୋ ପାଇଁ ଜାଳି ବତି;
ଭିକ୍ଷା କିଛି ନାହିଁ, ଦେବାରେ ସୁଖ ତାର,
ମୋହର ସୁଖ ପାଇଁ ତା ଆଖେ ଲୁହଧାର ।
ଆସନ ମାଗେ ନା ସେ, ତଥାପି ଆୟୋଜନ;
ମୋ ସେବା ନ ମାଗୁଁ ସେ; ମୁଁ ତାର ପରିଜନ ।

କେତେ ଗୋ ଏଇପରି ପ୍ରଣୟ-ଭିଖାରିଣୀ
ଭିକ୍ଷା କରି ମୋର ପ୍ରାଣକୁ ନେଲେ କିଣି ।
ସବୁରି ଦାବୀ ଅଛି, ଫେରି ଗୋ ଯିବେ କିପାଁ,
ପ୍ରଣୟ ବିପଣିରେ ସରେ କି ପ୍ରାଣ-ବିକା ?

ଅତଳ ଜଳଧି ଏ ରହିଛି କୂଳ ଭରି,
ବାହିବ ବୁକୁପରେ ଲକ୍ଷ କୋଟି ତରୀ ।
ଲକ୍ଷ କୋଟି ଜୀବ ପାରିବେ ଅବଗାହି,
କି ଲାଭେ କାରେ କିପାଁ କରିବି ନାହିଁ ନାହିଁ ।

ସଖୀ ସଜନୀ ଯେତେ ମିଳିବେ ମୋ ଦୁଆରେ,
ସକଳେ ହେବେ ତୋଷ ମୋ ପ୍ରୀତି ଉପଚାରେ ।

## ଶଙ୍କିତ ସ୍ନେହ

ଚାରୁ-କେଶୀ ସେଇ ବାଳିକାର ପ୍ରେମ ପାଇଁ
ଏ ଜୀବନେ ମୋର ନ ଦେବାର କିଛି ନାହିଁ ।

ମୋର ସୁଖ ଦେବି ତା'ର ସୁଖ ପାଇଁ ବଳି
ପଦଧୂଳି ତାର ଝାଡ଼ି ଦେବି କରେ ଧରି ।

ସେ ଯଦି କହିବ 'ଯାଅ ତୁମେ ମୋର ପାଖୁ'
ଚାଲିଯିବି ଦୂରେ ତାକୁ ସୁଖୀ କରିବାକୁ ।

ସେ ଯଦି କହିବ 'ଛାଡ଼ି ନାହିଁ ଯିବ ମତେ'
ଏ ଆଖି ରହିବ ଲାଖି ତା'ର ଭାଲପଟେ ।
ସେ ଯଦି କହିବ 'ଏତେ ସେବା କାହିଁ ପାଇଁ',
ମୁଁ କହିବି 'ରାଣି, ଏଥୁ ବଳି ସୁଖ ନାହିଁ' ।

ଏ ନୟନ-ନୀରେ ଆର୍ଦ୍ର ପ୍ରଣୟ ମମ
ଢାଳି ଦେବି ପଦେ ପୂଜାର ପୁଷ୍ପ ସମ ।
ମାନ ଗୌରବ ଯାହା କିଛି ଅଛି ମୋର,
ଢାଳି ଦେବି କହି 'ରାଣି ଗୋ, ଏ ସବୁ ତୋର' ।

ସବୁ ଦେବି ତାରେ । ଥରେ ଥରେ ଭାବେ ଖାଲି
ଏ ଜୀବନ ଯାର ଚରଣେ ମୁଁ ଦେବି ଢାଳି,
ସେ ଯଦି ଖାତିର କରେନା ଏ ମୋର ଦାନ,
କିପରି ସେଦିନ ଲୁଚାଇବି ଅପମାନ ?

## ଭଲପାଅ ?

ଭଲପାଅ ? ଭଲପାଅ ?
କେତେ ପଚାରିଲି ତେବେ ବରବଧୂ
କିପାଇଁ ମଉନ ଥାଅ ?
ଭୁବନ ବୁଲି ମୁଁ ତୁମ ପାଶେ ବସେ ଆସି,
କହିବି ତୁମରେ ଏ ପରାଣ-କଥାରାଶି,
ସେ ସକଳ କଥା ଗୋଟିଏ କଥାରେ ସରେ
ପଚାରି ବସିଲେ କଣ୍ଠ ମୋ ଶୁଖେ,
ନିଖିଳ ମୋ ହିୟା ଥରେ;
ଏକ ସେ ପ୍ରଶ୍ନ-ଭଲପାଅ, ଭଲପାଅ;
ବରବଧୂ ତମେ ନିଷ୍ଠୁର ଏଡ଼େ
କିପାଇଁ ମଉନ ଥାଅ ?

ନାହିଁ କର ଯଦି ମୃତ୍ୟୁ ଖୋଜିବି ସଖି

ନୀଡ଼ ତେଜି ନଭେ ଉଡ଼ିବ ପାଗଳ ପକ୍ଷୀ,
ଜୀବନ-ପାତ୍ର କ୍ଷଣକେ ଶୁଖିବ ରସ,
ଚିରକାଳ ପାଇଁ କ୍ଷୁଦ୍ର କରିବ
ମତେ ଏହି ଅପଯଶ,
ଜାଣିକି ଏ ସବୁ ମଉନେ ତୁମେ ହେ ଥାଅ,
ବରବଧୂ ଏତେ ପଚାରୁଁ ପୂଜାରୀ
ଭଲପାଅ ? ଭଲପାଅ ?

ପୁରୁଷ ମୁଁ ସଖି ସମରରୁ ଆସେ ଫେରି,
ଜୟ ଗୌରବେ ବଜାଇ ବିଜୟ-ଭେରି
ଦେଖିବି ବୋଲି ସେ କଜଳ-ଆଖିରେ ସୁଖ
ମୋ ଗରବେ କ୍ଷଣେ ପୂରିଉଠିବାର
ସେ ଛୋଟ କନକ ମୁଖ;
ସେ ମୁଖ ଦେଖିଲେ ଏ ବୁକେ ଲିଭଇ ଦାହ,
ତେଣୁ ମୁଁ ପଚାରେ ଏତେ ବରବଧୂ
ଭଲପାଅ ? ଭଲପାଅ ?

ଯହିଁ ଯାଏ ମୁହିଁ ସେ ମୁଖ ପଡ଼ଇ ମନେ
ସେ ଆଖି-ଯୁଗଳ ଜଳୁଥାଇ ପ୍ରତି କ୍ଷଣେ;
ଭାବୁଥାଇ ଖାଲି କୁଟୀରେ ଆସିଲି ଛାଡ଼ି
ଯାହାରେ, ସେ କି ମୋ' ଜୟ ଶୁଣିବାକୁ
ରହିଅଛି କାନ ପାରି ?
ତୁମ ଲାଗି ଖାଲି, ତୁମ ଲାଗି ଅବଗାହ
ଜଗତ-ଯୁଦ୍ଧେ; ତେଣୁ ମୁଁ ପଚାରେ
ଭଲପାଅ ? ଭଲପାଅ ?

ବୁଝି ପାରୁ ନାହିଁ ପୂଜାରୀର ଆରାଧନା
କାହିଁକି ହେ ଦେବି ? ପଡ଼-ନାହିଁ କି ହେ ଜଣା,
ଉଷ୍ଣତା ମୋର ପ୍ରଣୟର ବରବଧୂ ?
ଅଯାଚିତେ ତେଣୁ ଢାଳି ପାରୁ ନାହିଁ
ପରାଣୁ ପ୍ରଣୟ-ମଧୁ,
ତେଣୁ କି ମଉନେ ଥାଅ ?

ଯେତେ ପଚାରିଲେ ପ୍ରସ୍ତରମୟୀ,
ଭଲପାଅ ? ଭଲପାଅ ?

ହେ ପାଷାଣି, ତୁମେ ଦେଖି କି ପାରୁଛ ହିୟା,
ଜାଣି କି ପାରୁଛ ପରାଣେ ଜଳେ କି ନିଆଁ ?
ପୁରୁଷ ରକ୍ତ ତରଳ ଅଗ୍ନିପରି
ଜାଳିଦିଏ ମତେ; ବୈଶାଖ ବନେ
କାନନ ଅଗ୍ନି ସରି ।
ପ୍ରଣୟର ବାରିବାହ
ଅଜାଡ଼ି ଶାନ୍ତ କରିବାକୁ ସଖି
ପଚାରଇ 'ଭଲପାଅ' ।

ତୋଳ ଗୋ ଓଢ଼ଣା, ଅନାଅ ନୟନେ ମୋର,
ଗଣ୍ଡେ ମୋ ଲାଗୁ ତୁମର କର୍ଣ୍ଣ-ଦୋଳ ।
ପ୍ରେମ କର ସଖି, କର ପୁଣି ଅଭିମାନ
ହିୟାର ଗୋପନ କଥା ଶୁଣିବାକୁ
କର ମୋତେ ଆହ୍ୱାନ ।
ତେବେ ସିନା ଲିଭେ ଦାହ
କଥା କହ ଏବେ କଥା କହ ସଖି
ପଚାରିଲେ 'ଭଲପାଅ' ।

## ଦୂରେ ରହ

ଦୂରେ ରହ ଦୂରେ ରହ
ସନ୍ନିଧି ତବ ହେ ପ୍ରିୟ କିଶୋରି,
ହୋଇ ଉଠେ ଦୁର୍ବହ ।
ତବ ଯୌବନେ ଜୁଆର ଆସିଛି
ରୂପର ଊର୍ମି ଧରି
ଲୋମେ ଲୋମେ ତବ ସୁଷମା ଜାଗଇ
ଚେତନା ଉଠଇ ଥରି ।
ମଦ୍ୟ ଝରଇ ଅଧରରୁ ଅହରହ,
ଦୂରେ ରହ, ଦୂରେ ରହ ।

ଶରୀର ଗନ୍ଧେ ସୁରା ଅଛି ଲାଗି
ପାଗଳ କରାଏ ମତେ,
ନୟନ ଟାଣୁଛି ବଡ଼ଶୀ ପରି ଗୋ
ନିତ୍ୟ ତୁମରି ପଥେ,
କେ ଜାଣେ କି ହେବ ଭାବି ଲାଗେ ମତେ ଭୟ,
ଦୂରେ ରହ, ଦୂରେ ରହ ।
ରୂପସି, ତୁମର ରୂପ ସାଗରରେ
ଦେବି ଯଦି ଅବଗାହ,
କହି କି ପାରିବ ଶେଷ ହେବ ମୋର
ଜୀବନର ସବୁ ଦାହ ?
ପରିଣାମ ଯେଣୁ ନାହିଁ ପାରେ କରି ଥୟ
ଦୂରେ ରହ, ଦୂରେ ରହ ।
ତଥାପି ରୂପସୀ କିଶୋରୀ ତୁମର
ଉଛୁଳ ଯୌବନେ
ଏକ ଗଣ୍ଡୁଷେ ପାନ କରିବାର
ବାସନା ଜାଗଇ ମନେ,
ରୂପ ତବ ସଖି, ବଡ଼ହିଁ ତୀବ୍ର
ବଡ଼ହିଁ ଦୁର୍ବିଷହ,
ଦୂରେ ରହ, ଦୂରେ ରହ ।
ହାୟରେ ଭୟାଳୁ ନିଜରେ ପଚାର
ଦୂରେ ସେ ରହିବ କାହିଁ ?
ଅନ୍ତରେ ଯାର ନିବାସ ତାର ତ
ଦୂର ବା ନିକଟ ନାହିଁ ।
ତେଣୁ ସେ କିଶୋରୀ ମରମରେ ରହି
ମାରୁଅଛି ଅହରହ,
ବିଫଳ କହିବା ସିନା ତାକୁ ସତେ
'ଦୂରେ ରହ, ଦୂରେ ରହ' ।



## ପ୍ରେମର ଭାଷା

ସକଳେ ଡାକନ୍ତି 'ତମେ' 'ତମେ' ବୋଲି
ସେ 'ତମେ'ର ମୂଲ ନାହିଁ,
ତମେ ଯେବେ ମତେ 'ତମେ' ବୋଲି କହ
ଏତେ ମିଠା କାହିଁ ପାଇଁ ?

ଦୁଇଟି ଅକ୍ଷରେ କିଣି ନେଲା ପରି
କାନକୁ ମୋହର ଲାଗେ,
ଓଠ ତବ ସଖି ଭରିଦିଏ ତାକୁ
କି ଗଭୀର ଅନୁରାଗେ ?

କେତେ ତ ଡାକନ୍ତି ଦିନ ରାତି ସଦା
'ଶୁଣ' 'ଶୁଣ' ବୋଲି ମତେ,
ତମେ ଯେବେ ଆଖି ଠାରି 'ଶୁଣ' କହ
କେ ଜାଣି କି ପ୍ରାଣେ ଘଟେ !

କେତେ ନ ଶୁଣୁଛି ଦିନ ରାତି କହ
'ହଇକିଓ' 'ହଇକିଓ'
ତମେ ଯଦି ପଛୁ ଡାକ 'ହଇକିଓ'
ସୁଧା ଧାରା ଢାଳ କିଓ ?

ହେ ପ୍ରେମ-ଦେବତା ଏ ପ୍ରେମୀ-ଯୁଗଳେ
କରୁଣା ତମର ଥାଉ,
'ତମେ'-'ଶୁଣ' ତଳେ ଦୁଇଟି ଛାତିର
ଡାକ ଦୁହେଁ ଯେହ୍ନେ ପାଉ ।

## ପ୍ରେମ ଓ ଜରା

ତୁମରେ ପ୍ରିୟେ ଗୋ ପୁଣି ଦେଖିବି ଯେ ଦିନ
ଭାବେ ମୁଁ ଥିବ କି ସଖି ଯୌବନ ନବୀନ
ସେ ଦିନର ? ଅମଳିନ ଜବାପୁଷ୍ପ ସମ
ଆରକ୍ତ, କୋମଳ ସେଇ ଓଷ୍ଠ ଅନୁପମ,

ସଦ୍ୟସ୍ଫୁଟ ପୁଷ୍ପସରି ତରୁଣ-ମାଧୁରୀ
ସମସ୍ତ ବଦନ ସ୍ପର୍ଶି, ଅଙ୍ଗେ ଅଙ୍ଗେ ପୂରି
ଆଶ୍ୱିନ ଜୋଛନା ସମ ଲାବଣ୍ୟ ସରସ,
ସୁଗୋଲ ପିଚ୍ଛିଳ ବାହୁ; ଚୁମ୍ବକ-ପରଶ
ଲୋମେ ଲୋମେ; ମୁଗ୍ଧ କରି ତରୁଣ ସୁଷମା
କେଣୁ ନଖ ଯାଏ; ତମେ ଭାବ କି ଉତ୍ତମା
ଏମାନ ଦେଖିବି ପୁଣି ? ଦେଖିବି କି ପୁଣ
ତରୁଣୀର ସେ ହୃଦୟ ପ୍ରଣୟ-ନିପୁଣ ?
ରସବନ୍ତ ଓଷ୍ଠେ ଚାହିଁ ଚାହିଁ କି ଶର୍ବରୀ,
ପୁହାଇ ପାରିବି ମୁହିଁ ସେ ଦିନର ପରି ?
ନାସିକାରେ ପାନ କରି ଚିକୁର ବାସନା,
ଭୁଲି କି ପାରିବି ପୁଣି ଜୀବନ-ଯାତନା ?

ନାହିଁ ପରା ! ହାୟ ସଖି, ଯଉବନ ଗତେ
ପ୍ରେମର ଉଷ୍ଣତା ତୁଟେ, କହୁଛନ୍ତି ମତେ
ଅଭିଜ୍ଞ ଜନେ ଗୋ ନିତି; ତେବେ କହ ସଖି,
ସେ ପ୍ରେମ କେମନ୍ତେ ଆଉ ପାରିବା ଗୋ ରଖି,
ଶୀତ-ରକ୍ତ ପ୍ରୌଢ଼ ଦେହେ ? ପଳିତ କପୋଳେ
ପ୍ରଣୟ ଫୁଟଇ କାହିଁ ? ତେଣୁ କହେ ତୋରେ
ପ୍ରିୟେ ଗୋ ଶୀଥିଳ-ପକ୍ଷ୍ମେ ଚାରି ଚକ୍ଷୁ ପାଇଁ
ଅଭିଳାଷ ନାହିଁ ରହୁ ! ଘନ-ନୀର-ପାୟୀ-
ଚାତକ ଯେସନ ତୁଷ୍ଟ ରହେ ବର୍ଷ ଧରି,
ଦିନକର-ନୀରପାନ-ସ୍ମୃତି ନିଧି କରି
ଚାହିଁ ପୁଣି ବର୍ଷାନ୍ତରେ; ତୁମେ ସେଇପରି
ତୁଷ୍ଟ ରହ ସ୍ମରି ଦିନେ ଚିତ୍ତ ଆତ୍ମାଭରି
ଭୋଗିଲ ଯେ ଅନୁପମ ପ୍ରେମ ଯଉବନେ;
ଆଶା ରଖି ଜନ୍ମାନ୍ତରେ । ପୁଣି ସଂଗୋପନେ
ସହକାର ତଳେ ଦେଖା ହେବ ଗୋ ସୁନ୍ଦରି,
ପୁଣି ସେ ଚଟୁଳ ଓଷ୍ଠ ଥରି ଥରି ଥରି
କହିବ ହୃଦୟ କଥା—'ସତେ ଭଲପାଅ' ?
ପୁଣି ଗୋ ଅନ୍ଧାର-ପଥେ ହୃଦୟର ଦାହ,

ନିଭାଇବା ପାଇଁ ଦୁହେଁ ବାହାରିବା ସଖି,
ଚିକଣ-ଚିକୁରେ ତବ ନାସା ମୋର ରଖି
ପୁଣି ମୁଁ ନିବିଡ଼େ ଦେବି ସଖିରେ ଆଘ୍ରାଣ,
ନୂତନ ପ୍ରଣୟ ପୁଣି ଭୋଗିବ ପରାଣ
ଦୁହିଁଙ୍କର ସେଦିନ ଗୋ । ତେବେ ରୂପଗତା,
ଦୁଃଖ କିବା ? ଜନ୍ମାନ୍ତରେ ପାଇବା ମମତା
ନୂଆ କରି । ଶୁଭ୍ରକେଶେ ଦେଖା କାହିଁପାଇଁ ?
ନୂତନ ପ୍ରଭାତ ଆଶେ ନିଶା ଯାଉ ପାହି ।

## ପ୍ରେମ ଓ ମୃତ୍ୟୁ

ଶୁଣିବ ଯେବେ ପ୍ରିୟା ଗୋ ମୋର
ପ୍ରଣୟୀ ତବ ଜଗତେ ନାହିଁ,
ଆସିବ ମୋର ଭସ୍ମ ପାଶେ
ଦେବ ହେ ତାରେ ଦେହର ଛାଇ ।
ପାରିବ ଯଦି ଭସ୍ମ ପରେ
ପଦ୍ମପାଦ ଚାଲିବ ଧୀରେ,
ଜୀବନ ପୁଣି ଲଭିବି ସଖି,
ନିଶ୍ଚୟ ମୁଁ ମରଣ-ତୀରେ ।

—

# ହେମପୁଷ୍ପ

## ଭୂମିକା

'ହେମଶସ୍ୟ', 'ମାଟିବାଣୀ' ଓ 'ଜୀବନଚିତା' ପ୍ରଭୃତିରେ ମୋର ଖଣ୍ଡକବିତାଗୁଡ଼ିକର ଜାତିବିଭାଗ ହୋଇସାରିଲା ପରେ ଯାହା ଉଦ୍‌ବୃତ୍ତ ରହିଲା, 'ହେମପୁଷ୍ପ' ସେଇଗୁଡ଼ିକର ସଂଗ୍ରହ । ଏଇ କବିତାଗୁଡ଼ିକ ପ୍ରତ୍ୟେକ ଅନ୍ୟଠାରୁ ପ୍ରାୟ ଭିନ୍ନ । ତଥାପି ସେମାନଙ୍କ ଭିତରେ ସାମ୍ୟର ଏହି ସୂକ୍ଷ୍ମ ସଂଯୋଗ-ସୂତ୍ର ଅଛି ଯେ ଇନ୍ଦ୍ରିୟଭୋଗ୍ୟ ଏହି ବାହାର ବିଶ୍ୱର ଦର୍ଶନ ଓ ସ୍ପର୍ଶ ଯେଉଁ ବୟସରେ ଚିତ୍ତକୁ ନାନା ଭାବରେ ବିକ୍ଷୋଭିତ କରେ, ସେଗୁଡ଼ିକରେ ସେହି ରୂପ-ବୁଭୁକ୍ଷୁ ଯୌବନ ବୟସର ଜନନ-ଚିହ୍ନ ସୁସ୍ପଷ୍ଟ । ୧୯୪୭ରେ ଯେଉଁ 'ହେମପୁଷ୍ପ' ପୁସ୍ତକ ପ୍ରକାଶ ପାଇଥିଲା, ଏ 'ହେମପୁଷ୍ପ' ତାହାର ପରବର୍ତ୍ତୀ ସଂସ୍କରଣ ନୁହେଁ, ଏହା ଏକ ନୂତନ ସଂସ୍କରଣ । ଏଥିରେ ପୂର୍ବପୁସ୍ତକର ଅନେକ କବିତା ଅନ୍ୟ ପୁସ୍ତକକୁ ଚାଲିଯାଇଛି ଏବଂ କେତେକ ନୂତନ କବିତା ସେମାନଙ୍କର ସ୍ଥାନ ଅଧିକାର କରିଛନ୍ତି । ଏହି 'ନୂତନ' କବିତାଗୁଡ଼ିକରୁ ଅଧିକାଂଶର ବୟସ ପୁରାତନ ।

**ଲେଖକ**

# ରୂପ-ଦେବତା

(୧)

ଶିଶିର ଅବଶେଷେ ଫଗୁଣେ ରାଣୀ-ବେଶେ
କେ ଦେଲା ଧରଣୀକି ପଠାଇ,
କି ମଧୁ-ଇଙ୍ଗିତେ ଜଡ଼ ଧରଣୀ ପୀଠେ
କୁସୁମ-କଢ଼ି-ଦଳ ଫୁଟାଇ ।
କାହାର ପଦ ବାଜି ଫୁଟିଲା ଫୁଲ ଆଜି
ବିକଶେ କିଶଳୟ କାନନେ,
କୁହେଳି-ଧୂମ କାଢ଼ି ନୀଳିମା ଦେଲା ବାଢ଼ି
କର କାହାର ନଭ-ଆନନେ ।
ରସାଳ-ମଞ୍ଜରୀ ଚୁମଇ ଗୁଞ୍ଜରି
ମଧୁପ, ମଧୁପାନ ଅଧୀର,
ନିବିଡ଼-ପଲ୍ଲବେ ଲୁଚି ଲଳିତ ରବେ
ମୁଖର ବନ କରେ କୋକିଳ ।
ଥରଇ ଘାସେ ଘାସେ ପ୍ରଣୟ କାର ଆଶେ
ଧୂଳିରୁ ଉତ୍ସବ ଉଠଇ,
ଜୀବନେ ମତ୍ତତା ହୃଦୟେ ମଧୁ-ବ୍ୟଥା
ମାନସ ଆନ-ଆଶେ ଛୁଟଇ ।
ଆକାଶ ମୁଖରିତ ବିହଗ ଗୀତେ, ଶୀତ-
ମଳୟେ ମାଦକିତ ଆଳୟ,
ମତ୍ତ ଦେହ ମନ ମତ୍ତ ଏ ଭୁବନ
ଚିତ୍ତେ ଉଦ୍‌ଥିତ ପ୍ରଳୟ ।
କେ ଦେଲା ଜଗତରେ ଜୀବନ-ମନ୍ତ୍ରରେ
ରେଣୁରେ ତେଣୁ ରୂପ ଫୁଟିଲା,
କିଏ ସେ ରୂପ-ଦାନୀ କେଉଁ ଭୂପରେ ମାନି
ଭୁବନ-ଭବନରେ ଉଠିଲା ।

ତା ତୂଳି-ଗାର ଖାଇ ରୂପ ଏ ଥିଲା କାହିଁ
ଧରଣୀ ଜଡ଼ ଦେହେ ହସିଲା,
ପଉଷ ତୁଷାରିତ- ପ୍ରାଣେ ଅପରିଚିତ-
ଅନଳ ଧୀରେ ଧୀରେ ପଶିଲା ।
ତରୁଣୀ ପଦତଳ ଶୋଣିତ-ଟଳ-ମଳ,
କପୋଳେ ଫୁଟେ ଆଜି ପଳାଶ,
ଦକ୍ଷିଣ ବାତାୟନ ମେଲି କରୁଁ ଶୟନ
ହୃଦୟେ ପାଏ କି ସେ ପରାସ ।
ଦେହରେ ଦେଲା ଛବି ସେ ରୂପ-ଦାନୀ କବି,
ହୃଦୟେ, ମାଦକିନୀ ବେଦନା,
ଅଳସ, ଶୋଣିତରେ, ତନ୍ଦ୍ରା, ଚିତ୍ତରେ
ସକଳ ପ୍ରାଣେ ନବ-ଯାଚନା ।
ଗଗନେ, ଜଳେ, ଥଳେ, ଲୁଚି ସେ କାହିଁ ଚଳେ
ଦେଖେ ତ ନାହିଁ କାହିଁ ନୟନ,
ତାର ବିରାଟ ରଥ ଚଳଇ କେଉଁ ପଥ ?
ନିଖିଳ ଭବ କି ତା ଅୟନ ?

(୨)

ରୂପର ଦେବତା ସେ ସୃଜନ-ସୁଖ-ଆଶେ
ଅବନୀ-ବନିତାରେ ସାଜଇ;
ଦେହରେ ରୂପ ରଚି ମଧୁ-ସୁଷମା ଖଚି
ତହିଁ ଅ-ଦେହ ଦେବ ରାଜଇ ।
ମଦନ ନାମ ତାର, ତାହାରି ତୂଳି-ଗାର
କୁସୁମ ଓଠେ ହାସ ଶିଖାଏ,
ଭରିଣ ରୂପ ରସେ ପ୍ରୀତି-ରଭସ ବଶେ
ତରୁଣୀ-ବୁକୁ ସେହି ବିକାଏ ।
କେକାର ପକ୍ଷେ ସେ ବର୍ଣ୍ଣ-ବିଭା ଲେଶେ
ଜ୍ୟୋତ୍ସ୍ନା ଏଡ଼େ ମଧୁ କରଇ,
କୋକିଳ କଣ୍ଠରେ ତା ଯୋଗୁଁ ସୁଧା ଝରେ
ତା ଯୋଗୁଁ ଲତା ଫୁଲ ଧରଇ ।
ବିଜୁଳି ପଛ ଧରି ଜଳଦ, ଧ୍ୱନି କରି
ନିଖିଳ ନଭ କିପାଁ ଖୋଜଇ ?

ନଦୀର ନୀଳ-ବେଣୀ ନିଖିଳ-ଦେହ ଘେନି
ସାଗର କୋଳେ କିପାଁ ହଜଇ ?
ତପନ ତାପ ପାଇଁ କୁସୁମ ଚାହିଁଥାଏ
ଲଭିଲେ, ହସି ଉଠେ କିପରି ?
କୁମୁଦ, କୌମୁଦୀ ନପାଇ ଯାଏ ମୁଦି,
କମଳ, ରବି-କରେ ସେପରି ।
ଏ ସବୁ କେ କରାଏ ? ଏ ମାୟା କେ ଲଗାଏ ?
ବସ୍ତୁ ବସ୍ତୁରେ ପ୍ରଣୟ ?
ପ୍ରଣୟ ଲାଗି ରୂପ ନିଖିଳେ ଅପରୂପ
ସରଜୁଅଛି ଚିର ସମୟ ?
ରୂପର ଦେବତା ସେ ଭୁବନେ ପ୍ରୀତି-ପାଶେ
ଭିଡ଼ିବା ପାଇଁ ବୁଲେ ଭୁବନେ,
ତେଣୁ ରୂପର ମେଳା ଭୁବନେ କରେ ଖେଳା
ତେଣୁ ପ୍ରଣୟ ଲୀଳା ଜୀବନେ ।

(୩)

ମଦନ ଦେବରାଜ ଜଗତେ ବିଜେ ଆଜ
କୁସୁମ-ଧନୁ ଥୋଇ ଉରସେ,
ମଳୟ ରଥ ତାର ଚଳଇ ଅନିବାର,
ଧରଣୀ ଥରେ ତାର ପରଶେ ।
ଆକାଶ ଭରି ଉଡ଼େ ତାହାର ରଥ-ଚୂଡ଼େ
ନୀଳ-କେତନ; ତାରା, ଅବନୀ,
ତା ରଥ-ଚକ-ଧୂଳି ଶରୀରେ ନେଇ ତୋଳି
ହୋଇଛି ଆଜି ସୁନା-ବରଣୀ ।
କପୋତ କପୋତୀରେ ଡାକୁଛି ବନ-ତୀରେ
ପୂଜିବା ଲାଗି ଏଇ ଦେବତା,
ହରିଣ-ଅଙ୍ଗନା ନାହିଁ କରୁଛି ମନା
ହରିଣ ତରୁଣର ମମତା ।
କପାଟ କାହିଁ ମେଲି ଫିଟାଇ କାଞ୍ଚୁଲି
ପ୍ରଣୟ-ତାପେ ନବ କୁମାରୀ,
ଡାକେ ସେ ଦେବତାରେ ନଇଁ ଆପଣା ଭାରେ
ହେ ମାର, ରଖ ମୋତେ ନ ମାରି ।

ମନୋଜ ସେ ଦେବତା ବୁଝେ ମରମ-ବ୍ୟଥା
ଏକକୁ ଆନ ସାଥେ ମିଳାଏ,
ତା ଯୋଗୁ ଏ ଜଗତ ମଧୁର ଅବିରତ
ମରତେ ସୃଜନ ସେ କରାଏ ।
ସକଳ ଋତୁ ଧରି ଆସେ ସେ ଅଭିସାରି
ରାଜାର ବେଶେ ଆସେ ଫଗୁଣେ,
ତା ଆଗମନେ ତେଣୁ ଢିଅଁଇ ପଥ-ରେଣୁ
ଜଡ଼େ ଜୀବନ ଫୁଟେ ତା ଗୁଣେ ।
ସେଇ ସେ ରୂପରାଜ ଜଗତେ ବିଜେ ଆଜ
କୁସୁମ ଚାପେ ଗୁଣ ବସାଇ,
ଅବନୀ ଅବଳାର କରେଣ ଫୁଲହାର
ଘରେଣ ନେବ ତାକୁ ରସାଇ ।
ତାହାର ବନ୍ଦନା ତରୁଣୀ ଅଙ୍ଗନା
କରଇ ସ୍ମିତ ହସି ଗୋପନେ,
ତରୁଣ ଦଳ ଦଳ ଅବିରେ ଛଳ ଛଳ
ତା ପୂଜା ଲାଗି କଲେ ଭୁବନେ ।

## ଇରାନୀ-କିଶୋରୀ

ଇରାନୀ କିଶୋରି !
ଗୁଲ୍ ବଦନ ତବ ନ ହୁଏ ପାସୋରି ।
ଭୁଲିବି କିପରି ମୁଁ; ରୂପ କି ହୁଏ ଭୁଲି,
ଅଲିଭା ରେଖା ରଚେ ବୁକୁରେ ତାର ତୂଳି
ତା ଭାଷା; ସବୁ ଭାଷୁଁ
ବଳଇ । ମିଶୁ ମିଶୁ
ନୟନ, ବୁକେ ଯାଏ ପରଶି
ଜାଣ କି ତା ଇରାନୀ ରୂପସି ?
ଯୁଗ୍ମ ବେଣୀ ଶୋଭା କନକ ଗଳା ବାହି
ମରଣ ନିକେ ସହି ରହିବ କ୍ଷଣେ ଚାହିଁ,
ଦ୍ରାକ୍ଷା-ସୁକୋମଳ—
ଅଧର, ଟଳମଳ—

ବୟସ ବିଷେ, ଯାର ପାନ ଗୋ,
ପୀୟୂଷୁଁ ସ୍ୱାଦୁ, ମଧୁ ଘ୍ରାଣ ଗୋ ।
ସେ ବିଷ ହାୟ ସଖି, କା' ଓଠେ ଦେଲ ଢାଳି
ଆଶିଷ ସମ ଭୁଜ କଣ୍ଠେ କା'ର ଚାଳି ?
କବରୀ ଗୁରୁ ବାସେ
ବୁଡ଼ାଇ ମଧୁ-ରାସେ
ପ୍ରଣୟୀ-ବୁକୁ ଦେଲ ମଥାଇ
ସେ ବିଷ-ପାନେ ଚେତା କି ଥାଇ ?

ତୁମରି ସ୍ମୃତି ପଥେ ଭାବନା ମୋର ଚଳେ
ଗୁଲ୍‌ର-ଉପବନେ ପ୍ରଳାପ ଯହିଁ କରେ,
ମୁଖରା ବୁଲ୍ ବୁଲ୍
ଝରଣା କୁଲ୍ କୁଲ୍
ଦ୍ରାକ୍ଷା-ଛାୟା ଭେଦି ବହଇ,
ଜ୍ୟୋତ୍ସ୍ନା ପୁଣି ହୃଦ ଦହଇ ।

ସେ ମଧୁ-ଉପବନେ ଜ୍ୟୋତ୍ସ୍ନା ରାତେ ବସି
ରସିକ ଯୁବା ଡାକେ ପ୍ରିୟାରେ ପରିହାସି,
ଗୁଲ୍ ମଧୁର ଦଳେ
କବରୀ ଭରି, କରେ
ସିରାଜି ଧରି ଆସେ ପ୍ରେୟସୀ,
ପୀୟୂଷ ଗତିପଥେ ବରଷି ।

ପ୍ରଣୟ-ସଙ୍ଗୀତ ରସିକ ଯୁବା ଗାଏ
ରୂପସୀ ସଖୀ ଆସି ସିରାଜି ଢାଳି ଯାଏ,
ଧରଣୀ ରହେ ଦୂରେ;
ଜୀବନ-ନଦୀ କୂଳେ
ସ୍ୱପନ-ପୁରୀ ହୁଏ ରଚନା,
ଜୀବନେ ନାହିଁ ଯହିଁ ଶୋଚନା ।
ଏପରି ଉପବନେ ତୁମେ କି ଆଜି ସଖି,
ପ୍ରଣୟୀ ଛାତି ପରେ ମୁଗ୍‌ଧ ମୁଖ ରଖି,
ରୁବାଇୟାତ୍ ଶୁଣି
ପ୍ରିୟାକୁ ପୁଣି ପୁଣି

ଗେଲେଇ କହ—''କର ଟୀକା ହେ,
ବୁଝି ମୁଁ ନାହିଁ ପାରେ, ଶିଖା ହେ ।''

ନଗରୁ ନଗରେ ଗୋ ମଳୟ ସମ ବହି
ବେପଥୁ କେତେ ବୁକେ ସୃଜିଛ ଜାଣ ସହି ?
କେତେ ଯେ ଆଖି ଆଶା
କେତେ ଯେ ବୁକୁ ଭାଷା,
ବୁଝିକି ପାରିଛ ଗୋ ବାଳିକା,
ଲକ୍ଷ ହୃଦ ମନୋନାୟିକା ?

ଅଜଣା ଦୂରେ ତମେ, ମୁହିଁ ଅପରିଚିତ
ପୂଜାରୀ ସମ ବସି ରଚଇ ସ୍ତୁତି ଗୀତ ।
ଦେଖିଛି ଯେ ନୟନେ
ସେ ରୂପ, ସେ ବଦନେ
ପାଲଟିଥିବ କବି ନିକର
ଗାଇ ସେ ଶୋଭା ମୁଖଟିକର !

ପୂଜାରୀ ମାଗେ ନାହିଁ ଦେବତା ପରିଚୟ,
କେବଳ ଆରାଧନେ ତା ସୁଖ ସଞ୍ଚୟ,
ତେଣୁ ଅପରିଚିତ
ବିଦେଶୀ ଗାଏ ଗୀତ,
ତୋ ଲାଗି ବିଦେଶିନୀ କିଶୋରୀ,
ସେରୂପ ନିକି ହୁଏ ପାସୋରି ?

ନିରତ ଅୟି ସଖି ! ହୃଦୟେ ଅଛ ଜାଗି,
ସେ ବେଣୀ-ହଲା ଗତି ହୃଦୟେ ଅଛି ଲାଗି
କନକ ବାହୁଶିରୀ
ଏ ବୁକେ ଅଛି ଭିଡ଼ି,
ତରଳ କୁବଳୟ-ନୟନ
ବୁକେ ସପନ କରେ ଚୟନ ।

କାହିଁ ଗୋ ଗଲ ସଖି ! ଆଉ ତ ନାହିଁ ଦେଖି,
ଜାଣିଲି ନାହିଁ କିଏ ସେ ଓଠେ ବୋକ ଲେଖି
ଭାବିଲା ଏ ଜୀବନ
ଖାଲି ଏକ ସ୍ୱପନ,

ଭୁଲିଲା ଏଥି ଯେତେ ଶୋକ ଗୋ,
ଅଧରେ ଲେଖି ଥରେ ବୋକ ଗୋ ।

କାହାର ହେଲେ ଅବା କରମଶୀଳା ବଧୂ,
ସମୟ କଟେ ଗୁରୁ ଶ୍ୱଶୁର ବୋଲ ସାଧୁଁ,
ଘରଣୀପଣ ନିକି
କଲାଣି ଟିକି ଟିକି
ସେ କାଳ ସେ କିଶୋରୀ ଲୀଳା ଗୋ,
ଭୁଲିଛ ପର-ବୁକୁ-ଚିରା ଗୋ ।

ଜୀବନେ ଯଦି କେବେ ଦେଖା ବା ହୁଏ ପୁଣି,
ଦେଖିବି ନାହିଁ ମୁଁ ତ ସେ ତରଳ-ତରୁଣୀ,
ଶିଥିଳ ଚମ ପରେ
ଜରତା ନାଟ କରେ,
ନୟନେ ମରଣର ଛାୟା ଗୋ !
ବେପଥୁ ଧରିଥିବ କାୟା ଗୋ !

ସେ ଛବି କବି ବୁକେ ଆଣିବ ବାଧା ଗୁରୁ,
ଜରାରେ ପ୍ରାଣ ତାର ଜୁହାରେ ନିତି ଦୂରୁ,
ତେଣୁ ଗୋ ବିଦେଶିନି,
ଘନ-ନୀଳ-କେଶିନି,
ଧବଳ-କେଶେ ଦେଖା ପାଇଁ ମୋ
ତିଳେ ହେଁ ଅଭିଳାଷ ନାହିଁ ଗୋ !

ମୋ ପାଇଁ ଥାଅ ଚିର କିଶୋରୀ ସୁତରଳା,
ଅଧରେ ହଳାହଳ ନୟନେ ବାଣ-ଛଡ଼ା,
ଚରଣେ ଚିର ନାଟ
ମରମେ ପ୍ରୀତି-ହାଟ,
ଅଙ୍ଗ ପ୍ରତି ଲୋମ କଟାରି
ହେ ସଖି ! ମୁଁ ସେ ରୂପ-ଭିଖାରି !

---

[* ଇରାନୀମାନେ ଭ୍ରାମ୍ୟମାଣ ଜାତି । ଲେଖକର ଖୋର୍ଦ୍ଧା ଅଧ୍ୟୟନ କାଳରେ ଏଇପରି ଏକ ଇରାନୀ ଦଳରେ ଗୋଟିଏ ଅସାଧାରଣ ସୁନ୍ଦରୀ ବାଳିକା ଦେଖିବା ତା ଭାଗ୍ୟରେ ଘଟିଥିଲା । ଏଇ କବିତାଟି ସେଇ ବିଦେଶିନୀ ଉଦ୍ଦେଶ୍ୟରେ ଲିଖିତ ।]

# ବିରହୀ ଘନ

କି ହଜିଛି ହେ ବାରିଦ ! କେଉଁ ରତ୍ନ ପାଇବାର ଆଶେ,
ଚିର ତବ ଅନ୍ୱେଷଣ ଏ ନଭସେ ଆକୁଳ ନିଶ୍ୱାସେ,
କ୍ଷୁଣ୍ଣ ପ୍ରାଣେ ଖୋଜି ବୁଲ ଆକାଶର ବିରାଟ ପ୍ରାନ୍ତରେ
କି ବ୍ୟଥା କି ରୁଦ୍ଧ ଦାହ ଅଛି ଘନ ତୁମରି ଅନ୍ତରେ,
ଯୁଗଯୁଗାନ୍ତରୁ ଖୋଜି ଉପଶାନ୍ତି ପାଇନାହିଁ ତାର,
ବ୍ୟଥା ଅନିବାର ।
ବିରାଟ ଗମ୍ଭୀର ସଦା ବଦନର ଛବି ତବ ଘନ !
ନିରାଟ ବିଷାଦ-ରେଖା କପାଳରେ ହୋଇଛି ଲିଖନ ।
ଚିନ୍ତାର କାଳିମା ଛାୟା ଗଣ୍ଡେ ତବ ହୋଇଛି ଅଙ୍କିତ
କେତେ ଯୁଗ ତିକ୍ତ-ସ୍ମୃତି ହୃଦେ ଯେହ୍ନେ ହୋଇଛି ସଂଚିତ ।
ସେ ସ୍ମୃତିର କଷାଘାତେ ପ୍ରାଣ ଯେବେ ହୁଅଇ ବିକଳ
ରୋଦ ଅବିରଳ !
କିଏ ସେ ଲାବଣ୍ୟବତୀ ପୁଣ୍ୟବତୀ ଭାଗ୍ୟବତୀ ବାଳା;
ଯାହାପାଇଁ ହୃଦେ ଘନ, ଧରିଅଛ ଏ ବରଣ-ମାଳା !
ନୟନର ତପ୍ତ ଲୁହେ ଆର୍ଦ୍ର କରି ଆକାଶ ଅବନୀ
ଯୁଗ ଯୁଗୁଁ ବୁଲୁଥାଅ କି ବ୍ୟାକୁଳେ ସମସ୍ତ ଧରଣୀ ।
ମନ୍ଦ୍ରନାଦେ ଡାକୁଥାଅ, ଅନ୍ତରୀକ୍ଷ ଯାଉଥାଏ ଭରି
କାହା ନାମ ଧରି !
କେମନ୍ତେ ସେ ଅଭାଗିନୀ ହୃଦହୀନା କଠିନା-ପାଷାଣୀ !
କେଉଁଠାରେ ଅଛି ରହି ହୃଦଫଟା ଏ ଡାକ ନ ମାନି,
କେଉଁ ଆଶେ ଅଛି ସେ'ବା ପ୍ରାଣଭରା ଏ ପ୍ରେମ ତିଆଗି
ବକ୍ଷଭରା ଏ ସେନେହ ଫିଙ୍ଗି ଅବା ଦେଇଛି କି ଲାଗି;
ଏ ଡାକେ ସେ ନାରୀ ରକ୍ତ ଉତ୍ତରଳେ ଉଠେ ନିକି ଫୁଟି
ବିରହରେ ଲୁଟି !
ବିଶ୍ୱେ ତୁମେ ବାରିବାହ ପ୍ରଣୟୀର ଚିର ଭାଲଟୀକା,
ତେଣୁ କୁଞ୍ଜେ ତବ ଆଶେ ଫୁଟିଉଠେ କିଶୋରୀ ଯୁଥିକା ।
ବନ୍ଧୁ ବୋଲି ନାଚି ଉଠେ ଡାଳେ ଡାଳେ ବିରହୀ ବରହୀ
ଯୁବକ ଯୁବତୀ ଗଣେ ବିଚ୍ଛେଦର ଲୋତକ ଗଡ଼ଇ,

ବିଶ୍ୱର ସକଳ ହିୟା କାଟି ହୁଏ ପୁଷ୍ପଶର-ଧାରେ
ତବ ଅଭିସାରେ ।
ତୁମ ପରି ବନ୍ଧୁ ଘନ ଏ ଦୀନର ହଜିଛି ରତନ
ପ୍ରଣୟର ତାରା ଗୋଟି ହୃଦାକାଶୁ ଲଭିଛି ପତନ,
ଜୀବନ ଲାଗୁଛି ଶୂନ୍ୟ, କ୍ଷୁଦ୍ର ପ୍ରାଣ ହାହାକାରମୟ
ପଲକେ ପଲକେ ଛିଣ୍ଡି ବେଦନାରେ ପଡ଼େ ମୋ ହୃଦୟ
ଆସ ସମ-ଦଶ-ବନ୍ଧୁ ମିଳାଇବା ଉଭୟେ ଲୋତକ
ଶାନ୍ତି ବିସେଚକ ।

## ପ୍ରାବୃଟ ସମ୍ଭାଷଣ

(୧)

ବିରହୀ ଯକ୍ଷର ବାର୍ତ୍ତା
ବକ୍ଷ ପରେ ଆଙ୍କିରଖି ଘନ
ଆସିଛ କି ପକ୍ଷେ ତବ
ସାଉଁଳାଇ ଭୂଧର ଗଗନ !
ଯିବ ସେ ଅଳକା-ପୁରେ;
କାନ୍ଦେ ଯହିଁ ଯକ୍ଷ ବିରହିଣୀ
ଗାଲେ ହାତ, ଭାଲେ ସ୍ୱେଦ,
ବୁକେ ତିକ୍ତ ବିଳାପ ରାଗିଣୀ ?
କର୍ପୂର-ଚନ୍ଦନ ବୋଳେ,
ଯାଉନି ତା ବେଦନା ଅମାପ,
ତୁମର ଶୀକର ଘନ,
ମୁଞ୍ଜିକି ହେ ପାରିବ ସେ ତାପ ?

(୨)

ଏତେ ଦିନ ଥିଲ କାହିଁ ?
ସିନ୍ଧୁ ପାରେ କେଉଁ ସାଗରିକା
ମେଲିଲା କି ବେଳାତଟେ—
ଶୈଳେ ବନେ ପ୍ରୀତି ମରୀଚିକା ?
ସେ ଦୂର ବେଳାରେ ଘନ,
ତାହା ସଙ୍ଗେ ଖେଳି ଲୁଚକାଳି

କଟାଇଲ ପଞ୍ଚ ଋତୁ
ସିକ୍ତ କରି ସ୍ୱର୍ଣ୍ଣ-ସିନ୍ଧୁ ବାଲି ?
ଦେଲା ନିକି ପ୍ରତିଦାନ
ଘନ ତବ ମଧୁ ସୋହାଗର,
ମେଲାଣି କି ନେଇ ତେଣୁ
ଫେରିଅଛ କୋପ ଜରଜର ?

(୩)

ସାଗର ଏ ପାରେ କିନ୍ତୁ
ପୀରତିର ବସିଛି ପସରା
ରାଗର ବେପାରେ ଏଥି
ନାହିଁ ଘନ ନିକଷ-ଘସରା,
ଅଯାଚିତ କୋଳାକୋଳି
ଅଯାଚିତ ପୀରତି ସୁଆଗ,
ଭୃଙ୍ଗ ମୁଖେ ଆପେ ଆପେ
ପୁଷ୍ପ ଦିଏ ଚଖାଇ ପରାଗ ।
ଏଥି ଆଉ ମାନ କିପାଁ ?
ଗୁରୁଧାନ ଆକାଶର ତଳେ
ଏଥି ପରା କୋଟି ହିୟା
ପ୍ରେମଦାନେ କାନ୍ଦଇ ବିକଳେ ।
ବିରହୀ ତୁମ୍ଭର ଦେଖ
ଗିରିକୁଞ୍ଜେ ଉଚ୍ଚେ ରଚେ କେକା,
ଗୃହିଣୀରେ ଘରେ ରଖି
ପରବାସୀ, ନାହିଁ ଯାଏ ଏକା;
ଧରଣୀ-ପୁଲକ ବତ
ନୀପଜାଳ ଉଠୁଅଛି ଫୁଟି,
ଯୁଈ କିଆ ମଲ୍ଲି ଫୁଲୁ
ସଉରଭ ଭାସିଯାଏ ତୁଟି ।
ଆସ ସଖା, ଆଷାଢ଼ର
ଆଦ୍ୟ ଦିନେ କରେ ସମ୍ଭାଷଣ,
ଧରଣୀ କାମିନୀ ତାର
ଥୋଇଅଛି ପ୍ରୀତି-ଆୟୋଜନ ।

—

# ଯଥାସ୍ଥାନ

## [ସନ୍ତାନ ପ୍ରସବ ପୂର୍ବେ ]

### ତରୁଣ

କୁଟୀର ଆବୋରି ସଖି ! ରହିଥାଅ ଏଥି
ଯିବି ମୁହିଁ ଦୂର ବନେ, ଆଣ ମୋ କୁଠାର
ଆଣ ତୀରପୂର୍ଣ୍ଣ ତୂଣୀ, ଶିଥିଳ ଧନୁକ,
ସ୍କନ୍ଧେ ବହି ଯିବି ଦୂରେ—ନିବିଡ଼ କାନନେ
ଘଞ୍ଚ ବନସ୍ପତି ଦେହେ ଘଷାଇ ଏ ତନୁ
ପ୍ରସ୍ତର-କଠିନ ପଥେ ଚାଳି ଏ ଚରଣ
ଯୁଝି ବ୍ୟାଘ୍ର ସିଂହ ସାଥେ ଆଣିବି ସୁତନୁ
ଦୁହିଁଙ୍କର ଅନ୍ନ ଖୋଜି, ତୁମେ ରହ ଏଥି
ପ୍ରତିକ୍ଷଣ ମୋ ସରଣୀ ଚାହିଁ ଗୋ ସୁନ୍ଦରି !

### ତରୁଣୀ

ରହିବି ମୁଁ ଏକା ଏଥି ? ସାଥେ ନିଅ ମତେ ।
ତୁମେ ଯାଅ ଦୂରେ ଚାଲି, ଏ କୁଟୀରେ ବସି
ଜାଣ କି କେମନ୍ତେ କଟେ ଦୀର୍ଘ ଦିନ ମୋର ?
କେତକୀର ବୃତିଘେରା ଏ ଅଙ୍ଗନ ଭୂଇଁ
ପ୍ରହରକେ ପଞ୍ଚ ବାର ଭ୍ରମେ ଆନମନେ,
ଥର ଥର ଗଣି ମନେ କେତକୀ କୋରକ
ପୁଣି ଭୁଲି ପୁଣି ଗଣେ, ପୁଣି ଆସେ ଭ୍ରମି
ତଥାପି ନ ହୁଏ ସଂଖ୍ୟା । ଦୂର ପଥେ ଚାହିଁ
ଶୂନ୍ୟମନେ ଘଡ଼ି ଘଡ଼ି ଦ୍ୱାରେ ରହେ ବସି,
ଦେଖୁଥାଏଁ ଖାଲି ନଭେ ଧବଳ ବଳାକା
ଉଠିବାର ଦୂର ସରେ । ମଧ୍ୟାହ୍ନେ ତପନ
ତାପିଲେ କିରଣ-ଜାଳେ ଗଗନ ଧରଣୀ,
ମାତୃହୀନ ପକ୍ଷୀ-ଶିଶୁ ପରି ମୁଁ ହେ ନାଥ,
ଶ୍ରାନ୍ତ, କ୍ଳାନ୍ତ, ଅବସନ୍ନ; ଚମ୍ପକର ଛାୟେ
ବସି ବସି କାଟେ ନଖେ ଧରଣୀରେ ରେଖା ।
ଉପରେ ଡାକଇ କାକ, ଦୂର ପ୍ରେୟସୀରେ
ଆସି ଭୋଗିବାକୁ ପାଶେ ଚମ୍ପକର ଛାୟା,

ତଳେ କରେ ସୁଖ-କ୍ରୀଡ଼ା ଚଞ୍ଚଳ ଗୁଣ୍ଡୁଚି
ତାପ-କ୍ଳାନ୍ତା ପ୍ରେୟସୀରେ ଅଣାଇ ପ୍ରମାଦ ।
ବଡ଼ କଷ୍ଟ ଏ ଯେ ନାଥ, ସାରା ଦିନ ଧରି
ଏକାକୀ ବଞ୍ଚିବା ଏଥି ଆପଣାର ଛାୟେ
ଚମକ ଆସଇ ମନେ ନିଜ ପଦ-ପାତେ
ଚମକି ଫେରି ମୁଁ ଚାହେଁ ଆଗପଛ କରି
ଦ୍ୱିତୀୟର ଛାୟା ଭାଳି । ନିଅ ମତେ ସାଥେ,
ସୁଖ ନାହିଁ ଲାଗେ ମତେ ଅଳସ-ଜୀବନ
ତୁମରି ସଙ୍ଗତେ ଯିବି ପଦ ଅନୁସରି ।

ତରୁଣ

ସାଥେ ଯିବ ତୁମେ ମୋର, କିବା କଥା କହ ?
କଙ୍କର-ବନ୍ଧୁର ପଥେ ତୁଷାର ଧବଳ
ଚରଣ ଯୁଗଳ ବାଜି ଭଜିବ ରକ୍ତିମା ।
ବନ ଗୁଳ୍ମ କଣ୍ଟାଘାତେ କୋମଳାଙ୍ଗୁ ତବ
ଫୁଟିବ ଶୋଣିତ ଧାରା । ପଥଶ୍ରମ ସ୍ୱେଦେ
ଶୀତପଦ୍ମ-ହୀନଶୋଭା ଧରିବ ଏ ମୁଖ,
ଅଂଶୁମାଳୀ-ତାପେ ପୁଣି ତପ୍ତ ହେଲେ ଧରା
ଲାଗିବ ଏ ବନଭୂମି ତପ୍ତ ଲୌହ ସମ
ସେ ପେଲବ ପଦଯୁଗେ । ଯିବ ସାଥେ ମୋର ?
ନାରୀ ତୁମେ, ପୁରୁଷ ମୁଁ, ଭୁଲନା ଏ କଥା ।

ତରୁଣୀ

ସେ କି କଥା ହେ ସୁନ୍ଦର ! ନାରୀ ବୋଲି କିହେ
ସକଳ ଜୀବନ ମୋର କୁଟୀର ପ୍ରାଙ୍ଗଣେ
ବଦ୍ଧଜଳ ସମ ବହି ଭେଟିବ ମରଣ ?
ଆକାଶ ରହିବ ଉଚ୍ଚେ ଚନ୍ଦ୍ରତାରା ଧରି,
ଶୀତକାନ୍ତ ଛାୟା ଘେନି ରହିବ କାନନ,
ହଂସିନୀକୂଜିତ ଦୂର ବନତରଙ୍ଗିଣୀ
ବହିବ ଆପଣା ପଥେ, ଏଥି ରହି ଏକା
ନିର୍ଜନ, ନୀରବ, କ୍ଷୁଦ୍ର କୁଟୀର ଆବୋରି
ଅସହାୟ ସମ ମୁହିଁ କାଟିବି ଜୀବନ ?

ବସନ୍ତ ଆସିଛି ଆଜି, ଆସିଛି ମଳୟ,
ବନେ ବନେ ସ୍ୱର୍ଣ୍ଣରେଣୁ ଦେଇଛି ବିଛାଇ
ଫାଲ୍‌ଗୁନର ନବ ରବି, ଉଚ୍ଛନ୍ନ ମୋ ମନ
ଦେଖିବି ସୁଦୂର କେଉଁ ସର ତୀରେ ବସି,
ଖେଳୁଥାନ୍ତି ଲୁଚୁକାଳି ଚକୋର ଚକୋରୀ ।
ତପନ-ଉନ୍ମୁଖ ଲକ୍ଷ ଶତଦଳ ମେଳେ
ଦେଖନ୍ତି ସରାଳୀ କେହ୍ନେ ପ୍ରେୟସୀରେ ତାର
ଗ୍ରୀବା ଟେକି ଉଚ୍ଚେ କରେ ପ୍ରେମ ନିବେଦନ,
ମୃଣାଳ ଦେଖାଇ ପୁଣି ଡାକୁଥାଏ ପାଖେ ।
ଦେଖନ୍ତି ମୁଁ ବନେ ବନେ ମୃଗ-ମୃଗୀ-କ୍ରୀଡ଼ା
ଲତା-ବନସ୍ପତି ଲୀଳା ଆଶ୍ଳେଷ-ସୁଆଗେ ।
ଘେନିଯାଅ ସାଥେ ମତେ, ନାରୀ ବୋଲି ନାଥ,
ଏମାନ କି ଦେଖିବାର ସାଜେ ନାହିଁ ତାରେ ?

ତରୁଣ

ଓହୋ ତନ୍ୱୀ, ସେ ସବୁ ତ ବିଳାସର କଥା ।
ଏ ତୋହର ସ୍ୱର୍ଣ୍ଣଗଣ୍ଡ ଯେ ଦିନ ଏ ବୁକେ
ପିଟିବ ମନ୍ମଥ-ବାଣ, ଏ କୁଟୀର ତେଜି
ଘେନିଯିବି ଦୂର କୁଞ୍ଜେ, ମୃଗ ମୃଗୀ ଯହିଁ
ଗ୍ରୀବା ପରେ ଗ୍ରୀବା ରଖି ଲଭୁଥିବେ ସୁଖ;
ଭୃଙ୍ଗ ଯହିଁ ଚୁମ୍ବୁଥିବ ନିବିଡ଼େ କୁସୁମେ,
କୋକିଳା ପ୍ରିୟରେ ତାର ମୁଖରି କାନନ
ଡାକୁଥିବ କଳକଣ୍ଠେ, ତହିଁରେ ସୁନ୍ଦରି,
ଘେନି ତତେ ମିଶାଇବି ସେ ପ୍ରେମ ଉତ୍ସବେ
ମୋହର ଆଶ୍ଳେଷ-ସୁଖ, ତହିଁ କିବା ବାଧା ?
ମୁଁ କିନ୍ତୁ ଭ୍ରମେ ଯେ ସଖୀ ପର୍ବତେ ପର୍ବତେ,
ଭୀମ ଅରଣ୍ୟାନୀ ଭେଦି ଗତିପଥ ମୋର,
ବ୍ୟାଘ୍ର ସିଂହ ପଛେ ଧାଇଁ କରେ ଆହରଣ
ଖାଦ୍ୟ ସଖି, ଉଦରର । ତୁମେ ଯିବ ସାଥେ
କିପାଁ କହ କୋମଳାଙ୍ଗି ।

**ତରୁଣୀ**

ଯିବି ମୁଁ ନିକର-
ଧରିଲେ ଧନୁକୁ ତୁମେ, ମୁଁ ଧରିବି ବାଣ,
ପଛେ ପଛେ ଥିବି ରହି ନ ଡରି ଶ୍ୱାପଦେ ।
ଚାଲିଥିବି ତବ ସାଥେ ପର୍ବତୁ ପର୍ବତେ
ଦୂର ଦୂର ବନ ପଥ ବାହିବି ଆନନ୍ଦେ
ମଧ୍ୟାହ୍ନର ଅଗ୍ନି ଭେଦି; ଫେରିଲେ କୁଟୀରେ
ଆଣିବି ଏ ସ୍କନ୍ଧେ ବହି ଦିନର ଆହାର ।
ସୁଖ କିହେ ନାହିଁ ତହିଁ ? ଏ କୁଟୀର କଣେ
କରମବିହୀନ ଏହି ଅଳସ-ଜୀବନୁ
ସେ ଜୀବନ ଭଲ ନିକି ?

**ତରୁଣ**

ଭଲ ସଖି ସେ ସିନା ଗୋ ପୁରୁଷ ଜନରେ ?
ନାରୀ ତୁମେ ଯିବ କିପାଁ ଦୂର ବନଭୂମେ ?
କଠିନ ଶରମେ ସଖି, ହୋଇବ କର୍କଶ
ଏ କୋମଳ ତନୁଲତା, ଚମ୍ପକ ଅଙ୍ଗୁଳି
ଦିଶିବ ପ୍ରେୟସୀ, ଶୁଷ୍କ ଆରଦ୍ରକବତ,
ମୃଣାଳ ଏ ଭୁଜ ଦୁଇ ମାଂସପେଶୀ ବହି
ଯଷ୍ଟିସମ କଠିନତା ଲଭିବ ଅଚିରେ,
ସ୍ୱର୍ଣ୍ଣଗଣ୍ଡ ଦୁଇ ନିତ୍ୟ ରବି-ତାପ ଲଭି
ତାମ୍ରଳ ଦିଶିବ ସଖି, କି ଆନନ୍ଦ ଲଭେ
ହରାଇବ ରୂପସୀ ଗୋ ! କୋମଳ ବପୁର
ଏ ସ୍ନିଗ୍‌ଧ ମଧୁର ରୂପ ?

**ତରୁଣୀ**

ଥାଉ ଥାଉ ନାଥ,
ଚିରଦିନ ରୂପ-ସ୍ତୁତି ତିକ୍ତ ଲାଗେ ମତେ ।
ରୂପ ଲାଗି ପ୍ରାଣ ଯଦି ସହେ ଏତେ ବାଧା,
ଜାଣିଲି ତେବେ ଗୋ ରୂପ ଅଭିଶାପ ମୋର !

**ତରୁଣ**

ଏତେ ବ୍ୟଥା ପ୍ରାଣେ ସତେ ? ଶାନ୍ତ ହୁଅ ସଖି !
ଆସ ବନେ, ଧର ଧନୁ, ଅନୁସର ମତେ,
ତୋହରି ଆନନ୍ଦ ସିନା କାମ୍ୟ ଏ ଜନର ।

(ସନ୍ତାନ ପ୍ରସବ ପରେ)

**ତରୁଣ**

ପ୍ରଭାତ ଆସିଛି ପୂର୍ବେ, ଅୟି ସୁକୁମାରି !
ତେଜି ତ୍ୱରା ଗୃହସୁଖ ଆସ ସାଥେ ମୋର,
ଧର ବାଣ ନିଜ ହାତେ; ଦିଅ ମତେ ଧନୁ,
ଯିବା ଦୂର ବନେ ଚଳି, ଖୋଜିବା ଆହାର ।

**ତରୁଣୀ**

କିସ ନାଥ ? ଜାଣନକି ନବୀନ ଅତିଥି
ଆସିଅଛି ମୋ ଦରିଦ୍ର ଗୃହ ଉଜଳାଇ ?
କେ ତାର କରିବ ସେବା ? ଯାଅ ତୁମେ ଆଜି
ଅନ୍ନ ଆହରଣେ ଦୂର ଗିରି ବନମାଳେ
ଏକାକୀ କୁଠାରହସ୍ତ ଆଜିଠାରୁ ନାଥ,
କେତକୀର ବୃତି ପାରେ ନାହିଁ ମୋ ସଂସାର ।

## ସାଫୋର ବ୍ୟଥା*

ଭର୍ତ୍ସନା କିପାଇଁ କର ଜନନୀ ଗୋ ଆଉ
କରାଙ୍ଗୁଳି ନାହିଁ ଚଳେ; ଏ ବୟନ ଥାଉ,
ଦହେ ପ୍ରାଣେ ପଞ୍ଚଶର,
ତରୁଣ ସେ ଚୋରୀ ନେଇଅଛି ଚିତ୍ତ ମୋର ।

× × ×

[*ସାଫୋ ପ୍ରସିଦ୍ଧ ଗ୍ରୀକ୍ ନାରୀ କବି । କିମ୍ବଦନ୍ତୀ ଏହି— ସାଫୋ କୌଣସି ଏକ ବିବାହିତ ଯୁବକର ପ୍ରେମ ପାଇଁ ପାଗଳିନୀ ହୋଇଥିଲେ । କିନ୍ତୁ ସେ ପ୍ରେମ ନ ପାଇ କୌଣସି ପର୍ବତ ଶିଖରରୁ ଡେଇଁପଡ଼ି ଆତ୍ମହତ୍ୟା କରିଥିଲେ । ଏହି ଜ୍ୱଳନ୍ତ ଅନୁଭୂତି ଆଗ୍ନେୟଗିରିରୁ ଲାଭା ବାହାରିଲା ପରି ପ୍ରେମ-କବିତାରେ ବାହାରିଥିଲା । କିନ୍ତୁ ଦୁଃଖର କଥା, ସାଫୋଙ୍କର ଅଧିକାଂଶ କବିତା ନଷ୍ଟ ହୋଇଯାଇଛି—ଅଛି କେତୋଟି ଭଗ୍ନାଂଶ ମାତ୍ର । ସେହି ଭଗ୍ନାଂଶମାନଙ୍କର କେତୋଟିର ଏଇ ଅନୁବାଦ । ବର୍ତ୍ତମାନ ସାଫୋ କବି ଅପେକ୍ଷା ପ୍ରଣୟିନୀ ଭାବରେ ବେଶୀ ପ୍ରସିଦ୍ଧ ।]

ଜନନୀ, କି ଲାଭ କହ ଦେଇ ମତେ ଗାଳି
ବୁଣି ତ ନପାରେ ଆଉ ମୁହିଁ ପୂର୍ବପରି,
ସ୍ଥିର ନାହିଁ ରହେ ମନ,
ଭାଳି ଭାଳି ମୋ ମନରେ ସେହି ସେ ତରୁଣ ।
X X X

ଜନନୀ ମୁଁ ସୂତା-କଣ୍ଡା ଫିଙ୍ଗି ନାହିଁ ପାରେ
କିପାଁ ତିରସ୍କାର ମତେ କର ବୃଥାଟାରେ ?
ସେହି ତରୁଣ ସୁନ୍ଦର
ଆଚ୍ଛନ୍ନ କଲେଣି ସାରା ଜୀବନ ମୋହର ।
X X X

ଜନନୀ ଅରଟେ ଚିତ୍ତ ରତ ନାହିଁ ରହେ,
କରାଙ୍ଗୁଳି କରେ ବ୍ୟଥା, ଜ୍ୱର ଓଠେ ଦହେ ।
ତମେ ଏ ବ୍ୟାଧି ତ ଜାଣ,
ନାହିଁ ପାଇଥିବ କିନ୍ତୁ ମୋପରି କଷଣ ।
କଷଣେ ଭରଇ ପ୍ରେମ ମୋ ସାରା ଜୀବନ;
ତିକତ-ମଧୁର, ବ୍ୟଥା-ସୁଖ ଏ କଷଣ;
ପୁଷ୍ପ-ମାଳାର ବନ୍ଧନ,
ପିନ୍ଧିଲେ ଯନ୍ତ୍ରଣା, ଛିଣ୍ଡିବାକୁ ନୋହେ ମନ ।
X X X

ଚନ୍ଦ୍ର ଅସ୍ତ ଗଲେ, ଅର୍ଦ୍ଧନିଶା ହେଲା ଶେଷ
ଅନ୍ଧକାର ଭରିଲାଣି ସମସ୍ତ ଆକାଶ,
ନାଇଁ ଅଇଲେ ସୁନ୍ଦର,
ଏକା ଏକା ଏ ରଜନୀ ହୋଇଲା ଅସର ।
ସପ୍ତର୍ଷି ତାରକା ଗଲେ ମ୍ଳାନ ଆଶେ ଚାଲି,
ଚନ୍ଦ୍ର ଗଲେ ନିଭି, ରୂପା-ଦୀପ ରାତି ଜାଳି;
କଣ୍ଟ କାଳ ହେଲା ପାର,
ଏକା ଶୋଇ ଚାହିଁ ଅଛି ମୁହିଁ ଚକ୍ରବାଳ ।
X X X

ହେ ତରୁଣୀ, ତୁମ ପାଶେ ବସି ଯେ ତରୁଣ,
ନିରେଖୁଛି ତୋ ଗଣ୍ଡର ଲାବଣ୍ୟ-ଅରୁଣ

ଶୁଣୁଅଛି ତୋ ଓଷ୍ଠର କୋମଳ ଭାଷିତ,
ଦେଖୁଅଛି ତୋ ନେତ୍ରର ଚିତ୍ତ-ଜୟୀ ସ୍ମିତ,
ମୋ ନେତ୍ରେ ସେ ଦେବତ୍ୱର ନର-ଅବତାର,
ତାକୁ ଦେଖି ମୋ ଶରୀରେ ଉପୁଜେ ଶୀତ୍କାର ।

ତାଙ୍କୁ ଦେଖିବାର ଦିନୁ ଶାନ୍ତି ଗଲା ପ୍ରାଣୁ,
ଥରିଲା ମୋ ଶରୀରର ଅଣୁ, ପରମାଣୁ,
ଦେଖୁ ଦେଖୁ ଆତ୍ମ-ହରା ହେଲି ମୁଁ ବିକାରେ
ହେଲି ଅଣଶ୍ୱାସ; ଭାଷା ଲୀନ ରସନାରେ ।
ଅଲକ୍ଷେ ମୋ ବକ୍ଷେ କିଏ ଜାଳିଲା ଇନ୍ଧନ,
ଅଗ୍ନି-ଶିଖା ସାରା ଦେହେ କରିଲା ଚାଳନ ।
ଚକ୍ଷୁ ମୋର ଅନ୍ଧକାର ଦେଖିଲା ଜଗତ,
ଶ୍ରବଣେ ଶୁଣିଲି ଶୂନ୍ୟ ମର୍ମର ସଙ୍ଗୀତ ।
ଧମନୀରେ ରକ୍ତ ହୋଇ ଆସିଲା ଶିଥିଳ,
ପଡ଼ିଲି ଧରଣୀ ତଳେ ମୂର୍ଚ୍ଛା ହୋଇ ଥିର ।

## ଘନ-ଶର୍ବରୀ

(ଗୁରୁ ଲଘୁ ନିୟମ ପାଳିବାକୁ ହେବ ।)

ଅମ୍ବୁଦାବୃତ, ଅମ୍ବରାଙ୍ଗନ
ଲୁପ୍ତ-ତାରକ-ଯାମିନୀ
ସଘନ ବରଷଣ ବଜ୍ର ରଣ ରଣ
ନୃତ୍ୟ-ଚଞ୍ଚଳ-ଦାମିନୀ ।
ଭେକ ମୁଖରିତା ନିଖିଳ ପ୍ରାନ୍ତର
ବିଶ୍ୱ ଘନରସପ୍ଲାବିତ
ଥରଇ କାନନ ଝରଇ ଶ୍ରାବଣ
ମାର୍ଗ ଭରି ଉଦ ଧାବିତ ।
ଇନ୍ଦ୍ର ଦିଗ୍‌ଗଜ ହସ୍ତ ବ୍ୟାକୁଳି
ପବନ ବହଇ ବତାସିଆ
ଏ ଘନ ରଜନୀ କିପରି ବଞ୍ଚଇ
ତରଳ-ବୁକୁ ପରବାସିଆ ।

ବିରହୀ-ତରୁଣର ଛାତି କରତଳ
ଶୟନ ବିଷ ପରି ଲାଗଇ,
ମାନସିଂହର ନିବିଡ଼ ଅନ୍ତରେ
ପ୍ରଣୟ ଛଳ ଛଳ ଜାଗଇ ।

## ହେ ମୋର ପରମ !

ଜନମେ ଜନମେ ହେ ଅବୁଝା ପ୍ରିୟ
ହୁଅ ତମେ ମୋର ପରମ । ଧ୍ରୁବ ।
କରୁଥିବି କ୍ଷମା
କ୍ରୋଧ ନୋହି ଜମା
ଜାଳୁ ଥାଅ ପଛେ ମରମ ।
ଆଘାତିଲେ ପାଦେ ଆଉଁଶିବି ସ୍ନେହେ
ତିଆଗିଲେ ଶିବ ପୂଜିବି ବିରହେ
ସ୍ୱପ୍ନ ଜାଗରଣେ
ତୁମରି ସ୍ମରଣେ
ଭରିବି ସକଳ କରମ ।
ଆନ କିଏ ଯଦି ଜିଣେ ତବ ମନ
ପାଦ ଧରି ତାଠୁ ଶିଖିବି ସାଧନ
ଜାଣ ଚିତ୍ତ-ଚୋର
ତମ ଲାଗି ମୋର
ପୋଡ଼ି ହେବା ନାରୀ ଧରମ ।
ସେବିବାକୁ ଦିଅ, ଗଢ଼ିବାକୁ ଦିଅ
ଯୁଗେ ଯୁଗେ ଆଖି ଦେଖିବାକୁ ଦିଅ
ଦିନେ ହେଲେ ପରା
ସ୍ନେହେ ଢାଳି ଢୋଳା
ଦେବ ମୋ ସୁଖର ଚରମ ।

—

# ହଂସ-ହତ୍ୟା

ଧବଳ ରାଜହଂସ, ରକ୍ତ ତା'ଗ୍ରୀବା
ସ୍ଥୂଳ-ଗ୍ରଥିତ ମଲ୍ଲି-ମାଳିକା କିବା,
ସୁବର୍ଣ୍ଣ ଚଞ୍ଚୁ ପୁଟ, -ହଂସୀଟି ତାର
ପ୍ରଣୟେ ବୋଳିଛି କି ହରିଦ୍ରାସାର ଯେ ।

ବିହରୁଥିଲା କେଉଁ ସରସୀ ଜଳେ
ପ୍ରେୟସୀ ଘେନି ସାଥେ ପ୍ରଣୟ ଭରେ,
ନିର୍ମମ ଆତତାୟୀ ମନୁଷ୍ୟ କାହିଁ,
ଆଣିଲା ଧରି ଜିହ୍ଵା ଲାଳସା ପାଇଁ ।

ଆଣିଲେ ଯେବେ ଗୃହେ, କରୁଣ ରବ
କରି, ସେ କରୁଥାଇ ଦୁଃଖ ଲାଘବ,
ଦୁର୍ବଳ ପକ୍ଷ ଝାଡ଼ି ମୁକତି ଲାଗି
ଚେଷ୍ଟା ବା କରୁଥାଇ ବନ୍ଧନ ଭାଙ୍ଗି ।

ମୁକତି-ଚେଷ୍ଟା ଫଳେ ବନ୍ଧନ ବଢ଼େ,
କରୁଣତର ହୋଇ ମରାଳ ରଡେ,
ଭୃତ୍ୟ କେ ବକ୍ର କରି ଗ୍ରୀବା ତାହାର
କହେ —'ଦେଖାଉ ଆଉ କେତେ ବାହାର' ।

ସନ୍ଧ୍ୟାରେ ଆସିଥିଲା, ନିଶା ବରାକୀ
ଯାପିଲା ନିରାହାରେ, କରୁଣେ ଡାକି ।
ପ୍ରଭାତେ ଗଲା ଦେଖା ଅବଶ ପକ୍ଷୀ
ପଡ଼ିଛି ଶୋଇ ଗ୍ରୀବା ପିଠିରେ ରଖି ।

'ଆଉରି ମରି ନାହିଁ ।'— ଦେଖି କହିଲେ
ମାଂସାଶୀ ଗୃହସ୍ଵାମୀ ସବା ପହିଲେ,
'ଦିଅ ନା ଶେଷକରି ରହିବ କିଆଁ
ଆସିଛି ଏତେ କଷ୍ଟେ— ଜ୍ଞାନରେ ନିଆଁ ।'

ପାଶେ ମୁଁ ଥିଲି ଠିଆ ଅନାଇ ହଂସେ
ଦେଖାଇ ବୋଇଲେ ସେ ମଧୁର ହସେ,

'କାହିଁରେ, ଦେଖି ଦେଖି, ମୋଡ଼ିଲୁ ବେକ,
ପାରିବୁ ?– ଅନାଡ଼ି ତୁ ! –ଆନରେ ଡାକ ।'

ନିର୍ବୋଧ ଶିଶୁ ମୁହିଁ– ବୟସ୍କ ଆଗେ
ଯୋଗ୍ୟତା ଦେଖାଇବା ତୀବ୍ର ସରାଗେ,
ଧଇଲି ମୃତ ପ୍ରାୟ ପକ୍ଷୀର ଗ୍ରୀବା
ମୋଡିଲି ବକ୍ରେ, ଇକ୍ଷୁ ଦଣ୍ଡ ସେ କିବା !

ମରଣେ ମୁକ୍ତି ଲଭି ଚଳିଲା ହଂସ
ଶେଳ, ବିନ୍ଧୁଛି ସଦା ସ୍ମୃତି ନୃଶଂସ ।
ନିଜରେ ମଣେ ମନେ ମୁଁ ଆତତାୟୀ
ଭାଳଇ ସେ ପାପର କ୍ଷାଳନ କାହିଁ ?

ସେ ନିଶା, ସେ ମରାଳ, ସେ ଜୀବହତ୍ୟା
ଦିନନ୍ଦିନକେ ମନେ ପଡ଼େ ଅଗତ୍ୟା,
ଭଗ୍ନ ତା ଗ୍ରୀବା ଦଣ୍ଡ, ମୃତ ଶରୀର
କଲାଣି ହୃଦେ ବହୁ କ୍ଷତ ଗଭୀର ।

ସେ ଦିନ ସେ ମରାଳ ରିକ୍ତ ଉପାସେ
ହଂସିନୀ କଥା ତାର ପ୍ରତି ନିଶ୍ୱାସେ,
ଭାବି କି ନାହିଁ ଥିବ ଚିତ୍ତରେ ତାର,
ପଡ଼ି ତ ଥିବ ପଦ୍ମ ଖୁଆଇବାର ?

ହଂସୀଟି ତାର ସରେ ଉଦ୍‌ଗ୍ରୀବ ହୋଇ
ଚଞ୍ଚୁରେ ଚଞ୍ଚୁପୂର୍ଣ୍ଣ ଆହାର ଥୋଇ,
କୁଳାୟ ଆଶେ, ଆଉ ପ୍ରଣୟୀ ଆଶେ
ଚାହୁଁ ସେ ଥିବ ନିକି ତିକ୍ତ ନିରାଶେ !

ସେ ଦୁଇ ଜୀବନର ସେ ଯେ ନିରାଶା
ଅପୂର୍ଣ୍ଣ ସୁଖ-ସ୍ୱାଦ, ଅବ୍ୟକ୍ତ ଭାଷା,
ଏ ଅପରାଧୀ ପ୍ରାଣେ ତୀବ୍ର ଧିକ୍‌କାର
ଦିନନ୍ଦିନକେ କରୁଅଛି ସଞ୍ଚାର ।

—

# ବସନ୍ତୋତ୍ସବ

(୧)

ନବ ଆନନ୍ଦେ ଧରଣୀ ଆଜି ତ ମଗ୍ନରେ
ବସନ୍ତ-ଥାଟ ବାଟେ ଆସି ଶୁଭ-ଲଗ୍ନରେ ।
ଧରଣୀ-ରମଣୀ ସଜାଇଛି ବେଣୀ ପୁଷ୍ପରେ
ଅଳତା-ରେଖା ସେ ପଦେ ବିରଚିଛି ପୁଷ୍ପରେ ।
ସିନ୍ଦୂର ରାକା-ଇନ୍ଦୁ ସମ ତା ମସ୍ତକେ
କିଂଶୁକ-ଫୁଲେ କରାଇଲା ଦେଖ ନ୍ୟସ୍ତ କେ ।
ପରିଚୟ ଆଉ ପରିଣୟ ହେବ ଏ କ୍ଷଣେ
କ୍ଷିତି-ଦେହ ଶୀତ୍କାର କରେ ପ୍ରୀତି ଲକ୍ଷଣେ ।
ଘାସେ ଘାସେ ଭାସେ ଅକଥିତ ନବ ଶୃଙ୍ଗାର
ଅରୁଣେ ଫୁଟଇ ଅଗଣିତ ପ୍ରୀତି ମନ୍ଦାର ।
ମୂକ-ଭାଷା ବୁକୁ ଫୁଟିଉଠେ, ଫୁଲେ ପଲ୍ଲବେ
ନିବେଦନ ସେହି ବେଦନାବତୀର ବଲ୍ଲଭେ ।
ମୁଖର କୋକିଳ ଉତ୍ସାହେ ଘୋଷେ ଉତ୍ସବ
ଦିଶେ ଦିଶେ ଆଜି ମରତାର କି ଉଭବ ।

(୨)

କେ ଅଛ କିଶୋର-କିଶୋରୀ ଆସ ଗୋ ପ୍ରାନ୍ତରେ,
ତୁମ ଲାଗି ସିନା ମଳୟ ବାହାରେ, ଅନ୍ତରେ ।
ମିଶିବ ନାହିଁ କି ଚୈତ୍ର-ଜୈତ୍ର-ଯାତ୍ରାରେ,
ଭୋଗିବନି ପ୍ରାଣେ ବସନ୍ତ କିଛି ମାତ୍ରାରେ ?
ହାତ ଧରାଧରି, ଗାଅ ହେ ପ୍ରଣୟ-ବନ୍ଦନା
କିଶୋରୀ-ହୃଦୟ ହୋଇ ଉଠୁ ଘନ-ସ୍ପନ୍ଦନା ।
କୁସୁମ ପରାଗେ ଉତ୍ସବ ରଚ ଉତ୍ସାହେ
ଭ୍ରୂକ୍ଷେପ ନାହିଁ କର ହେ, କରିବ କୁତ୍ସା ଯେ ।
ଧରଣୀ ତୁମରି, ତୁମରି ମଳୟ-ସଙ୍ଗୀତ
ନିଜ ଅଧିକାର ନେବାକୁ ନୁହଁ କି କାଂକ୍ଷିତ ?
ବସନ୍ତ ଆଜି ଡାକୁଛି ତୁମରେ ପ୍ରାନ୍ତରେ
ଛିନ୍ନ କର ହେ ଜଞ୍ଜାଳୁ ନିଜ ଅନ୍ତରେ ।

ମଳୟ ସମାନ ମିଶିଯାଅ ଫୁଲ ସଙ୍ଗରେ
ଉନ୍ମାଦେ ଜିଣ ମଦ୍ୟପ ବନ-ଭୃଙ୍ଗରେ ।
ଦିନକ ଲାଗି ଯେ ଆମୋଦେ ହଜାଅ ଚିତ୍ତ ହେ,
ରୁଦ୍ଧ-ରୁଗ୍‌ଣ ଜୀବନେ ସେ ମହା ବିତ୍ତ ହେ ।

## ଜ୍ୟୋତ୍ସ୍ନାମୟୀ

ସନ୍ଧ୍ୟାର ପଛେ ପଛେ ଆସିଅଛି ଜ୍ୟୋତ୍ସ୍ନା
କୁଞ୍ଜେ ବିଳସି ମୋର ବଢ଼ାଇଛି ତୃଷ୍ଣା ।
ବୁକେ ବୁକେ ଖେଳାଉଛି ଚୁମ୍ବନ ସ୍ୱପ୍ନ
କରିଅଛି ସୁଶୀତଳ ଚକ୍ଷୁର ପ୍ଳକ୍ଷ୍ମ ।
ସ୍ୱପ୍ନ-ମଦିରା ମୋର ଜାଗିଅଛି ବକ୍ଷେ
ପରୀ ମାୟା ଲାଗିଅଛି ଏ ବିଲୋଳ ଚକ୍ଷେ ।
ଛୁଇଁଯାଏ ଦେହ ସାରା ପରିଚିତ ପରଶ
ମଦଭରା, ସ୍ୱେଦ-ହରା, ସୌରଭ-ରଭସ ।
କେଉଁ ଅତୀତର ସେହି କୁଟୀଳ ଅପାଙ୍ଗ
ବକ୍ଷରେ ଘେରି ଘେରି ହେଉଅଛି ସାଙ୍ଗ ।
ଅଧର ସରାଗ କା'ର ଲାଗିଯାଏ ଛନ୍ଦେ
ବାହୁଲତା ଭାର କାର ଛନ୍ଦଇ ବନ୍ଧେ ।

ହେ ଅତୀତା, ଥିଲ ତୁମେ ଚଞ୍ଚଳ ସରଳ
ଏଇ ଜ୍ୟୋତ୍ସ୍ନାର ସରି ସୌରଭ-ତରଳ ।
ଅଧରେ ନୟନେ ତବ ଖେଳୁଥିଲା ଜ୍ୟୋତ୍ସ୍ନା
ଦେହ-ରାଗେ ବଢୁଥିଲା ଜ୍ୟୋତ୍ସ୍ନାର ତୃଷ୍ଣା ।
ଆଜି ତେଣୁ ପୂର୍ଣ୍ଣିମା କୌମୁଦୀ ରାତ୍ରେ
ଚୁମ୍ବନ ଆଶା ମମ ଜାଗୁଅଛି ଗାତ୍ରେ ।
ଆଜି ତେଣୁ ଏ ନିଶାରେ ଏ ମଧୁର ଜ୍ୟୋତ୍ସ୍ନା
କୁଞ୍ଜେ ବିଳସି ମୋର ବଢ଼ାଇଛି ତୃଷ୍ଣା ।

—

# ଇତସ୍ତତଃ

ଫୁଟିଲା ସରସିଜ ପ୍ରଭାତେ ସରେ
ରସିକ-ଭୃଙ୍ଗ ପାଶେ ଆସିଲା ଖରେ;
ଗୁଞ୍ଜରି ବୋଲେ, ''ସଖି, ମୋ ଲାଗି କିରେ,
ବାସକ ଶଯ୍ୟା ପାତି ରହିଛୁ ନୀରେ ?''
କମଳ ବୋଲେ, ''ଆହା କିବା ବଡ଼ାଇ !
ତପନେ ମୁଁ ଯେ ରହିଅଛି ଅନାଇଁ ।''

ତପନ ପ୍ରାଚୀ ତୀରେ ଉଇଁଲା ଧୀରେ
ସ୍ୱାଗତ କଲା ପଦ୍ମ ନୁଆଇଁ ଶିରେ ।
ନୀରବେ କହିଲା ସେ, ''ହେ ଜୀବିତେଶ,
ହୃଦୟେ ଦୟା ତବ ନାହିଁକି ଲେଶ !
ଆସ୍ୱାଦ ନ ସରୁଁ ମୋ ତେଜିଲ ଧରା
ଏ ଅଭାଗିନୀ ମନେ ନଥିଲା ପରା !
ତୁମ ସ୍ୱପନେ ଗଲା ରଜନୀ ପାହି
ପ୍ରଭାତୁଁ ରହିଛି ଆସିବା ଅନାଇଁ ।''

ତପନ କହେ, ''ହାୟ ଅଭିମାନିନି,
ଥିବି ମୁଁ ଚିର ଖାଲି ତୁମରେ ଘିନି ?
ଚାହିଁ ଅଛନ୍ତି ବିଶ୍ୱ କୁସୁମରାଶି,
ତୋ ଲାଗି ଉଚିତ କି ଆନେ ନିରାଶି ?''
ରକ୍ତ-ପାଖୁଡ଼ା ରକ୍ତତର ହୋଇଲା
ପଦ୍ମିନୀ ସରମରେ ନୀରେ ନଇଁଲା ।
ଭ୍ରମର ଗୁଞ୍ଜରିଣ ପଙ୍କଜେ ଭାଷେ—
''ଚାହିଁରହିଲ ଦୀର୍ଘ ନିଶା କା ଆଶେ ?''

ଜୀବନେ ଲାଗିଅଛି ଏ ବିପର୍ଯ୍ୟୟ
ପ୍ରେମ ଲଭଇ ନାହିଁ ତା ବିନିମୟ ।
ନେତ୍ରେ ନାହିଁଛି ନିଦ ଯେ ଆଖି ପାଇଁ
କଟାକ୍ଷେ ହେଲେ ସେ ତ ଚାହଁଇ ନାହିଁ ।
ସେ ପୁଣି ଆଉ କାର ଗଣ୍ଡେ ଅନାଏଁ

ଏ ସ୍ମୃତି ପାଦେ ଠେଲି ତା ପଛେ ଧାଏଁ ।
ରହନ୍ତା ପ୍ରେମ ଯଦି ଯଥା ସ୍ଥାନରେ
ସ୍ୱର୍ଗ ନଥାନ୍ତା ଖାଲି କବି ଧ୍ୟାନରେ ।

## କୁଳଟା ରାଧା

ଯାବଟ ଘୋଡ଼ାଇ ମେଘ ବରଷେ ବାରି,
ଘଡ଼ଘଡ଼ି ପଡ଼େ ତାଳବନ ହୁଙ୍କାରି ।
ଘୋର ବେଗେ ଅଣଚାଶ ବହେ ପବନ,
ବନପକ୍ଷୀ ଗ୍ରାମେ ପଶି ରଖେ ଜୀବନ ।

ଅସର ଧାରାରେ ପଡ଼େ ଗଗନୁ ଜଳ,
ଠକ ଠକ ପଡ଼େ ପଥେ କୁଆପଥର ।
ଯାବଟ ଦାଣ୍ଡରେ ବହେ ବୁଢ଼ାଣ ପାଣି,
ସାରା ଦାଣ୍ଡେ ନାହିଁ କାହିଁ ଜନ ପରାଣୀ ।

ସାରା ଗ୍ରାମେ ଶୁଭେ ଖାଲି ମେଘ ବରଷା
ଘରେ ଘରେ ଡାକ, 'କେବେ ହେବ ଫରଷା ।'
ଏକାଳେ ଜଟିଳା ଘରେ ଜଟିଳା ନିଜେ
ଡାକିବାର ଶୁଣାଗଲା, ''ରାଧା ନାହିଁ ଯେ ।''

''ରାଧା ନାହିଁ, ରାଧା ନାହିଁ, ଗଲା ସେ କାହିଁ ?''
ଘରେ ଘରେ ହେଲା ଖୋଜା, ମିଳଇ ନାହିଁ ।
''ଏ ରାତି ଏ ବରଷାରେ କାହିଁ ସେ ଗଲା ?
ଜାଳ ଦୀପ ବାରିଆଡ଼ ଖୋଜ କୁଟିଳା ।''

''ଆଲୋ ମା, ଦୀପ କି ରହେ ଏତେ ବତାସେ ?
ବରଷା-ଚିକ୍‌କଣ ଭୂମେ ଗୋଡ଼ ଯେ ଖସେ ।
କାହିଁଲୋ, ଖୋଜିବା ତାକୁ ? ମରିଲେ ମରୁ,
ପୋଡ଼ାମୁହାଁ ସାଥେ ଘରୁ ବିପତ୍ତି ସରୁ ।''

— କହି ଶୋଇବାକୁ ଯାଉ ଦେଇ କିଳିଣୀ,
ସହସା କାନରେ ବାଜେ ମୁରଲୀ ଧ୍ୱନି ।

ମୁହଁ ମୋଡ଼ି ବୁଢ଼ୀ ଚାହେଁ କୁଟିଳା ମୁଖେ,
କୁଟିଳା ପଡ଼ଇ ବସି ସରମ-ଦୁଃଖେ ।

ନ ପାହୁ ରଜନୀ ସାରା ଯାବଟେ ହୁରି,
'ରାଧା ନାହିଁ ଘରେ'— ଡାକେ ଜଟିଳା ବୁଢ଼ୀ ।
କୁଟିଳା ଜଗିଛି ବସି ଯମୁନା-ବାଟ,
ତା ପାଶେ ବସିଛି ଯେତେ ଗୋପିନୀ ହାଟ ।

କୁହାଳୀ ତରୁଣୀ ଏକ ସଖୀରେ ଡାକି
କହଇ— ''ଦେଖିବା ଆଉ କି ଅଛି ବାକୀ ?
ଥର ଥର କରି ଏହି ନାଟ ଲାଗିଛି,
ଆଚ୍ଛା ଶାଶୁ ଆଚ୍ଛା କୁଳବୋହୂ ପାଇଛି !
ଆସ ଯିବା''— ବୋଲୁଁ, ଦୂରେ ଦିଶଇ ରାଈ,
ଲାଜେ ମୁହଁ ଟେକି ପୁଣି ତଳେ ପୋତଇ ।
ଯମୁନା ସ୍ନାହନେ ଓଦା ଦେହ-ବସନ,
ସ୍ତନଭାରେ ବାସଭାରେ ମଠ ଗମନ ।

ନିକଟେ ନ ଆସୁ, ଭୋଖୀ ବାଘୁଣୀ ପରି
ଧାଇଁଲା କୁଟିଳା ପଛେ ଲଗୁଡ଼ ଧରି,
ଜଟିଳା ଚଳଇ । ଗୋଳ ଗୋପିନୀ ମେଳେ,
''ଆସିବାକୁ ଥିଲା ତାକୁ ଏତିକି ବେଳେ ?''

ପଣତ ଓଟାରି ବୁଢ଼ୀ ଆଣିଲା ଭିଡ଼ି,
ପଛରେ ନଣନ୍ଦ ନାନା କଥା ଫୋପାଡ଼ି
ଆସଇ । ସାରାଟି ଗାଆଁ କାମିନୀ ଆଗେ
ଉଭା ରାଧା ଦୋଚାରିଣୀ । ସରମ ରାଗେ
ମୁହଁ ନଇଁ ଯାଏ ତଳେ । ପଦର ବଳା
ମହାଲାଜେ ପଥରଜେ ମରଣ ଗଲା ।

ସାରାଟି ଗାଆଁର ଆଖି ମୁଖରେ ତାର,
ଅପମାନେ ବହିଯାଏ ଲୋତକ ଧାର ।
ଯେତେ ସବୁ ଯାବଟର ସାଧବ ସତୀ
ଦେଖୁଥାନ୍ତି କଉତୁକେ କୁଳଟା ଗତି ।

ଏ ଗୁରୁ ସରମ ମାଥେ ବହି ଶ୍ରୀମତୀ,
ଆୟତ ନୟନ ଲୁହ ତିନ୍ତାଇ ଛାତି,
ହୃଦୟେ ନିବିଡ଼େ ଡାକେ ସତୀ ନବୀନା,
''ହେ ସଖା, ହେ ଶ୍ୟାମ, ସବୁ ତୋ ପାଇଁ ସିନା !''

ଦଳେ ଦଳେ ଗୋପାଳୁଣୀ ଚଳିଲେ ଘରେ
ଟାହୁଲି କହନ୍ତି କେତେ ଏକ ଆନରେ ।
କବି କିନ୍ତୁ ନ ଚାହିଁଲା ସେ ସତୀଜନେ
ପ୍ରଣତି ବିହିଲା ଦୋଚାରିଣୀ-ଚରଣେ ।

## ବଂଶୀ ଡାକ

ଯମୁନା ଆର ପାରେ କାହିଁ ବାଜେ ବଂଶୀ,
ବ୍ରଜପୁରେ ସଜପଦ୍ମ-ମୁଖୀ ରାଧା ବସି
କିପରି ଶୁଣେ ସେ ଡାକ ? ଅପର ଗୋପିକା
ବୁଝିନପାରନ୍ତି କିଛି, ଆପଣା ଜୀବିକା
ବକ୍ଷେ ଧରି ଗୋପ-ମାତା ନପାରଇ ଶୁଣି,
ଗୋପ-ଶିଶୁ ଗୋଷ୍ଠଗୀତ ଗାଉଥାଏ ଗୁଣି ।
ଗୋପ-ବୃଦ୍ଧ ସନ୍ଧ୍ୟାଗମେ ଗୋ-ଗୋଷ୍ଠେ ବିଳସି
ଗୋ-ଦୋହନେ ଫୁଲ୍ଲ ମନେ ସାଜଇ କଳସି ।

ବଂଶୀ ନାଦ ଦୂରେ ଦୂରେ ବହିଯାଏ ଭାସି,
କେହି ନ ପାରନ୍ତି ଶୁଣି ।
ନେତ୍ରୁଁ ଲୁହରାଶି—
ବିକଳେ ବୁହାଇ ଖାଲି ଯୁବତୀ ରାଧିକା
ଶୁଣଇ ସେ ଗୋପ ଗ୍ରାମେ ପ୍ରଣୟବାଧିକା ।
ଝଟତି ବାହାରେ ଘରୁ— କୋମଳ ଚରଣ

ହୁଏ ତୀକ୍ଷ୍ଣ କୁଶାଘାତେ ରକ୍ତ-ପ୍ରସ୍ରବ ବଣ ।
ନିବିଡ଼ ଅନ୍ଧାର ରାତି ! ନ ଦେଖିଛି ପନ୍ଥା !
ସେ କଥା ମାନେ କି କେବେ ହୃଦୟର ବ୍ୟଥା ?

ଯୁବତୀ ରାଧିକା ହୁଏ ବନପଥ-ଯାତ୍ରୀ
ନ ମାନଇ ଭୟ,ଭ୍ରାନ୍ତି, ଅନ୍ଧକାର ରାତ୍ରି ।
ପାଗଳିନୀ ପରି ଧାଏଁ ନବୀନ ପ୍ରେମିକା
ବନୁ ବନେ, ପଥୁ ପଥେ ପ୍ରେମିକା ରାଧିକା ।
ପଛେ ରଖେ କୁଳମାନ, ଗୁରୁ ଗଉରବ
ଭାଙ୍ଗି ଚାଲେ ବାଧାବିଘ୍ନ-ନିଷ୍ଠୁର ଗରବ ।

ବାସ ଫୁଟି, ଲତା, ଗୁଳ୍ମ, କଣ୍ଟା ଦେହ ଚିରେ,
ଜଳିଉଠେ କୋମଳାଙ୍ଗ, ବିକଳ ରୁଧିରେ ।
ସେ କଥା ପାସୋରେ ରାଧା ପୀରତି-ବାୟାଣୀ
ଶୁଣୁଛି ସେ ଖାଲି ଦୂର ମୁରଲୀର ବାଣୀ ।
ଗୋପେ ଗୋପାଙ୍ଗନା ଯେତେ ଆମୋଦେ ନିଦ୍ରିତା,
ଘୋର ବନେ ଖୋଜି ବୁଲେ ରାଧା ବ୍ୟାକୁଳିତା—
ପରାଣର ନିଧି ତା'ର, କୁଞ୍ଜ-ପତ୍ରଫୁଲେ
ତିନ୍ତାଇ ଲୋତକ ପଥ, ଯମୁନାର କୂଳେ ।

କୃଷ୍ଣ କି ବଜାଏ ବଂଶୀ କୁଞ୍ଜବନେ ଆଜି
ସେହିପରି ? ତରତରେ କବରୀ ନ ସାଜି
ଧାଏଁ କି ରାଧିକା-ରାଣୀ ସେହିପରି ରାତେ,
ତା' ଚରଣ ଶୋଣିତରେ କୁଶାଙ୍କୁର ଘାତେ
ଫୁଟାଏ କୋମଳ ପଦ୍ମ ।
ସତ୍ୟ ଯଦି ପ୍ରଭୁ,
ନିଅ ମୋର ଯାହା ଅଛି, ନିଅ ମୋର ସବୁ,
ଭିକ୍ଷା ମୋର କୁଞ୍ଜବନେ ବ୍ରଜୁଁ ରାଧାରାଣୀ
ଯେ ପଥେ ଯାଆନ୍ତି ନିତି ବଂଶୀ ଡାକ ଶୁଣି
ସେହି ପଥେ ଦୟାମୟ କର ମୋତେ ଘାସ,
ଦେହ ପାତି ଘୁଞ୍ଚାଇବି ରାଧାପଦ-ତ୍ରାସ ।

—

# ଆତ୍ମ-ପର

ଖବର୍‌କାଗଜରେ ବଢ଼ିର କଥା
ପଢ଼ି ମୁଁ ମନେ ମନେ ଭାବଇ,
କିପାଇଁ ଏ ବିଳାପ ଏ ଗୁରୁ ବ୍ୟଥା,
ଲୋକେ ମଲେ ବା ଆଶ୍ରା ନ ପାଇ ।
ନେତାଏ ଲୋକଗଣେ ଦେଖାନ୍ତୁ ଯାଇ
ଶିରୀ-ସୁନ୍ଦର ବୃଦ୍ଧି-ନଦୀର,
ତରୁଣେ ଲୋକଗଣେ ଶିଖାନ୍ତୁ ଯାଇ
ବଢ଼ି-ବର୍ଣ୍ଣନା ଯେତେ କବିର ।
ନିଜର ଦେଶରେ ଏ ନଦୀ ପର୍ବତ
ତାଙ୍କ ଶିରୀତ କେହି ବୁଝେନି,
କେମନ୍ତେ ଏହି ଜାତି ହେବ ଉନ୍ନତ
ସାହିତ୍ୟ ଗଢ଼ି ହେବ କି ଘେନି ?
ହେଉ ବରଷା, ହେଉ ନଈରେ ବଢ଼ି,
ଦେଶଟା ଦିଶୁ ହେଲେ ସୁନ୍ଦର,
କେତୋଟି ଲୋକ ଯଦି ଯାଆନ୍ତି ସଢ଼ି
କିପାଇଁ ନେବା ତାଙ୍କ ଖବର ?
ଦିନେକ ପରେ, ଗୃହେ ଫେରୁଁ ବାଟରେ
ଖାଇଲି ଘୋରତର ଆସାର,
ସେ ଦିନ ଜାଣିଗଲି କେତେ କ୍ଷଣରେ
ବିପଦ ଗୃହହୀନ ଚଷାର ।
ତା ପରଦିନ ଘରୁ ପାଇଲି ଲେଖ
ବଢ଼ିରେ ସବୁ ଧାନ ଯାଇଛି,
ବୁଝିଲି ପଢ଼ି, କେଶେ ଘୋଷାରି ନଖ
ଖବରକାଗଜ ଯା କହିଛି ।

—

# ଶେଲୀ-ମୃତ୍ୟୁ

(୧)

ନିରଜନ ବେଳାବାସେ ପତି-ପ୍ରାଣା ମେରୀ ଅଛି ଚାହିଁ,
ସାତଦିନ ଗଲାଣି ଯେ, ଶେଲୀ ତାର ନ ଆସେ କିପାଇଁ
ପର ଉପକାର ଲାଗି, ଭୁଲେ ସେ ଯେ ଭୋଜନ, ଶୟନ,
ପିସା ନଗ୍ରେ ରହିଲା କି, କରିବାକୁ କା' ଦୁଃଖ-ମୋଚନ ?
ଅଥବା— କମ୍ପଇ ପ୍ରାଣ, ମେରୀ ହୃଦେ ହେଲେ ସେ ଭାବନା—
ବତାସି ବାରିଧି ବକ୍ଷେ ଘଟିଲା କି କିଛି ଦୁର୍ଘଟଣା ?

ମନୁଷ୍ୟ ତ ନୁହେଁ ଶେଲୀ— ନର ଦେହେ ଶିଖା ପ୍ରକୃତିର,
ତେଣୁ ଜଳେ, ବନେ, ବିଲେ ବୁଲେ ଶେଲୀ ନିରତ ଅସ୍ଥିର ।
ପ୍ରକୃତି ପରି ସେ ବନ୍ୟ, ପ୍ରଭଞ୍ଜନ ପରି ସେ ଚଞ୍ଚଳ,
ରୂପ ଆଉ ପ୍ରେମ ଖାଲି ବାନ୍ଧିଅଛି ତାପଦେ ଶୃଙ୍ଖଳ ।
ମାନସୀକୁ ରଖି ପାଶେ, ଶେଲୀ ଚାହେଁ ପ୍ରେମର ବନ୍ୟାରେ
ଭସାଇ ଏ ରୁକ୍ଷଧରା, ଗଢ଼ିବ ତା' ସ୍ୱପ୍ନ ଅନୁସାରେ ।

କିନ୍ତୁ ଭାଙ୍ଗିଅଛି ସ୍ୱପ୍ନ— ମାନବର ଶୁଭ ଅଭିଳାଷୀ,
ମନୁଷ୍ୟର ହୀନତାରେ ନିକ୍ଷେପିତ, ସେ ସ୍ୱପ୍ନ-ବିଳାସୀ ।
ପକ୍ଷାହତ ପକ୍ଷୀ ପରି ଉଡ଼ିବାର ବାସନା ଶେଲୀର
ଅଧିକୁ ଅଧିକେ ବଢ଼େ, ହେଉ ପଛେ ବିକଳ ଶରୀର ।
ମେରୀ ମନା ନ ଘେନି ସେ କ୍ଷୁଦ୍ର ଏକ ସ୍ଲୁପ ତିଆରି,
ଅକୂଳ ବାରିଧି ବକ୍ଷେ ଦିନାକେତେ ହେଉଅଛି ପାରି ।
ସୁକୁମାର ତନୁ ତାର, ସନ୍ତରଣ ଜାଣେନା ତା' ବାହୁ,
ତଥାପି ସେ ଭୟହୀନ-ରୁଦ୍ର ପଛେ ହେଉ ସିନ୍ଧୁ ବାୟୁ,
କ୍ଷୁଦ୍ର ଟଳମଳ ନାବେ, ନିରୁଦ୍‌ବେଗେ ପଢୁଥାଏ ଶେଲୀ,
ବତାସି-ବ୍ୟାକୁଳ ଜଳେ କାବ୍ୟ ଅବା ଦରଶନ ମେଲି ।

ସେ ଦିନ ସେ ଯାଇଥିଲା ବନ୍ଧୁ ଲାଗି ଅର୍ଥ ଆନୟନେ
ଲେଗର୍ଣ୍ଣ ନଗରେ, ସେଇ କ୍ଷୁଦ୍ର ନାବେ; ମେରୀର ନୟନେ
ଆଶଙ୍କାର ବାଷ୍ପ ରଚି । ନ ଫେରୁ ସେ ଏତେ ଦୀର୍ଘ କାଳ,
ନିରଜନ ବେଳା ଗୃହେ ଉଦ୍‌ବିଗ୍ନ ମେରୀର ସଂସାର ।

(୨)

କ୍ରମେ କ୍ରମେ ଗଲା ଜଣା ମେରୀ ପାଶେ ଫେରିବାକୁ ତ୍ୱରା
ଲେଗର୍ଣ୍ଣୁ ଅବେଳେ ଶେଲୀ ମେଲିଦେଲା ତା' ନାବ ଦଦରା ।
ମଧ୍ୟପଥେ ସିନ୍ଧୁ ଝଡ଼େ କ୍ଷୁଦ୍ର ନାବ ଯାଇଅଛି ଦବି
ନିର୍ମମ ପ୍ରକୃତି ହାତେ ମରିଅଛି ପ୍ରକୃତିର କବି ।

ମେରୀ ବୁଲେ ଏଣେ ତେଣେ ସହଜେ ତା' ନ ହୁଏ ବିଶ୍ୱାସ,
ସତ୍ୟର ନିଷ୍ଠୁର ମୁଖୁ ପଳାୟନେ ତା' ମୂଢ଼ ପ୍ରୟାସ ।
ଏଣେ କିନ୍ତୁ ବେଳାଦେଶେ ଶବ ଏକ ଆସିବାର ଭାସି
ସମ୍ବାଦ ଆସିଲା କାନେ । ସତ୍ୟ-ମିଥ୍ୟା-ଦେଖା-ଅଭିଳାଷୀ,
ଟ୍ରେଲନି, ଶେଲୀର ବନ୍ଧୁ, ଥାନେ ଯାଇ ଓଟାରିଲେ ଶବ
ଜଳୁଁ ବେଳା-ବାଲୁକାରେ; ଯା' ଦେଖିଲେ ତାହା କି ସମ୍ଭବ ?
ଏହି କି ଶେଲୀର ଦେହ ? ଘୃଣ୍ୟ ମଢ଼ା ବୀଭତ୍ସ ଆକାର
ଅନାବୃତ ମୁଖ ହସ୍ତ ହୋଇଅଛି ମତ୍ସ୍ୟର ଆହାର ।

କିନ୍ତୁ ଏ ଶେଲୀର ଅଙ୍ଗା, ପକେଟ୍‌ରେ କୀଟ୍‌ସର କବିତା
ଇଟାଲିର ସମୁଦ୍ରରେ ଝଡ଼େ ବସି କିଏ ପଢ଼ିବ ତା ?
କିବା ମୃତ୍ୟୁ କି ଜୀବନର ! କି ଦେହର କିବା ପରିଣତି,
ଫୁଟନ୍ତା ଗୋଲାପ ଗୋରୁ-ଖାଦ୍ୟ କଲା ନିର୍ବୋଧ ପ୍ରକୃତି ।
ଶେଲୀର ସେ ନୀଳ ଆଖି ଗ୍ରୀଷ୍ମ-ନଭ ପରି ଯା ଗଭୀର
ତା'ର ସେ ଶରୀର-ଯଷ୍ଟି ଯହିଁ ଥିଲା ଶୋଭା କୁମାରୀର;
ଶେଷେ ସେ ସମୁଦ୍ର ପଙ୍କେ ହେଲା ଜଳ-ଜୀବର ଆହାର,
ହେବାର ଘୃଣିତ ମଢ଼ା, ହେଲା ରୂପ-ପୂଜା ପୁରସ୍କାର ।

ମନୁଷ୍ୟ କଲ୍ୟାଣ ପାଇଁ ଉତ୍ସର୍ଗିତ କଲା ଯେ ଜୀବନ
ଘରୁ ପିତାମାତା ତାକୁ, ଦେଶୁଁ ଜାତି କରିଲେ ତାଡ଼ନ ।
ବିତାଡ଼ିତ, ଆଘାତିତ ପ୍ରାଣୀ ପରି ସ୍ୱର୍ଗର ଏଞ୍ଜେଲ୍
ମଲା ଶେଲୀ ନିର୍ଯ୍ୟାତନେ, ପାଇ ପାଇ ମନୁଷ୍ୟର ଶେଲ ।

(୩)

ସବୁ କି ହୋଇଛି ବ୍ୟର୍ଥ,
ନାହିଁ ମୂଲ୍ୟ ଶେଲୀ-ଜୀବନର ?
କେ କହେ ତା ? ଶେଲୀ ରଖି—
ଯାଇନି କି କିଛି ଅନଶ୍ୱର ?

ସତ୍ୟ ନ୍ୟାୟ ଲାଗି ଏବେ ଯିଏ ଯହିଁ ହୁଏ ନିର୍ଯ୍ୟାତିତ,
ସେ ଏକ ଜୀବନ୍ତ ଶେଲୀ— ପ୍ରମିଥିଅସ୍ ଭୀତି-ବିବର୍ଜିତ ।
ତୁମେ ଶେଲୀ, ଦେଖାଇଛ କବି କିସ ହେବାର ଉଚିତ
କବି ଖାଲି ନ ରଚିବ ମଦ-ଓଠ-ସୁଆଦୀ ସଙ୍ଗୀତ ।

ବିଦ୍ରୋହୀ ସେ, ଜଗତର ଦୀନ ଦୁଃସ୍ଥ ଦଳିତର ବନ୍ଧୁ,
ତା' ଲେଖନୀ ଅଶ୍ରୁ ତେଜେ, ନେବ କେହ୍ନେ ଭାରା ଜନସ୍କନ୍ଧୁ ।
ସ୍ୱାର୍ଥହୀନ, ପାପହୀନ, ସତ୍ୟ-ସନ୍ଧ, ଉର୍ଦ୍ଧ୍ୱଗ ଜୀବନ,
ରୂପପାୟୀ, ପ୍ରେମମୟ, ନରେ-ଜୀବେ-ନିରତ-କରୁଣ ।
କବିର ଏ ଛବି ଶେଲୀ, ଦେଶେ ଦେଶେ ସାହିତ୍ୟେ ସାହିତ୍ୟେ,
ତୁମ ଲାଗି ବ୍ୟାପି ଅଛି, ଭାଷା ଆଉ ମାନବର ହିତେ ।
ତୁମ ଦୁଃଖ, ତୁମ କଷ୍ଟ, କ୍ରମେ କ୍ରମେ ଲଭେ ସଫଳତା,
ସେବର ନଗଣ୍ୟ ଶେଲୀ, ଆଜି ବିଶ୍ୱ-କାବ୍ୟର ଦେବତା ।

## ଉଦାସୀ ପାନ୍ଥ

ସେଦିନ ସେ ସନ୍ଧ୍ୟାକାଳେ ଆସିଲେ ଅତିଥି
ସରଳ, ସୁନ୍ଦର ଯୁବା, ସୁଠାମ ଗଠନ,
ନୟନେ ରହିଛି କୋଟି ଲୋଚନର ପ୍ରୀତି,
ଗୌର କରେ ଜଳୁଥିଲା ସୁବର୍ଣ୍ଣ କଂକଣ ।

ପାନ୍ଥଶାଳା କ୍ରୀତଦାସୀ— ସେବିକା ସବୁରି,
ଯେ ମାଗିଛି ସେବା ମୋର ଦେଇଛି ମୁଁ ତାରେ,
ନ ମାଗି କିଛି ସେ ପାନ୍ଥ, ନେଲେ ସବୁ ଜୁରି,
ଦେହ ତ ଇତରଙ୍କର— ସେ ନେଲେ ହିୟାରେ ।

ନ ମାଗି କିଛି ସେ ପାନ୍ଥ ଚଳିଲେ ସ୍ୱପଥେ,
ପାନ୍ଥଶାଳା ଦ୍ୱାର ଧରି ରହିଲି ଅନାଇଁ,
ବୁକୁ ମୋର ତାଙ୍କ ପଛେ ଗଲା ମନୋରଥେ,
ସର୍ବସ୍ୱ ଚରଣେ ଥୋଇ, ଆଣିବ ମଣାଇ ।

ସେ କି ଗୋ ଫେରିବା ଜନ ?— ଚଳିଲେ ସଧୀରେ,
କ୍ରୀତଦାସୀ ଅଶ୍ରୁ ରେଖା ଚୁମ୍ବିଲା ମହୀରେ ।

—

# ପ୍ରତ୍ୟାବୃତ୍ତା

କେମନ୍ତ ଆସିଲ ଫେରି ? ମଧୁ ଭାଣ୍ଡ ଧରି ପୁଣି ହାତେ ?
ଟିପରେ ସିନ୍ଦୂର ରଖି, ଦେବ ବୋଲି ନାଇ ମୋର ମାଥେ ?

କେତେ ଦୂରେ ଥିଲ ରହି, ଶୁଣିଛି ମୁଁ ଅଗମ୍ୟ ସେ ବାସ,
ଚନ୍ଦନେ ଭୁଜଙ୍ଗ ସମ ଘେରି ପରା ଥିଲେ ଗୋ ପ୍ରହରୀ,
କେମନ୍ତେ ଶୁଣିଲ ନାରୀ ଏ ଦୀନର କ୍ଷୁବ୍‌ଧ ଉଷ୍ଣ ଶ୍ୱାସ,
କେମନ୍ତେ ଜାଣିଲ ଯେତେ ହା-ହାକାର ଦିବସ ଶର୍ବରୀ ?
ଦକ୍ଷିଣା ପବନ ସଙ୍ଗେ ଯେତେ ମୋର ପ୍ରେରିତ ବାରତା

ରୁଦ୍ଧ ବାତାୟନ ଭେଦି ପଶିଲା ଗୋ କେହ୍ନେ ଅନ୍ତଃପୁରେ ?
ଏ ଶତ ଯୋଜନ ମଧ୍ୟେ କେମନ୍ତେ ଗୋ ବୁଝିଲ ମମତା,
ଅବ୍ୟକ୍ତ ପିପାସା ଯେତେ ବୁଝିଲ ବା କେହ୍ନେ ଏତେ ଦୂରେ ?

ପ୍ରହରୀର ଜାଲ ଭେଦି ଆସିଲ ବା ହେ ଭୀରୁ କେସନେ,
ପ୍ରଭାତେ ଯେ ଅପବାଦ ତା'ରେ କି ଗୋ ନ ହେଲା ସରମ ?
ମଧୁ ଭାଣ୍ଡେ ଥୋଇ ନାରୀ ଉତ୍ତରଇ ଅଧର କମ୍ପନେ,
'ତୁମରେ ଏ ମଧୁ ଦେଇ ଭୁଲିବି ମୁଁ ବ୍ୟଥାର ଚରମ ।'

# ବେଠିକ୍

ସମୟ ଦେଖି ସିନା କରମ କରାଯାଏ
ଆମୟ ଦେଖି ସିନା ଓଷଦ,
ରୁଚିକି ଚାହିଁ ସିନା ଭୋଜନ ଆୟୋଜନ
ପୀରତି ଦେଖି ପ୍ରାଣେ ଦରଦ ।
କିପରି ଏ ଜଗତ ବୁଝି ତ ନାହିଁ ହୁଏ
ଯେ କାଳେ ଯା ହେବାର ନୁହଇ,
ଜୋଛନା ରାତେ ପୁଣି ପୀରତି ନାହିଁ ମିଳେ
ତରୁଣ ନେତ୍ରୁ ଲୁହ ବହଇ ।

—

# ନାରୀ

ପ୍ରଥମେ ଜନନୀ ତୁମେ, ଧାତ୍ରୀ ଜଗତର
ଜଠରେ ବହିଛ ବିଶ୍ୱେ, ଶୋଣିତ ଦେହର
ଦେଇ ଏ ବିଶ୍ୱର ଅଙ୍ଗ ଗଢ଼ିଛ ଗୋପନେ
ପବିତ୍ର ଜଠର ତଳେ; ଅମୃତ କ୍ଷରଣେ
ବକ୍ଷର, ତା'ପରେ, ପ୍ରାଣ କରିଛ ସଞ୍ଚାର
ଧରଣୀର ଶିଶୁ ଦେହେ । କଲ୍ୟାଣ-ପ୍ରସାର
କରିଛ ଜୀବନେ ତା'ର କୋଳେ ଟାଣି ନେଇ
ବୁଲାଇ ମଙ୍ଗଳ କର,— ଯୁଗେ ଯୁଗେ ଏହି
ତୁମର ପାବନ ଲୀଳା । ତାପରେ ତରୁଣ
ବୟସର ବିକ୍ଷେ କରି ହୃଦୟ ଅରୁଣ
ତୁମରେ ବନ୍ଦଇ ଯେବେ, ସ୍ୱର୍ଣ୍ଣ ଦୁଇ କରେ
କଣ୍ଠ ତାର ଭିଡ଼ି ତୀବ୍ର ଅନୁରାଗ ଭରେ
'ତୁମରି ମୁଁ' କର୍ଣ୍ଣେ ଯେବେ ଅସ୍ଫୁଟ ବଚନେ
କହଗୋ ହୃଦୟ କଥା, ପୁରୁଷ ଜୀବନେ
ସେ ଏକ ମାହେନ୍ଦ୍ର ବେଳା; ଦୈବତ ମଙ୍ଗଳ
ସେଦିନ ପାର୍ଥିବ ପ୍ରାଣେ କରେ ଟଳମଳ ।
ଏ ପୁଣ୍ୟ ମଧୁର ଲୀଳା ଯୁଗେ ଯୁଗେ ତବ
ମଧୁମୟ କରିଅଛି ନର-ଅନୁଭବ ।

ପୃଥିବୀରେ ଗୃହଲକ୍ଷ୍ମୀ ରୂପେ ମାନବର
ନୀଡ଼ ତା'ର ଦିଅ ବାନ୍ଧି; ଦୁର୍ଦ୍ଧର୍ଷ ଶଙ୍କର
ପୁରୁଷରେ ଶାନ୍ତ କର ଗଭୀର ପ୍ରଣୟେ
ବାହୁ ଛନ୍ଦି କଣ୍ଠେ ତାର, ସକଳ-ସମୟେ
ଶୁଶ୍ରୂଷାକାରିଣୀ ତୁମେ, ତୁମର ପରଶ
ମାନବର ସଞ୍ଜୀବନୀ, ସମର-ଅବଶ
ପୁରୁଷ ଫେରିଛି ସଦା ସେବା ପାଇଁ ତବ
ତୁମ୍ଭର ମଙ୍ଗଳ କରୁ । ତ୍ୟାଗ-ଅନୁଭବ
ଚିରଦିନ ବକ୍ଷେ ତବ ପୁରୁଷର ଲାଗି,

ବିଧାତାର ପଦତଳେ ନିଅ ବର ମାଗି
ନିଜେ ଭୁଲି, ପୁରୁଷର ଅନନ୍ତ ମଙ୍ଗଳ,
ପୁତ୍ର-ସ୍ୱାମୀ-ଭାଇ-ପ୍ରିୟ ନିମିତ୍ତ ଉଚ୍ଛଳ
ବକ୍ଷ ତବ ସ୍ନେହ-ରାଗେ, ନୟନର ନୀରେ
ଜଗତର ଶୋକ-ତାପ ପୋଛି ଦିଅ ଧୀରେ
ସନ୍ତାପହାରିଣୀ ନାରୀ, ସନ୍ତାପ-ତପତ
ଦୁଃଖ-ଜରା-ପାପମୟ ମାଟିର ଜଗତ
ତୁମ ଲାଗି ସ୍ୱର୍ଗ ହୁଏ; ତେଣୁ ଆରାଧନା
ମାନବର ତବ ପଦେ; ଅନନ୍ୟ-ବାସନା
ତବ ରୂପ ବକ୍ଷେ ତାର; ତେଣୁ ଏ ସମ୍ମାନ
ମାନବର ସଭାଙ୍ଗନେ; ଦ୍ୱନ୍ଦ୍ୱ ଅଭିଯାନ
ତେଣୁ ସେ ପରମାନନ୍ଦେ ନେଇଅଛି ବରି
ତୁମଲାଗି; ରଣଭୂମେ ରକ୍ତସ୍ନାନ କରି,
ତେଣୁ ସେ ଫେରଇ ଗର୍ବେ ତବ ପଦତଳେ
ଦେବାକୁ ବିଜୟ-ଗର୍ବ; ତୁମର ମଙ୍ଗଳେ
ଅମଙ୍ଗଳ ଯାଏ ଭୁଲି; କଣ୍ଟକ ସୁମନ
ସମାନ ଚରିତ୍ର ତବ, ଜୀବନ ମରଣ
ଉଭୟର ଧାତ୍ରୀ ତୁମେ, ହେ ରହସ୍ୟମୟୀ,
କବି ନମସ୍କାର ତବ ପଦେ ସମର୍ପଇ ।

## ରୂପସୀର ପୂଜା

ଯାଉଁ ପଥେ ଭେଟିଲି ମୁଁ ସୁନ୍ଦରୀ ଷୋଡ଼ଶୀ,
ବକ୍ଷ ତେଜି ଝୁଲୁଥିଲା ନୀଳ ଉତ୍ତରୀୟ,
ଚରମେ ରୁଚିର ବେଣୀ ଦୋଳୁଥିଲା ଖସି
ବିଁଛାଇ ଚଞ୍ଚଳ ବାୟେ ସୌରଭ ଅମିୟ ।

ମୁଖେ ତାର ଦରହାସ, ବ୍ରୀଡ଼ାହୀନ ଲୀଳା
ଆୟତ-ଲୋଚନେ ତାର; ଚାହିଁ ପାନ୍ଥ ଜନେ
ସୃଜନର ରାଣୀପରି କଟାକ୍ଷେ ଛଇଲା
କହେ ଯେହ୍ନେ ନମିବାକୁ ତା' କାନ୍ତ-ଚରଣେ ।

ଆଡ଼ ହୋଇ ଗଲି ଚାଲି— ଦୀନ ହୀନ କବି,
କିବା ଆସେ ଯାଏ କା'କୁ ନମସ୍କାରେ ତାର ?
ଯାଉଁ କିନ୍ତୁ ଡାକିଲା ସେ— ''ଫେର ଅନୁଭବୀ,
ଚାଲିଯାଅ ? ତୁମପାଇଁ ଏ ଯେ ଅହଂକାର !''
''କି ସେବା ମୁଁ ପାରେ ଦେଇ ?''— ଉତ୍ତରେ ସୁନ୍ଦରୀ,
''ସୁନ୍ଦରୀ ବୋଲି ମୁଁ ଥରେ ଡାକ ବୀଣା ଧରି ।''

## ମହାଦାନ

(୧)

ପଥେ ପଥେ ଚାଲିଛନ୍ତି ଲୋକ,
ସମାରୋହେ ବାଜୁଅଛି ବାଜା,
ଆଜି ହେବ ଦରବାର, ଯହିଁ
ବିଜେ ହେବେ ନିଜେ ମହାରାଜା ।

ତେଣୁ ଏ ଯେ ବିପୁଳ ଜନତା,
ଉତ୍ସବର ଉଚ୍ଛଳ ପ୍ରକାଶ,
ସାଆଁତମାନଙ୍କ ସାଜସଜ୍ଜା,
ନାଗରିକ ଅଙ୍ଗେ ବେଶବାସ ।

ପଥେ ପଥେ ଚାଲେ ଗାଡ଼ି ଘୋଡ଼ା
ସଇନିକ, ଓଟ, ଗଜ, ରଥ,
ଆଡ଼ମ୍ବର ବିରାଜଇ ଆଜି
ନାନା ବେଶ ଧରି ରାଜପଥ ।
ପଥଧାରେ ଦୂରେ ଦୂରେ ବସି
ଶୂନ୍ୟ ଦୃଷ୍ଟି ଦେଇ ଜନତାରେ,
ଭିକାରିଏ ବସିଅଛି ମୌନେ
ଦୁଃଖ ତାର କହିବ କାହାରେ ?

ମାଗେନା ସେ ମାଣିକ ରତନ,
ହାତୀ ଘୋଡ଼ା, ସାମନ୍ତ-ବିଭୂତି,
ଏକ ମୁଠା ଅନ୍ନ ଖାଲି ମାଗେ,
ଟିକେ ନର ହୃଦ ଅନୁଭୂତି ।

ତଥାପି ତ ସୁନାରୁପା ଯହିଁ
ଗଡ଼ାଗଡ଼ି ହୁଏ ଅଯତନେ,
ସେହି ପଥଧାରେ ବସି ଭୋଖୀ
ପ୍ରାଣ ଦହେ ଅବ୍ୟକ୍ତ କଷଣେ ।

(୨)

ପଥଘାଟ ଶୂନ୍ୟକରି ଏବେ
ଯାଇଛନ୍ତି ରାଜା ମହାରାଜା
ସରିଲାଣି ଜନତାର ଧାର,
ବାଜୁନାହିଁ ସମାରୋହେ ବାଜା ।

ପଥେ ଚାଲେ ଏକଲା ଭିଖାରୀ
ଏକ ହାତେ ଧରି ଭିକ୍ଷା ଝୁଲି,
ଅନ୍ୟ ହାତେ ଅତି ଯତନରେ
ଧରିଅଛି ଅନ୍ନର ପୁଟୁଳି ।

କେତେ ପଥ ଘୁମି ଘୁମି ସେ ଯେ
ପାଇଅଛି ସେ ମୁଠିକ ଭାତ,
ଦୁଇ ଦିନ ଖାରା ଉପବାସୀ-
ଆଜି ତାର ମଙ୍ଗଳ ପ୍ରଭାତ ।

ଦେଖିଲା ସେ ପଥଧାରେ କିଏ
ବସିଅଛି ନୀରବ ବ୍ୟଥାରେ,
ଲୁହଭରା ଆଖି ଦୁଇ ତା'ର,
ହାତ ଅଛି ମଳିନ ମଥାରେ ।

ଧୀରେ ଧୀରେ ଏକଲା ଭିଖାରୀ-
ପାଶେ ତାର ଯାଏ ଅନ୍ନ ଧରି,
ପଚାରଇ 'କି ଦୁଃଖ ହେ ଭାଇ,
ଲୁହ କିପାଁ ଦିଶେ ଆଖି ଭରି ?

ବହୁ ଦିନୁ ଉପବାସୀ ପରି
ମୁହଁ କିପାଁ ଦିଶୁଛି ଶୁଖିଲା ?''
ସକରୁଣ ପ୍ରଶ୍ନେ ଉପାସୀର
ଆଖି ଲୁହ ଦ୍ୱିଗୁଣେ ବହିଲା ।

ବୁଝିଲା ତା ବଦାନ୍ୟ ଭିଖାରି
ଥୋଇ ତାର ଅନ୍ନର ପୁଟୁଳି,
ହାତ ଭିଡ଼ି ତାକେ ଭୁଞ୍ଜିବାକୁ
ଦୁହେଁ ମିଶି ସବୁ ଖେଦ ଭୁଲି ।

## ସୃଜନ-ସୂକ୍ତ

(ଋକ୍ ବେଦ, ଦଶମ-ମଣ୍ଡଳ)

ନଥିଲା ସତ୍, * ବା ଅସତ୍ ନଥିଲା
ନଥିଲା ଆକାଶ, ବାୟୁ ବା ତହିଁ
କିବା ଆବରଣ ? କେଉଁଠି ଅତଳ
ବାରିଥିଲା ? କିଏ ପାରିବ କହି ?
ମୃତ୍ୟୁ ନଥିଲା, ଅମୃତ କେହି
ନଥିଲେ, ନଥିଲା ରାତ୍ରିଦିନ;
ଥିଲେ ଏକ ସେହି ପ୍ରାଣବାନ୍ ଆପେ
ନାହିଁ ଥିଲା କିଛି ତା'ଠାରୁ ଆନ ।
ତମ ଥିଲା ନିଜେ ଆବୃତ ତମେ;
ସକଳ ବିରାଟ ବିଶୃଙ୍ଖଳା,
ଯାହା ଥିଲା, ସବୁ ନିୟମବିହୀନ;
ଅନୁଭବ ରସେ ଏକକ ହେଲା ।
ଜାଗ୍ରତ ହେଲା ତାପରେ କାମନା,
ବିଶ୍ୱ-ପ୍ରାଣର ଆଦ୍ୟ ବୀଜ,
ଋଷିଗଣ ଧ୍ୟାନେ ଅସତ୍ ଭିତରେ
ସତ୍‌ର ଜନ୍ମ କରିଲେ ହେଜ ।
ତାପରେ ପଡ଼ିଲା ବ୍ୟବଧାନ ରେଖା,
ଆଡୁଆଳ କରି ଉପର ତଳ
କିଥିଲା ଉପରେ ? କି ରହିଲା ତଳେ ?
ଧରାରେ ଜନନ ହେଲା ପ୍ରବଳ ।

[*ସତ୍— ଯାହା ଅଛି; ଅସତ୍— ଯାହା ନାହିଁ ।]

କିପରି ଏହାର ଜନ୍ମ ହୋଇଲା,
କିଏ ସେ କହିବ ତଥ୍ୟ କରି ?
ଦେବତା ସବୁ ତ ପରେ ହେଲେ ଜାତ,
କେ କହିବ ଏହା ହେଲା କିପରି ?
ଆଦ୍ୟେ ଯେ ଥିଲେ ସିଏ, ବା ଆନ କେ
ରଚିଲେ ବିରାଟ ଏହି ଜଗତେ ?
ନୟନ ଯାହାର ଦେଖଇ ବିଶ୍ୱ,
ସେ ଜାଣଇ ବୋଲି କିବା ପରତେ !

## ବିଶ୍ୱ–ଦେବାଳୟ

ଶୁଣିଲି ଏଇ ବିପୁଳ ବିଶ୍ୱ ପରେ
ବିରାଟ ଏକ ଦେଉଳ କାହିଁ ଠିଆ,
ଲକ୍ଷ ଲକ୍ଷ ଭକ୍ତ ଆତଯାତ,
ଅମୃତର ନିତ୍ୟ ଖିଆପିଆ ।
ଜିଜ୍ଞାସିଲି ତହୁଁ ମୁଁ ଅନେକ
ପାନ୍ଥ ଜନେ ଦେବାଳୟ କଥା,
କେଉଁଠି ଅଛି ? କେତେ ଦୂର ତା' ପଥ ?
କି ଅବା ରୂପ ପୂଜିତ-ଦେବତା ?
ଅନେକ ପାନ୍ଥ ବୋଇଲେ ବିସ୍ମୟେ,
''ଏପରି ଏକ ଦେଉଳ ଅଛି କାହିଁ,
ଶୁଣିତ ନାହୁଁ ପୂର୍ବେ କେଉଁଠାରେ,
ପାଗଳ କିଏ ଦେଇଛି ବତାଇ ।'
ଶେଷରେ ଏକ ଆସିଲେ ଭକ୍ତଜନ
ଦୃଷ୍ଟି ତାଙ୍କ ପଡ଼ିଲା ମୁଖେ ମୋର,
କହିଲେ ଆପେ, ''ଖୋଜୁଛ ବୋଧେ ପାନ୍ଥ,
ଧରଣୀ ପରେ ଦେଉଳର ଖବର !
ପାଉନ ଦେଖା ? ପାଇବ କେହ୍ନେ କହ,
ପାଷାଣେ ଗଢ଼ା ନୁହେଁ ତ ତାର ଦେହ,

ହସ୍ତ ଘେନି ନ ହୁଏ ତା' ପରିମାପ,
କ୍ଷୁଦ୍ର, ବିରାଟ ବିଚିତ୍ର ସେ ଗେହ ।
ଚରଣ ତଳୁ ଅନ୍ତରୀକ୍ଷ ଭେଦି
ମହାବ୍ୟୋମ ସ୍ପର୍ଶେ ସେ ଦେଉଳ,
ଏଇ ଯେ ଘାସେ ପୂଜାର ବେଦୀ ତାର,
ନକ୍ଷତ୍ରରେ ଆଲୋକିତ ତା' ଚୂଳ ।
ଅରୂପ ତହିଁ ଦେବତା ଅଛି ବସି
ଅଯୁତ ତା'ର ନେତ୍ର ସଦା ମେଲି,
ଏ କଥା କେବେ ନୋହିଛି ଶ୍ରୁତିଗତ—
ହତାଶେ ତହୁଁ ଆସିଛି କେହି ଫେରି ।
''ଖୋଜହେ ବାପ''– କହି ସେ ଭକ୍ତ ପାନ୍ଥ,
ଚକିତେ ଗଲେ ଜନଗହଳେ ମିଶି,
ଶୁଣିଲେ ନାହିଁ ଡାକିଲି ଯେତେ ଉଚ୍ଚେ,
ପାଇଲି ନାହିଁ ଖୋଜି ମୁଁ ଦଶଦିଶି ।
ଅଛଁ ପାନ୍ଥ ସେଦିନୁ ଅନ୍ୱେଷଇ
ଧରାରେ ସେହି ବିରାଟ ଦେବାଳୟ,
ଏ ଯାଏଁ ମୁଁ ତ ଦେଖିଲି ନାହିଁ ତାହା
ଖୋଜୁଛି ନିତ୍ୟ ପୂରାଇ କୁତୂହଳ ।
ତରଳ ଘାସେ ଅନାଇ ଚାଲେ ନିତି
ପରାଣ କଥା ଶୁଣାଇ କହେ ତାରେ,
ଅଦେହୀ ସେହି ଦେବତା ଶୁଣେ କାହୁଁ ?
ବଢ଼ଇ ବ୍ୟଥା ଲାଗଇ ମୋ ହିୟାରେ ।
ତଥାପି ନିତ୍ୟ ଖୋଜଇ ପାନ୍ଥ ମୁହିଁ,
ଅରୂପ ସେହି ଦେବତା ପୁରଦ୍ୱାର,
ଅତୁଷ୍ଟ ମୋର ପିପାସା ଅଛି ପ୍ରାଣେ,
ଦେଖିବି ଆଖେ, ଶୁଣିବି ବାକ୍ୟ ତାର ।

—

# ଧ୍ରୁବତାରା

ଧ୍ରୁବତାରା ଯଦି ନାହିଁ,
କେସନେ ଭୁବନ-ସାଗରେ ତରଣୀ ବାହି ?
କୂଳୁଁ ଯେବେ ମୋର ନଉକା ଫେଡ଼ିଲା ପାଲ
କନକ-ତପନୋଜ୍ଜ୍ୱଳ ଥିଲା ସେଇ କାଳ;
ମେଲିଲି ତରଣୀ ସୁଖେ ସଙ୍ଗୀତ ଗାଇ;
ଧ୍ରୁବତାରା ଏବେ କାହିଁ ?
କୂଳୁଁ ବହୁ ଦୂରେ ଆସିଛି ମୁଁ ଏବେ ଭାସି
ନୟନେ ପଡ଼ୁଛି ଖାଲି ନୀଳ ଜଳରାଶି,
ଭୂମି କାହିଁ ? କହ କେସନେ ମୁଁ ଦିଗ ପାଇ ?
ଧ୍ରୁବତାରା ଯଦି ନାହିଁ ?
ଲକ୍ଷ ତରୀ ତ ଯାଇଥିବ ଏହି ପଥେ
ସେହି ତାରାଟିର ବାଣୀହୀନ ସଙ୍କେତ,
ଲୁଚିଲା କି ସେ ଯେ କେବଳ ମୋହରି ପାଇଁ,
ଧ୍ରୁବତାରା ନାହିଁ, ନାହିଁ ।
ଉପରେ ଜଳଦ ଗର୍ଜନ ଘନ ଘନ,
ଗଭୀର ରାତ୍ରି, ଦୃପ୍ତ ପ୍ରଭଞ୍ଜନ,
ସ୍ରଷ୍ଟା ହେ କହ ଯାତ୍ରୀ ମୁଁ ଯାଏ କାହିଁ,
ଧ୍ରୁବତାର ଦେଖା ନାହିଁ !
ବିଚିତ୍ର ଏ ଯେ ବାହିବା ତରଣୀ ସାଗରେ,
ମରଣ ଚାଲୁଛି ଜୀବନ ଆଗରେ ଆଗରେ
ଏଡ଼େ ମରଣକୁ ଯାତ୍ରୀ ତାରାରେ ଚାହିଁ,
ସେହି ତାରା ଆଜି କାହିଁ ?
କିବା ଅପରାଧ ମୂର୍ଖ ନାବିକ କଲା,
ସକଳର ତାରା ତାହା ଲାଗି ଲୁଚିଗଲା;
ସାଗରର ରାଜା, ପଚାରିଲେ କହେ ନାହିଁ,
ମହା ଦରିଆରେ ଧ୍ରୁବତାରା ଗଲା କାହିଁ ?

—

## ଉପହସିତ

ହସିବେ ଲୋକେ ସିନା
କରିବେ ଥଟ୍ଟା
ଜାଣିଲେ ତୁମ-ମୋର ଗୋପନ-କଥା ।
ଅଗଣ ଭୁବନର ରାଜାଧିରାଜ ତୁମେ
ମୁହିଁତ ହୀନ ଧୂଳି କଣାରୁ
ତପନ ତାରା ତବ ଚରଣେ ନମେ,
କ୍ଷୁଦ୍ର ନାହିଁ କେହି ମୋଠାରୁ;
ଏଥେ କି ସମ୍ଭବେ ପରାଣ-ବିନିମୟ
ପରାଣ ପରାଣରେ ପ୍ରଣୟ-ଘଟା ?
ଜାଣେ ମୁଁ ପ୍ରାଣେ ପ୍ରାଣେ ଦୀନତା ମୋର ସ୍ୱାମୀ,
ମୋହର ତୁମଠାରୁ ଦୂରତା;
ତଥାପି କିପାଇଁ ଯେ ବ୍ୟାକୁଳ ଦିନ-ଯାମୀ
ପାଇବି ବୋଲି ତବ ମମତା !
ଧୃଷ୍ଟ ଭାବ ଏହି କ୍ଷମିବ କିଏ ?
କରିବେନି କି ଲୋକେ କଥାରେ ଥଟା ?
ତେଣୁ ହେ ରାଜରାଜ କରଇ ନିବେଦନ
ପାଏ ବା ନାହିଁ ତବ ପ୍ରସାଦ,
ପ୍ରୟାସ ଲାଗି ମୋର ହସନ୍ତୁ ନାହିଁ ଜନ,
ପୂରୁ ନ ପୂରୁ ପଛେ ମୋ ସାଧ ।
ବିଫଳ ହେବା ଆଗୁ ହୋଇବା ଲୋକହସା,
ଅକିଞ୍ଚନ ପ୍ରାଣେ ପରମ ବ୍ୟଥା ।

## ଭଗ୍ନ ମନୋରଥ

ଏଇ ମାତ୍ର ଏ ପ୍ରଭାତେ ପାଇଛ ଯୌବନ
ହେ ବରବର୍ଣ୍ଣନୀ,
ହୋଇନି ନୟନ-ଯୁଗ ପୀରତି-ବିଲୋଳ
ଆୟତ-ଈକ୍ଷଣୀ ।

ଶାସିବାର ଶିଖି ନାହିଁ ଯୁବକର ହିୟା
ଗୋଟିଏ କଟାକ୍ଷେ,
ଚାଲିବାର ନୟନାନ୍ତ ଚକିତ ସରମେ
ପ୍ରଣୟୀ ସମକ୍ଷେ ।
ରଞ୍ଜି ନାହିଁ ଶୁଭ୍ର ପଦ ଅଳତାର ରାଗେ
ହେ ନବଯୌବନା,
ବକ୍ଷେ ନାହିଁ ପୁଷ୍ପମାଳା, କରି ନାହିଁ ଚାରୁ
କବରୀ ରଚନା ।
ଅଙ୍ଗେ ଅଙ୍ଗେ ଆସି ନାହିଁ ଗୁରୁ ସେ ବିଳାପ
ଅଳସ ବେଦନା,
କୁମ୍ଭକାଖେ, ନତମୁଖେ, ଧୀର ପଦେ କେହ୍ନେ
ଚାହିଁବା ଜାଣନା ।
ଜାଣିନା ପୁଣି ଗୋ ବାଳା ଚାଳିବା ଚରଣ
ଅଭିସାର ପଥେ,
କବି ତେଣୁ ଫେରିଚି ଗୋ କୁଞ୍ଜବନ୍ନୁ ତବ
ଭଗ୍ନ ମନୋରଥେ ।

## ଭଗିନୀ

ସଞ୍ଜ ହେଲା ଯେ ଏବେ, ଦୂର ସେ ଗ୍ରାମେ
ବଧୂଏ ଧରି ସଞ୍ଜ-ବଳିତା ବାମେ
ତୁଳସୀ ମୂଳେ ଥୋଇ, ଢାଳି ପ୍ରଣତି
ମାଗୁଥିବେ ପ୍ରଣୟୀ-ଜନ ସୁଗତି-ଯେ ।

ଅପା କି କରୁଥିବ, ସାନବୋହୂ ସେ
ବଳିତା ଦେବନି ତ ସରମ ବଶେ ।
ତୁଳି ମୁହଁରେ 'ନିଆଁ ଗୁଞ୍ଜାଇ ଧୀରେ'
ଶମାଉଥିବ ଦୁଃଖ ନୟନ ନୀରେ ଯେ ।

ପତି ତା' କାହିଁ ଦୂରେ, ଦୂରେ ମୁଁ ଭାଇ
କୋଳ-ଦୁଲାଳ ଦୁଷ୍ଟ ଗାଆଁ ଭାଙ୍ଗଇ
ପଦପଦକେ ଖଞ୍ଜା ଜାଆ-ଗଞ୍ଜଣା
କାହିଁଛି ତା' ଦୁଃଖର ଆହା କଳନା ଯେ ।

ବଡ଼ କଷ୍ଟରେ ଭାଷା ଲେଖିଥିଲା ସେ
''ମୁଁ କିରେ ତୋର ଆଉ ମନେ ନଆସେ
ମଲି କି ଗଲି ବୋଲି ପଚାରିଲୁନି
କେତେ ଏମିତି ତୋର'ଛନ୍ତି ଭଉଣୀ ରେ ।

ଏଥର ଧନ ପରା ଆସିବୁ ନିଜେ
କେତେ ତ କହିଲୁଣି 'ଯିବି ମୁଁ ପଛେ'
ଏଥର ତୋର ବାଟ ରହିଲି ଚାହିଁ
ଭାଇଟି ପରା ଆଶା ଭାଙ୍ଗିବୁ ନାହିଁ ରେ ।''

ଯାଇ ମୁଁ ପାରିଲିନି, ନାହିଁ ପାଥେୟ
କହିଲେ ଏହା କାଳେ ମଣିବ ହେୟ,
ଏହା ବିଚାରି, ଲେଖି ଆନ ପ୍ରକାରେ
ଗଲିନି, ଢାଙ୍କିବାକୁ ମୋ ଦୀନତାରେ ଯେ ।

ପାଇ ସେ ଭାଷା ଫାଟିଥିବ ହୃଦୟ
'ତୁ ପୁଣି ହେଲୁ ଧନ ଏତେ ନିର୍ଦ୍ଦୟ-
ବୋଲି,' ନୟନୁ ବୋହିଥିବ ଲୋତକ
କାନିତିନ୍ତାଇଥିବ ତିକ୍ତ ଉଦକ ଯେ ।

ଭାବି ସେ ଥିବ ପିଠା ଦେବାର ବାଢ଼ି
ଗାଧୋଇ ଦବା ପାଣି କୂଅରୁ କାଢି
ଶୁଖାଇ ଦେବା ଲୁଗା କାଚି ଯତନେ
ସବୁ ତା ଆଶା ଭାଙ୍ଗିଥିବ ତକ୍ଷଣେ ଯେ ।

ଗାଆଁର ଯେତେ ବୋହୂ ଭାର ତାଙ୍କର
ଭାଇଏ ଆଣି ପାଉଥିବେ ଆଦର
ମୁଁ ତ ଗଲିନି; ଅପା ଡୀଇରେ ଚାହିଁ
ବୁକୁ ଫଟାଉଥିବ ଲୁହ ଝରାଇ ଯେ ।

ଦେବତା ଅଛ କିଏ ପୋଛ ପରାହେ
ଅରକ୍ଷ ଦୀନଦୁଃଖୀ ନୟନ-ଲୁହେ
ମୋହୋର ହୋଇ ପୋଛି ଦିଅ ତା' ପାଣି
କହ ମୋ ଛାର ଲାଗି ନୋହୁ ବାୟାଣୀ ସେ ।

---

# ହେମଶସ୍ୟ

## ଭୂମିକା

'ହେମଶସ୍ୟ' ବୋଧହୁଏ ୧୯୩୨ରେ ପ୍ରଥମେ ମୁଦ୍ରିତ ହୋଇଥିଲା । ଲେଖକର କେତେକ କଲେଜ-ସହପାଠୀଙ୍କଦ୍ୱାରା ଗଠିତ 'ପ୍ରଗତି-ସଂଘ' ଏହାର ପ୍ରକାଶକ ହୋଇଥିଲେ ।

ପରେ 'ଷ୍ଟୁଡେଣ୍ଟସ୍ ଷ୍ଟୋର୍' ପ୍ରଥମ-ମୁଦ୍ରଣର ହେମଶସ୍ୟକୁ ମଧ୍ୟ ଅବିକଳ ସେହିପରି ପ୍ରକାଶ କରିବାର ଚେଷ୍ଟା କରିଥିଲେ; କିନ୍ତୁ ସେଥିରେ ଏତେ ପରିମାଣରେ ମୁଦ୍ରଣ-ଦୋଷ ଦେଖାଦେଇଥିଲା ଯେ ତାହାର ପ୍ରଚାର ବନ୍ଦ କରି ଦିଆଯାଇଥିଲା ।

ଇତି ମଧ୍ୟରେ ଆଦିମ 'ହେମଶସ୍ୟ' ଖଣ୍ଡିଏ କାହିଁ ଦେଖିବାକୁ ମିଳିଲା ନାହିଁ । ବହୁକାଳ ଧରି ବହୁ ଲୋକଙ୍କୁ ଅନୁରୋଧ କରାହୋଇଥିଲା, ଖଣ୍ଡିଏ କପି କାହୁଁ ଆଣିଦେବାକୁ । କିନ୍ତୁ କିଛି ଦିନ ତଳେ ଔପନ୍ୟାସିକ ରାଜକିଶୋର ପଟ୍ଟନାୟକଙ୍କ ବାଣୀ-ମନ୍ଦିରରେ ଦିନେ ସନ୍ଧ୍ୟାରେ ଏଇ କଥା ପକାଉ ପକାଉ ତାଙ୍କର ବାଣୀବିନୋଦିନୀ ଭଗିନୀ ଶ୍ରମତୀ ବସନ୍ତ କୁମାରୀ ପ୍ରାଚୀନ 'ହେମଶସ୍ୟ' ଓ 'ପ୍ରେମଶସ୍ୟ' ଉଭୟ ପୁସ୍ତକରୁ ଖଣ୍ଡେ ଖଣ୍ଡେ ଆଣି ମୋ ଆଗେର ଥୋଇଦେଲେ । ବିସ୍ମିତ ହେବାକୁପଡ଼ିଲା; କିନ୍ତୁ ଯେହେତୁ ସେମାନଙ୍କର ପ୍ରଯତ୍ନ-ସଂରକ୍ଷଣ ଯୋଗୁଁ ହିଁ ଏଇ ନୂତନ ମୁଦ୍ରଣ ସମ୍ଭବ ହେଲା, ଲେଖକ ସେଥିପାଇଁ ସେମାନଙ୍କୁ ତାର କୃତଜ୍ଞତା ଜଣାଉଛି ।

ବହୁ ଦୁର୍ଦ୍ଦିନ-ସଙ୍କଟ-ସଙ୍କୁଳ ଏକ ଜୀବନରେ ଏହି କବିତାଗୁଡ଼ିକ ଆଶାଦାୟୀ ରବି-ରଶ୍ମି ବା ଦାହ-ଶୀତଳକାରିଣୀ ଜ୍ୟୋତ୍ସ୍ନାର ଏକ ଏକ କ୍ଷଣସ୍ଥାୟୀ ଝଲକ ପରି ବୁଝିବାକୁ ହେବ । ମନୁଷ୍ୟ ଯାହା ପାଇବାର ସ୍ୱପ୍ନ ଦେଖେ, ତାହାରି ହିଁ ବର୍ଣ୍ଣନା ହୁଏତ କବିତା । ହେମଶସ୍ୟ ତ ଦୂରର କଥା, ଲେଖକର କୁଟୀରରେ ସାଧାରଣ ଖାଦ୍ୟ ଶସ୍ୟର ଅଭାବ ହିଁ ଲାଗିରହିଛି । ସେଇ ଚିରନ୍ତନ ଅଭାବ, ସେଇ ଅପ୍ରାପ୍ତତା ସ୍ୱପ୍ନ ରଚିଛି 'ହେମଶସ୍ୟ'ର, ହୁଏତ ନିଜର ଚିରଚୂର୍ଣ୍ଣିତାଶ ଜୀବନଟାକୁ ସାର୍ଥକତାର ବନକ ଦେବାପାଇଁ । ଏଇ ସ୍ୱପ୍ନର ଯେ କି ମୂଲ୍ୟ ଜୀବନରେ, ପ୍ରସିଦ୍ଧ ଇଂରେଜି କବିତା ସଂଚୟନ ପଲ୍‌ଗ୍ରେଭ୍‌ଙ୍କର 'ସ୍ୱର୍ଣ୍ଣ-ଭଣ୍ଡାର'ରେ ସ୍ଥାନପାଇଥିବା ଜଣେ ଇଂରେଜ କବିଙ୍କର ଗୋଟିଏ ଛୋଟ କବିତାରେ ତାହା ମଞ୍ଜୁଳ ଭାବରେ ପ୍ରକାଶିତ ହୋଇଛି । କଲେଜରେ ପଢ଼ିବାବେଳୁ ତାହା ମନରେ ଅଛି । କବିତାଟି ଏଇ—

Jenny kissed me when we met
Jumping from the chair she sat in;
Time, you thief, who love to get
Sweets into your list, put that in

Say I'm weary, Say I'm sad,
Say that health and wealth have missed me
Say I'm growing old, but add,
Jenny kissed me !

J. H. Leigh Hunt

ଅନୁବାଦ—
ଦେଖାହେଲେ ଜେନୀ ଚୌକିରୁ ଉଠି,
ଚୁମ୍ବି ଆଦର ଢାଳିଲା ଯାହା,
ହେ କାଳ, ସକଳ ସୁଧା ଜୀବନର
ଚୋରାଅ ଯେ, ଲେଖ ଚିଠାରେ ତାହା ।
କହ ତମେ ଆଜି ଅବସନ୍ନ ମୁଁ,
ନିରାଶ, ନି-ଧନ, ସ୍ୱାସ୍ଥ୍ୟ ଢିଲା,
ବୃଦ୍ଧ ବା କହ, କିନ୍ତୁ କହ ହେ,
ଜେନୀ ଦିନେ ମତେ ଚୁମ୍ବିଥିଲା ।

ଜୀବନ-ସଂଗ୍ରାମରେ କ୍ଷତ-ବିକ୍ଷତ ଏଇ ଲେଖକ ଆଜି ସମାନୁଭବୀ ଇଂରେଜ କବି ...ଲି ହଣ୍ଟଙ୍କ ପରି ହୁଏତ ସ୍ୱାଭାବିକ ଭାବରେ ପଚାରୁଛି ଜୀବନରେ ଜୟ କା'ର – ଦୁର୍ଦ୍ଦିନ, ଦୁର୍ଭାଗ୍ୟ, ଦୁର୍ବିପାକ, ଦୁର୍ଭିକ୍ଷର ନା ଅକିଞ୍ଚନ କୁଟୀରରେ ହେମଶସ୍ୟର ସ୍ୱପ୍ନର ?

—ଲେଖକ

[ପ୍ରଥମ ସଂସ୍କରଣର ଭୂମିକା]

# ଅନୁରୋଧ

ଚତୁର୍ଦ୍ଦଶ-ପଂକ୍ତିର ଲେଖା ହେଲେ ହେଁ ଏହି କବିତାଗୁଡ଼ିକ ସନେଟ୍ ନୁହେଁ । ରଙ୍ଗ-...ନିଅର ଗୋଲାପର ଭଉଣୀ ପରି ଦେଖାଗଲେ ହେଁ ଗୋଲାପ ବା ଗୋଲାପର ଜ୍ଞାତି ମଧ୍ୟ ନୁହେଁ । ଏ ସେହିପରି । କେବଳ ଛୋଟ ଛୋଟ ଭାବକୁ ପ୍ରକାଶ କରିବା ପାଇଁ ଛୋଟ ଅଥଚ ପରିପୂର୍ଣ୍ଣ ପରିଧିଟିମାନ ଆବଶ୍ୟକ ହେବାରୁ ଏହି ଚତୁର୍ଦ୍ଦଶ-ପଂକ୍ତିକା ବୃତ୍ତର ଆଶୟ ନେବାକୁ ...ହେଲା, ଯେପରି ଆମେ ଛୋଟ ଫୁଲଗଛ ଲାଗି ମାଟିର କୁଣ୍ଡ ଆବଶ୍ୟକ କରୁ ।

– ଲେଖକ

## କଳ୍ପଲତା

ଶେଷ ହେଲା ଏ ଜୀବନେ ଦୁର୍ଭାଗ୍ୟ ତାଡ଼ନା,
ଦୁର୍ଗତିର କଶାଘାତ । ନିଖିଳ ବାସନା
ସହସା ମୋ ହେଲା ପୂର୍ଣ୍ଣ । କୁଟୀର ପ୍ରାଙ୍ଗଣେ
ଦୁର୍ଦ୍ଦିନ-ତିମିର ନିଶା ତଳେ ସଂଗୋପନେ
ପ୍ରଣୟର କଳ୍ପଲତା ଉଠିଅଛି କାହୁଁ
ମଞ୍ଜରୀ-ସ୍ତବକ-ନମ୍ରା । ମୋ କୁଟୀର ବାୟୁ
ପରିପୂର୍ଣ୍ଣ ତା' ସୌରଭେ; ପଦ-ମୂଳେ ତା'ର
ଉପବେଶି ବ୍ୟକ୍ତ କଲେ ହୃଦ-ବାସନାର,
ଝରଇ ପ୍ରତ୍ୟେକ ପଦୁଁ ଆନନ୍ଦ-ଜାହ୍ନବୀ,
ପିଏ ଯା' ମୁଁ ଅନୁପମ ସୁଖ ଅନୁଭବି
ମୋ ନିଖିଳ ଇନ୍ଦ୍ରିୟରେ । ସେ ଚିତ୍ର-ବଲ୍ଲରୀ
ଲତାଇ ନିଖିଳ ଅଙ୍ଗେ ଆଶୀର୍ବାଦ ପରି
ସଂଚାରଇ ପ୍ରାଣେ ମୋର ଅନନ୍ତ କଲ୍ୟାଣ
ଅତୀନ୍ଦ୍ରିୟ କରେ ଚିତ୍ତ; ବୁଦ୍ଧ କରେ ପ୍ରାଣ ।

## ପୌରୋହିତ୍ୟ

ପବିତ୍ର ବୈଦିକ ମନ୍ତ୍ର ଋତ୍ୱିକ ଉଚ୍ଚାରି
କୁଶ-ଘାସେ ଦୁଇ-ହସ୍ତ ବାନ୍ଧିଲା, ସଞ୍ଚାରି
ଚେତନା ଯୁଗଳ-ବକ୍ଷେ । ମଙ୍ଗଳ-ବେଦୀରେ
ଉଠେ ପୂତ ହୋମ-ଧୂମ ଭରି ଉଷ୍ଣ-ନୀରେ
ପ୍ରିୟାର ଆୟତ ନେତ୍ରେ, ଶିଶିର -ସିଞ୍ଚିତ
ନୀଳୋତ୍ପଳ ସୁଷମାରେ କରି ପରାଜିତ ।
ସରଳା ବାଳିକା-ବଧୂ ଅପରିଚିତର
କି ଅବା ଜାଣିଛି ସେ ଗୋ ? ସ୍ନେହ-ପ୍ରଣୟର
କିବା ତା'ର ଅଭିଜ୍ଞତା ? ଦ୍ୱିଜ ବାବଦୂକ
କି ଜାଣି ବାନ୍ଧୁଛି ବାତ ? ରହି ମୌନ-ମୂକ
ବାଳିକା ଶୁଣିଛି ଖାଲି ମନ୍ତ୍ର ଅର୍ଥହୀନ,

ବ୍ୟଥିତା କିପାଇଁ କରେ ନୟନ ମଳିନ
ବେଦୀ-ଧୂମ ! ବକ୍ଷେ ବକ୍ଷେ, ବାହ୍ୟ ଉପଚାର
କରି କି ପାରିବ ସୂକ୍ଷ୍ମ ପ୍ରଣୟ ସଂଚାର ?

## ଅଙ୍ଗୀକାର

ହୋମ-ବହ୍ନି, ବେଦମନ୍ତ୍ର, ଦୂର୍ବା କୁଶପାଶ
ନିମିତ୍ତ ସେସବୁ ମାତ୍ର; ପ୍ରଣୟ ବିକାଶ
ତରୁଣ ପ୍ରାଣରେ ହେବ ସେସବୁ ଘେନିକି;
ଅର୍ଥ-ଗ୍ରାହୀ ଦ୍ୱିଜ ନିକି ଯୋଡ଼ିବ ବେନିକି ?
ଭାଗ୍ୟବାନ୍ ମୁଁ ପ୍ରଣୟୀ, କୁଶ-ବନ୍ଧନର
ପୂର୍ବରୁ ବନ୍ଧନ ବରିଥିଲି ଦୃଢ଼ତର—
ବାଳିକାର ସ୍ନେହ-ପାଶ । ତେଣୁ କୁଶପାଶେ
ଭାବିଲି ମୁଁ ଅବଶେଷେ ଆଜି ଏ ପ୍ରକାଶେ
ସେ ପ୍ରାଚୀନ ଇତିହାସ; ସର୍ବ ସମକ୍ଷରେ
ପ୍ରଚାରଇ ପୁରୋହିତ ଅବୋଧ ମନ୍ତ୍ରରେ
ବନ୍ଧନ ଆମ୍ଭର ନ୍ୟାଯ୍ୟ । ପୁଣ୍ୟ ହୋମାନଳ
ସାକ୍ଷ୍ୟଦିଏ ଖାଲି ଆମ୍ଭ ପ୍ରେମ, ସମୁଜ୍ଜ୍ୱଳ
କେହ୍ନେ ସତ୍ୟ-ଅଙ୍ଗୀକାରେ । ବିବାହ-ସମ୍ଭାର
ପ୍ରଚାର କରୁଛି ଖାଲି ସେହି ଅଙ୍ଗୀକାର ।

## ବିଦାୟ

ଉତ୍ସବ ହୋଇଲା ଶେଷ, ଫେରିବେ ବାନ୍ଧବେ,
ସଖା-ସାଥୀ ଫେରିବାକୁ ପ୍ରସ୍ତୁତ ନୀରବେ
ନିଜ ନିଜ ଯାତ୍ରା-ପଥେ; ବାନ୍ଧବୀ ଗୋ ଆସ
ଯିବ ପରା ଗୃହ ତେଜି ଦୂର ପରବାସ ?
ପିତୃଜନେ ସାଶ୍ରୁନେତ୍ରେ ଦେଇଣ ବିଦାୟ
ଆଶିଷ ତାଙ୍କର ମାଗି ହେବାକୁ ସହାୟ
ନବୀନ ଜୀବନ-ପଥେ, ଆସ ସଖି ଧୀରେ

ନିନାଦିତ ଶଙ୍ଖ-ରୋଳ । ପୋଛ ଅଶ୍ରୁନୀରେ
ମତେ ସେ ଯେ ଅପମାନ । ତବ ଅଙ୍ଗୀକାର
ଦେଇଅଛି ମତେ ସିନା ପୂର୍ଣ୍ଣ ଅଧିକାର;
ନହେଲେ କିପାଇଁ କହ ନିଅନ୍ତି ଛଡ଼ାଇ
ତୁମରେ ଜନନୀ-ହସ୍ତୁ ? କପୋଳ ତିନ୍ତାଇ
ସୁନ୍ଦର ନ ଦିଶେ ଯାତ୍ରା; ଏ ଗୁରୁ ବିରହ
ଦେଖାଇ ଦୃଶ୍ୟ ମୁଁ ଆସ କରିବି ସୁସହ ।

## ଚିଲିକା

ରହରେ ଆଗ୍ନେୟ ରଥ, ଦେଖିବ ସୁନ୍ଦରୀ
ତା' ନୀଳଲୋଚନେ; ନୀଳ-ଚକ୍ରବାଳ ଧରି
ନୀଳ ଜଳରାଶି କେଡ଼େ ଉନ୍ମୁକ୍ତ ଶୋଭାରେ
ଉତାନେ ରହିଛି ଶୋଇ । କାନ୍ତ କବିତାରେ
ରୂପାରାଧୀ ରାଧାନାଥ ରାୟ କବିବର
ବର୍ଣ୍ଣିଛନ୍ତି ଶୋଭା ଏହି ରୂପସୀ ହ୍ରଦର,
ପଢ଼ିଛି ସେ କାବ୍ୟ ପ୍ରିୟା-ତେଣୁ କୁତୂହଳ,
ରହ ରଥ, ଦୀର୍ଘ ନେତ୍ର କରି ଦୀର୍ଘତର
ଦେଖୁ ଶୋଭା ମୋ' ପ୍ରେୟସୀ; ତା' ନୀଳନୟନ
ହ୍ରଦ-ନୀଳିମାରେ ମିଶୁ । ଆକାଶ-ଗଞ୍ଜନ
ତା' ନେତ୍ର ପ୍ରଶାନ୍ତ-ଜ୍ୟୋତି ଶାନ୍ତ ହୋଇ କ୍ଷଣେ
ହ୍ରଦ-ବକ୍ଷେ ମିଳିଯାଉ ପ୍ରକୃତି-ପୂଜନେ
ପ୍ରକୃତି-କୁମାରୀ ଏହି କ୍ଷୁଦ୍ର ରୂପସୀର
କୌତୂହଳ ନିକି ଶ୍ରେଷ୍ଠ ବଚନୁଁ କବିର ?

## ଗତି-ପଥ

ବାମେ ନୀଳ ଜଳରାଶି, ଏ ପାଖେ ସୁନ୍ଦରୀ
ଗିରିମାଳା, ଘନୀଭୂତ ନୀଳାମ୍ବର ପରି
ଉଭା ଦେଖ ଭୀଷ୍ମ-କାନ୍ତ । ଟଙ୍କ ଭୂମି ପରେ
କୃଷକ-କୁଟୀର ମାଳା ଉଦ୍ୟାନ ଗହଳେ

ବିରାଜିତ ସ୍ଥାନେ ସ୍ଥାନେ । ଭେଦି ଲୋକାଳୟ,
ଭେଦି ଧାନ୍ୟ-କ୍ଷେତ୍ରମାଳା କୃଷକ- ଆଶୟ
ମନ୍ଦିର, ନଗର, ହାଟ, ନଦୀ, ଗ୍ରାମପଥ
ଧାଇଁଅଛି ତୀର ସମ ଏ ଆଗ୍ନେୟ ରଥ
ଅପେକ୍ଷା ନ କରି କାରେ । ଦୃଶ୍ୟ ସମ୍ମୁଖର
ତୁରିତେ ପଶ୍ଚାତେ ଯାଏ ପ୍ରକୃତି ସ୍ଥାବର
ଗତି ଲଭି ବିପରୀତେ ଧାଏଁ ମହା ରବେ
ନିକଟ ହେଉଛି ଦୂର ଦେଖ ଲବେ ଲବେ ।
ସାଥେ ସାଥେ ଛନ୍ତି କିନ୍ତୁ ସଖା ସଖୀ ପରି
ପାଶକେ ସଲୀଳ-ଲୀଳା, ପାଶକେ ଶିଖରୀ ।

## ନବଦୃଷ୍ଟି

ଏ ମାନ ଦେଖିଛି ସଖି, ବାରବାର କରି,
ତୁମ୍ଭ ସଙ୍ଗେ ଲାଗେ କିନ୍ତୁ ଆଜି ନୂଆ ପରି ।
ତୁମ୍ଭ ଘେନି ହେଲା ମୋର ଆଜି ଜନ୍ମାନ୍ତର,
ମୁକ୍ତ ସବୁ ବାତାୟନ ଦଶ ଇନ୍ଦ୍ରିୟର
ପିବନେ ଜୀବନ-ରସ । ନବୀନ ପ୍ରଣୟ
ନବ-ଦୃଷ୍ଟି ଦିଏ ନେତ୍ରେ; ନିରାନନ୍ଦ ମୟ
ଧରଣୀ, ଲାଗଇ ମତେ ଆନନ୍ଦ-ସଂସାର
ପ୍ରାଣହୀନ ପ୍ରକୃତିରେ ଚୈତନ୍ୟ ସଞ୍ଚାର
ଦେଖୁଛି ପ୍ରଥମ କରି । ତେଣୁ ଏ ଶିଖରୀ,
ଏ ହ୍ରଦ, ଏ ନଦୀ ବନ, ଦ୍ୱୀପ ଗିରିଦରୀ,
ବହୁ-ପରିଚୟେ ଆଜି ନବ-ପରିଚୟ
ଦିଅନ୍ତି ସଖି ଗୋ ମତେ । ବିବାହ-ବିଜୟ
ଅବଜ୍ଞାତ ପ୍ରକୃତିରେ ପ୍ରିୟ କରେ ଆଜି
ଅନୁଭୂତିମୟ କରେ ବନ ଗିରି-ରାଜି ।

---

## ପ୍ରିୟ ଭୂମି

ଓହ୍ଲାଇ ଏ ଅଗ୍ନି-ରଥୁ ଯିବ ସେହି ଦେଶେ
ବିସ୍ତୀର୍ଣ୍ଣ, ପ୍ରକୃତି ଯହିଁ ଦିଗମ୍ବର ବେଶେ
ବୃକ୍ଷହୀନ-ହେମକାନ୍ତ-ସିକତା ବିସ୍ତାରେ
ମହୋଦଧି ତଟ-ପ୍ରାନ୍ତେ । ସିନ୍ଧୁ-ସିକତାରେ
କ୍ରୀଡ଼ନ୍ତି ନିଶୀଥେ ତହିଁ ଜଳକନ୍ୟାଗଣ
କିଆକୁଞ୍ଜେ ଲୁଚକାଳି, କୋମଳ ଚରଣ
ବୁଡ଼େ ନାହିଁ ବାଲୁକାରେ । ବର୍ଷାରମ୍ଭେ ତହିଁ
ପୁନ୍ନାଗ କୁସୁମ ଗନ୍ଧ ପ୍ରାଣଦିଏ ଦହି
ବିରହୀ ତରୁଣଙ୍କର । କ୍ଷୁବ୍‌ଧ ପାରାବାର
ଢ଼ାଳେ ଚୂର୍ଣ୍ଣ-ମଣି-ଚୂଡ଼ ଦୀର୍ଘ ଊର୍ମିବାର
ସେ ଭୂମିର ପଦତଳେ; ତା ଗୁରୁଗର୍ଜନ
ରଚେ ତହିଁ ଶାଶ୍ୱତିକ ମୃଦଙ୍ଗ ଘୋଷଣ ।
ସେହି ଭୂମେ ମୋ କୁଟୀର; ସେ ଦେଶ-କୁରଙ୍ଗୀ
ଚାଲ ସଖି, ତୁମ୍ଭଠାରୁ ଶିଖିବେ ଭ୍ରୂଭଙ୍ଗି ।

## ବଧୂ-ପ୍ରବେଶ

ଗୃହେ ବଧୂ-ବୃନ୍ଦ-ମୁଖେ ଶୁଭ ହୁଳହୁଳି,
ଗ୍ରାମଦାଣ୍ଡେ ଶୁଭ ଶଙ୍ଖ, ମଙ୍ଗଳ ମହୁରି,
ଦ୍ୱାରେ ତୁଙ୍ଗ ବାଦ୍ୟରୋଳ, ଚନ୍ଦ୍ରାତପ ତଳେ
ପ୍ରଦୀପ୍ତ ଆଲୋକ ପାଶେ ମହା କୋଳାହଳେ
ଆଣିଲେ କୁଟୁମ୍ବଜନେ ବାହି ନବବଧୂ
ଦରିଦ୍ର କୁଟୀର ଦ୍ୱାରେ । କ୍ଷୁଦ୍ର ଦୁଇ ପଦୁ
ଆଲକ୍ତ-ରକ୍ତିମ ଶୋଭା ନିଃସରି ତାହାରି
ପ୍ରାଣହୀନ ମୃତ୍ତିକାରେ ଜୀବନ-ସଂଚାର
ସହସା କରିଲା କ୍ଷଣେ । ପଟ୍ଟ-ପରିହିତା,
ନିଖିଳ କନକ-ଅଙ୍ଗେ ଭୂଷଣ-ଭୂଷିତା,

ମସ୍ତକେ ସନ୍ଦୂର ବିନ୍ଦୁ, ନୟନେ କଜ୍ଜଳ,
ଚଉପାଶ କବରୀର ସୌରଭେ ଉଚ୍ଛଳ—
ପ୍ରବେଶନ୍ତେ ଧୀରେ ବଧୂ କୁଟୀରେ ଆମ୍ଭର
କଲ୍ୟାଣେ ହସିଲା ଯେହ୍ନେ ଗୃହର ଚତ୍ୱର ।

## ଯୁଗଳ-ଜୀବନ

ଯେଉଁଦିନୁ ଏ କୁଟୀରେଁ ବଧୂ ଆଗମନ
କଲ୍ୟାଣ ଉଠୁଛି ଫୁଟି; ଯୁଗଳ ଜୀବନ
ପଦେ ପଦେ ଦାରିଦ୍ର୍ୟରୁ ଆଣୁଛି ନିଗାଡ଼ି
ପରମ ଆନନ୍ଦ-ରସ । ପ୍ରିୟା ଆଣେ କାଢ଼ି
ଦିନର ପ୍ରତ୍ୟେକ କର୍ମୁ ସମ୍ଭୋଗ-ସମ୍ଭାର
ପ୍ରଣୟ-କାଉଁରି-ସ୍ପର୍ଶେ । ମୋ ସୁପ୍ତ ଆତ୍ମାର
ଅନାହତ ବହୁ ତନ୍ତ୍ରୀ ତା' ଅଙ୍ଗୁଳି -ଘାତେ
ବାଜିଉଠି ମନୋହର ସଙ୍ଗୀତ-ସଂଘାତେ
ଝଙ୍କୃତ କରୁଛି ପ୍ରାଣ, ଚିତ୍ତ ରସମୟ,
ବିତ୍ତମୟ ମୋ ଜୀବନ । ପବିତ୍ର ପ୍ରଣୟ,
ନିରନ୍ତର ଇଚ୍ଛା କରି ସୁଖ ଅନ୍ୟୋଽନ୍ୟର
ପଦେ ପଦେ ପରାଜୟ ଦେଖେ ଅଭାବର,
ଅଭାବୁ ଆନନ୍ଦ ସୃଜେ । ଦରିଦ୍ର କୁଟୀର
ସ୍ୱର୍ଗ ଆଜି ପ୍ରେମ ଲଭି ପ୍ରଣୟବତୀର ।

## ପ୍ରେମ-ସ୍ପର୍ଶ

ସେଦିନ, ନୀରବ-ଶାନ୍ତ ନିଶୀଥ ବଲଭୀ,
(ପରିପୂର୍ଣ୍ଣ-ଆଲୋକିତ, ଚନ୍ଦ୍ର-କର ଲଭି)
ସହସା କାହାର ମୃଦୁ କଙ୍କଣ-ଝଙ୍କାରେ
ହୋଇଲା ଝଙ୍କୃତ ଧୀରେ ! ଚକିତ-ପ୍ରକାରେ
ଚାହୁଁ ମୁଁ, ନୟନ ମୋର ବନ୍ଦୀ ହେଲା କ୍ଷଣେ

କାହାର ଶ୍ରୀକର-ପତ୍ରେ; କନକ କଙ୍କଣେ
ଗଣ୍ଡେ ମୋ ନିହିଣ ଦାଗ, କର୍ଣ୍ଣେ କେ ପୁଚ୍ଛିଲା
'କିଏ କହ' 'କିଏ କହ', ଶ୍ରବଣେ ପଶିଲା
ସେ ମଧୁ ଅସ୍ଫୁଟ ଧ୍ୱନି ମର୍ମ-ପଥେ ମୋର,
ପରିଚିତ ସ୍ପର୍ଶ, ଆଉ ପରିଚିତ ସ୍ୱର
ସାହସ ଆଣିଲା ବକ୍ଷେ । କର ନେଇ ଟାଣି,
ଧୀରେ ସେ ସୁନ୍ଦର ମୁଖ ବକ୍ଷେ ରଖି ଆଣି,
ଆଘ୍ରାଣିଲି ପୁଷ୍ପ-ଗନ୍ଧୀ ମଞ୍ଜୁଳ କବରୀ
ଏକଇ ଆଘ୍ରାଣେ ପାହିଗଲା ବିଭାବରୀ ।

## ସରମ

ସେଦିନ ପୂର୍ଣ୍ଣମା ନିଶା;— ରଜତ-ଶର୍ବରୀ
ହସୁଥିଲା ଧରଣୀର ସର୍ବାଙ୍ଗ ଆବରି;
ଅର୍ଦ୍ଧ-ରାତ୍ରେ ବଳଭୀରେ ଶୀତ-ସମୀରଣେ
ସହସା ଭାଙ୍ଗିଲା ନିଦ୍ରା । ଧବଳ ଶୟନେ
ଶାୟିତା ମୋ ଶଯ୍ୟା-ପାର୍ଶ୍ୱେ ଦେଖିଲି ତୁମରେ,
(ପ୍ରବାଳ ଲତିକା ସମ ସିନ୍ଧୁ ସୈକତରେ)
ହେଳାରେ ହୋଇଛି ବ୍ୟସ୍ତ ବାସ ଶ୍ରୀଅଙ୍ଗର—
ଅନାବୃତ ସ୍ୱର୍ଣ୍ଣ ଦେହ । ଶୁଭ୍ର ଚନ୍ଦ୍ର-କର
ନିର୍ବିନ୍ଦେ ଚୁମ୍ବୁଛି ସର୍ବ ଦେହ ମୁଖ ଦେଇ
ପ୍ରେମାର୍ଦ୍ର ପ୍ରଣୟୀ ସମ । ଅଙ୍ଗେ କର ଦେଇ
ଜାଗ୍ରତ କରିଲି ଧୀରେ । ତନ୍ଦ୍ରା ଅବସାନେ
ଗଭୀର ସରମ ଲାଜେ, ଗୁରୁ ଅଭିମାନେ,
ଭର୍ତ୍ସନା କରିଲ ମତେ— "ଛି ଛି ନିର୍ଲଜ୍ଜତା
ଅର୍ଦ୍ଧରାତ୍ରେ ନିଦ୍ରା ତେଜି ଏ କି ପୁରୁଷତା !"

—

## ପ୍ରକୃତିର ଦୌତ୍ୟ

ପୂର୍ବଦିନୁ ହୋଇଥିଲା ପ୍ରଣୟ କଳହ
ପୋଡୁଥାଏ ହୃଦ-ସାରା ନିର୍ମମ ବିରହ;
ସେ ଦିନ ଆସିଲା ବର୍ଷା । ମଧୁର ଝଂକାର
ସୃଜି ଅନମ୍ବରେ, ଗୁରୁ ପ୍ରାବୃଟ ଆସାର
ପଡ଼ିଲା ରଜତ ଧାରେ । ନୁହେଁ ଦିନ-ରାତି,
ଛାୟାମୟ ଏ ପ୍ରକାର କାଳ ରଚି, ଛାତି
ଉନ୍ମନା କରିଲା ବର୍ଷା । ପ୍ରତି ମୁହୂର୍ତ୍ତରେ
ଅନୁତାପ କଲି, କିପାଁ ପ୍ରିୟା ସଙ୍ଗତରେ
କଳହ କରିଲି ମୁହିଁ । ଏକାଳେ ପ୍ରେୟସୀ
ମୁଖ ନୋଇଁ, ସରମରେ ହସି-ଓ ନ-ହସି,
ଆସିଲେ ମନ୍ଦିରେ ମମ, ବସିଲେ ସଧୀରେ ।
କହିଲି ମୁଁ ହସି ତହୁଁ- 'ଦରିଦ୍ର କୁଟୀରେ
ଶ୍ରୀପଦ ପଡ଼ିଲା କିପାଁ ?' ପ୍ରିୟା ତହୁଁ କହେ—
'ବରଷା ଭାଙ୍ଗିଲା ମୋର ଗର୍ବ ଏ କଳହେ ।'

## ବସନ୍ତ-ଅଭିସାର

ବସନ୍ତ ଆସିଛି ପ୍ରିୟେ, ପର୍ଣ୍ଣାଞ୍ଚଳ ଟାଣି
ମଞ୍ଜୁଳ କୋକିଳ-କଣ୍ଠେ ଫିଟାଇ ତା ବାଣୀ,
ଅଙ୍ଗେ ଭରି ପୁଷ୍ପଭାର, ସର୍ବାଙ୍ଗେ ସୁରଭି
ଡାକୁଛି କୁଟୀରାଙ୍ଗନେ— 'ଉଠ ଉଠ କବି,
ଭୋଗକର ବାର୍ଷିକ ଏ ମୋର ଅଭିସାର
ଭୁଲିଯାଅ ଦୁଃଖ ଶୋକ ।' ମୁଗ୍ଧ ନମସ୍କାର
କଲି ମୁଁ ଅତିଥି-ବରେ; ତା'ପରେ ଭାଷିଲି
ମଳୟର କାନେ କାନେ- 'ବନ୍ଧୁ ସାଥେ ମିଳି
ଆଜିକ ରଜନୀ ଏହି ଆମ୍ର କୁଞ୍ଜତଳେ
ଯାପିବ କି ବନ୍ଧୁ ମୋର ? ମୁଗ୍ଧ କୁତୂହଳେ
ଦେଖିବ ସଲଜ୍ଜ ଲୀଳା ସୁନ୍ଦରୀ ପ୍ରିୟାର,
ସାର୍ଥକ ହୋଇବ ଶ୍ରମ ।' ମଳୟ-ସ୍ୱୀକାର
ମର୍ମର ରଚିଲା ଧୀରେ ଆମ୍ରକୁଞ୍ଜ ପରେ
ବସନ୍ତ ଧଇଲା ବୀଣା କୋକିଳ-କଣ୍ଠରେ ।

# ରୂପାଲୋକ

ପ୍ରଦୀପ ଜଳୁଛି କିପାଁ ? ଲିଭାଅ ତାହାରେ
ତବ ରୂପ-ଶିଖା ଜଳୁ ଘନ ଅନ୍ଧକାରେ ।
ଠିଆ ହୁଅ କକ୍ଷ ମଧ୍ୟେ, ଧୀରେ ଧୀରେ ଧୀରେ
ଅଙ୍ଗ ଆବରଣ, ଅଙ୍ଗ ତେଜି ଏ ମହୀରେ
ପଡୁ ଶାନ୍ତ ଊର୍ମି ସମ । ସ୍ଫୁଟିତ ପୁଷ୍ପରେ
ବୃନ୍ତ-ଆବରଣ ଦେଇ ମୂର୍ଖତା କେ କରେ
ଦେଖିଛ କେଉଁଠି ସଖି ? ହୁଅ ଦିଗମ୍ବରୀ
ମେଘ-ମୁକ୍ତ ଉଷା ସମ । କ୍ରୀତଦାସ ପରି
ପରାଜୟ ଲଭି ରୂପ-ଆଲୋକେ ତୁମ୍ଭର
ଅନ୍ଧକାର, ଯତ୍ନ କରୁ ଦେବାକୁ ଅମ୍ବର
ତୁମ୍ଭର ନିଖିଳ ଅଙ୍ଗେ । ଲଜ୍ଜା ଯେବେ ଆସି
ସହସା କହିବ କର୍ଣ୍ଣେ– 'ହାୟ ମତ୍ତକାଶି,
ଏ କି କଲ !'– ଆସ ପାଶେ ତୁରିତ ଗମନେ
ଆଶ୍ରୟ ତାହାରେ ଦେବି ସ୍ନେହ-ଆବରଣେ ।

# ହେମନ୍ତ-ପ୍ରଭାତ

ହେମନ୍ତ ପ୍ରଭାତ କାଳ; ନବୋଦିତ ରବି
ସୃଜିଅଛି ସ୍ୱର୍ଣ୍ଣକରେ ଅନୁପମ ଛବି
ଶ୍ୟାମଳ ପ୍ରକୃତି ଅଙ୍ଗେ । ବନସ୍ପତି ଶିରେ
ସ୍ୱର୍ଣ୍ଣ ଆବରଣ ସମ ପଡ଼ିଛି ରୁଚିରେ
କୋମଳ କନକ-ରଶ୍ମି । ନିମ୍ନେ ଧରାତଳେ
ଅୟୁତ ଶିଶିରବିନ୍ଦୁ ମୁକ୍ତା ସମ ଥରେ
ଶ୍ୟାମ ଘାସ ପତ୍ରେ ପତ୍ରେ; ତଥି ରବିକର
ପଡ଼ି କାହିଁ ପ୍ରତ୍ୟେକରେ ସୃଜିଛି ସୁନ୍ଦର
ଇନ୍ଦ୍ରଧନୁ ବର୍ଣ୍ଣୋତ୍ସବ । ପ୍ରଶାନ୍ତ ଗଗନ,
ଶାନ୍ତ ସୁଶୀତଳ ବାୟୁ; ଅଦୂର କାନନ
ଝଙ୍କାରିତ ହୁଏ ଖାଲି କରୁଣ ରୋଦନେ
ବିରହିଣୀ କପୋତୀର । ଏକାଳେ ସଦନେ
ପ୍ରବେଶିଲା ସଦ୍ୟସ୍ନାତା ପ୍ରେୟସୀ ମୋହର
ଭାବିଲି ସେ ଏକ ଅଂଶ ସ୍ୱର୍ଣ୍ଣ ହେମନ୍ତର ।

—

## ବସନ୍ତ ଭିକ୍ଷା

ମଧୁ ନିଶିଥିନୀ ଏହି, ଚନ୍ଦ୍ରିକା ଚକିତ
ଧରଣୀର ଧୂଳି ଦେହ ମୁଗ୍ଧ ପୁଲକିତ
ଜୋଛନାର ଯାଦୁ ସ୍ପର୍ଶେ । ବନସ୍ପତି ରେଖା
କ୍ଷୀଣ ପାଣ୍ଡୁ ଆବରଣେ ଦୂରୁ ଯାଏ ଦେଖା
ମାୟାର କାନନ ସମ । ଆମ୍ରକୁଞ୍ଜ ତଳେ
ତିଳତଣ୍ଡୁଳିତ ଛାୟେ ପାଛ କାହିଁ ଚଳେ
ନୀରବେ ବଦନ ପୋତି; ମନ୍ଦ ସମୀରଣେ
ନାରୀକେଳ ଉଚ୍ଚ ଶିଖା ମୃଦୁଳ କମ୍ପନେ
ଥରି ଉଠେ ଜ୍ୟୋସ୍ନା ତଳେ । କ୍ଷୁବ୍‌ଧ ଚକ୍ରବାକ
ଦୂରୁ ଡ଼ାକେ ଥରେ ଥରେ ତା' ବିରହଯାକ
ଏକାନ୍ତ କରୁଣ ସ୍ୱରେ । ପ୍ରଣୟୀ ଯୁଗଳ
ଏକାଳେ ଆକାଶ ତଳେ ହୋଇ ଲଗ୍ନ-ଗଳ
ପ୍ରଣମିଲୁଁ ବସନ୍ତରେ, ବୋଲି– 'ହେ ସାମନ୍ତ,
ଜୀବନ ଆମ୍ଭର ହେଉ ଅଚ୍ଛିନ୍ନ ବସନ୍ତ ।'

## ସୋହାଗ

ମୋ ପ୍ରିୟ ଉତ୍କଳ ଭାଷା ତୁମ୍ଭ ମୁଖେ ସଖି
ପ୍ରିୟତର ଲାଗେ କର୍ଣ୍ଣେ । ତୁମ୍ଭ କୋଳେ ରଖି
ଏ ମସ୍ତକ, ଚାହେଁ ଯେବେ କନକ-କପୋଳେ
ବାସନାର ଅଗ୍ନି-ଶିଖା ଯହିଁ ନିତ୍ୟ ଜ୍ୱଳେ,
ତୁମ୍ଭେ ଦୃଷ୍ଟି ନତ କରି ମୋ ନେତ୍ରେ ମିଳାଅ,
ଦୀର୍ଘଶ୍ୱାସେ ବକ୍ଷ-ହାର ମଞ୍ଜୁଳେ ଦୋଳାଅ,
ନାସାର ପ୍ରଶ୍ୱାସ-ଧାରେ ଉଷ୍ଣ କର ଭାଲ
ସ୍ନେହେ ମୋର କେଶେ, ଧୀରେ ଅଙ୍ଗୁଳି ସଞ୍ଚାଳ
ଶେଷେ ଯେବେ ମୁଖ ମୋର ଊର୍ଦ୍ଧ୍ୱେ ନେଇ ତୋଳି
ଦିଅ ଓଷ୍ଠେ ଚିର-ପ୍ରିୟ ସେ ଚୁମ୍ବନ ବୋଲି,

ସହସା ଭୁଲଇ ମୁହିଁ କଠିନ ସଂସାର,
ଲାଞ୍ଛନା ଓ ଦୁର୍ଭାଗ୍ୟର ନିଷ୍ଠୁର ପ୍ରହାର,
ଦେବତାର ମହାପ୍ରାଣ ପଶେ ଏ ଶରୀରେ
ଚେତନା ମୋ ଅତୀନ୍ଦ୍ରିୟ ହୁଏ ଧୀରେ ଧୀରେ ।

## ନାରୀ

ତୁମ୍ଭର ପ୍ରଣୟ ଦାନେ ବୁଝିଛି ପ୍ରଥମେ
ନାରୀର ମହିମା ସଖି । ନଉଁଛି ସରମେ
ମୋହର ପୁରୁଷ ଗର୍ବ ତବ ପଦତଳେ
ମନ୍ତ୍ର-ଶାନ୍ତ ସର୍ପ ସମ । ତବ କଟାକ୍ଷରେ
ଉଦ୍ଦାମ ବାସନା ମମ ମାନି ପରାଭବ
ହେଲା ଶାନ୍ତ-ସଙ୍କୁଚିତ । ମଧୁସ୍ପର୍ଶେ ତବ
ପ୍ରସୁପ୍ତ ପୁରୁଷ-ଆତ୍ମା-ମନ୍ଦାକିନୀ ଜଳ
ଉଚ୍ଛ୍ୱାସେ ଉଠିଛି ବହି; ଶାସନେ ତୁମ୍ଭର
ଜାଗ୍ରତ ଦେବତା ମୋର ହୃଦ-ସିଂହାସନେ
ବହୁଦିନ ସୁପ୍ତି ପରେ । ପ୍ରତି କ୍ଷଣେ କ୍ଷଣେ
ବୀର କରି ପଠାଉଛି ଜଗତର ରଣେ
ପ୍ରୀତିର କବଚ ଦେଇ, ଫେରିଲେ ମୋ ବ୍ରଣେ
ପୋଛୁଚ କଲ୍ୟାଣ ସ୍ପର୍ଶେ । ତୁମ୍ଭର ପ୍ରଣୟ
ଦେଲା ମୋତେ ନାରୀତ୍ୱର ସତ୍ୟ-ପରିଚୟ ।

## ସାଧନା

ମୋ ଶୋଣିତ-ବିନ୍ଦୁ ଦେଇ ତବ ଅଶ୍ରୁ-ବିନ୍ଦୁ
ପୋଛିବି ବାସନା ମମ । ପାରହୀନ ସିନ୍ଧୁ
ପାର ହେବି ତବ କଣ୍ଠେ ମୁକ୍ତା ଦେବା ଲାଗି
ବିନତ ଅଞ୍ଜଳି ପୁଟେ; ମୁଗ୍ଧ ଅନୁରାଗୀ
କରିବି ଚରଣ-ପ୍ରାନ୍ତେ ପ୍ରେମ ଆରାଧନା

ସ୍ମୃତିର ନୈବେଦ୍ୟ ଦେଇ । ଯେତେକ ବାସନା
ହୋଇବ ଜାଗ୍ରତ ତବ କ୍ଷୁଦ୍ର ବକ୍ଷତଳେ
ସେ ସବୁର ସଫଳତା ତବ ପଦ ପରେ
ନିବେଦିବି ଆଣି ସଖି ପ୍ରାଣ-ପାତ କରି
ତୁମ୍ଭର ଆନନ୍ଦ ଲାଗି । ପଦ ତବ ଧରି
ମୋ ଶୋଣିତ-ଅଲକ୍ତକ ଅଙ୍ଗୁଳିରେ ମମ
ଆଙ୍କିବି ନିବିଷ୍ଟ ମନେ । ହେ ପ୍ରିୟ ନିର୍ମମ
ତାପରେ ବିନୀତ ନେତ୍ରେ କରିବି ଜିଜ୍ଞାସା
'କହ ଦେବି, ପୂରାଇବି ଆଉ କିବା ଆଶା !'

## ବିଜୟିନୀ

କାହାର ହୃଦୟରକ୍ତ ଅଲକ୍ତକ କରି
ଚରଣ ରଞ୍ଜିଛ ସଖି ? ବାନ୍ଧିଛ କବରୀ
କା'ର ଦୀର୍ଘ ମନୋରଥେ ? ଗର୍ବିତ ଝଂକାରେ
କା'ର ଚିର ପରାଜୟ, କଙ୍କଣ ପ୍ରଚାରେ
ନିଖିଳ ଜଗତ ଭରି ? ଉରଜ ବନ୍ଧୁର
କାହାରେ ଅବଜ୍ଞା କରି ଚିର ଊର୍ଦ୍ଧ୍ୱ-ଚୂଳ
ଅନୁପମ ଅହଙ୍କାରେ ? କର୍ଣ୍ଣ-ପୁଷ୍ପ ଦ୍ୱୟ
କନକ କୁଳନେ ଘୋଷେ ମଙ୍ଗଳ ବିଜୟ
କେଉଁ ଧୃଷ୍ଟ ଆସ୍ପର୍ଦ୍ଧାର ? ମଞ୍ଜୁଳ କବରୀ
କେଉଁ ଜୟ ଘୋଷଣାରେ ଦେଇଅଛ ଭରି
ଚମ୍ପକ ମଞ୍ଜରୀ ମାଳେ ? ଅୟି ବିଜୟିନୀ
କିଏ ସେ ନିରୀହ ଶତ୍ରୁ ?
— ମୁହିଁ ? ଏ କିଙ୍କିଣୀ
ମୋହରି ବିଜୟେ ବାଜେ ? ତେବେ ପରାଜୟ
ବରିନେଲି, ତୋ' ଗୌରବ ହେଉ ବିଶ୍ୱମୟ ।

—

# ଦାନ-ପ୍ରତିଦାନ

ଆଭରଣ ଅଙ୍ଗୁ କାଢ଼ି ଗୁଞ୍ଜିଦେଇ ହାତେ
ଦିନେକ କହିଲା ପ୍ରିୟା ଦରିଦ୍ର ପ୍ରଭାତେ
''ଏ ସ୍ୱର୍ଣ୍ଣ ଭୂଷଣ ମୋର ତବ ଦୁଃଖ ନାଶେ
କିଛିତରେ ଲାଗିଥାଉ'' ।– ନାରୀର ସେ ଭାଷେ,
ପ୍ରିୟାର ସେ ଅନୁରୋଧ ନମିତ ନୟନେ,
ଚପଳାର ଆଶଙ୍କିତ ନୀରବ କଙ୍କଣେ,
ମୋ ପୁରୁଷ- ଅହଙ୍କାର ଦ୍ରବିଲା କ୍ଷଣକେ,
ଅସମ୍ଭାଳେ ତାହାରେ ମୁଁ ଧରିଲି ଏ ବକ୍ଷେ ।
ସହସା ନୟନୁ ମୋର ଉଷ୍ଣ ନୀର ଝରି
ତିନ୍ତାଇଲା ପ୍ରିୟା-ଗଣ୍ଡ; ବିମୁଗ୍ଧା ସୁନ୍ଦରୀ
ସମ୍ଭାଳି ନପାରି ସ୍ନେହ, ବକ୍ଷେ ମୋର ଥରି
ବିଳପିଲା କାରୁଣ୍ୟରେ । ଦୃଢ଼େ ତାରେ ଧରି
ପୋଛିଲି ତା' ଅଶ୍ରୁରେଖା,– କହିଲା ସେ ତହୁଁ,
'ପ୍ରତିଦାନ ଦେଲ ଯେ ଗୋ, ମୋ' ଦାନ ନ ନେଉ' ।

# ବିଦ୍ରୋହ

ଶୟନେ ଦିନେକ ପ୍ରିୟା ସ୍ୱର୍ଣ୍ଣ-ବାହୁ ତାର
ନିହି ମୋର ବକ୍ଷେ, କରି ଶୀତ୍କାର ସଞ୍ଚାର
ଶ୍ରୁତିମୂଳେ ଲଗାଇ ତା' ଓଷ୍ଠ ମନୋରମ
କହିଲା ବିଦ୍ରୋହ-ବାଣୀ– 'ହେ ମୋର ପରମ,
ଗୃହକୋଣେ ଶେଷ କିହେ ହେବ ମୋ ଜୀବନ,
ନାରୀତ୍ୱର ସାର୍ଥକତା ? ସ୍ୱାର୍ଥର ପୋଷଣ,
କ୍ଷୁଦ୍ରତାର ଆରାଧନା, ପତ୍ନୀର ବନ୍ଧନ,
ନାହିଁ ଲାଗେ ଭଲ ମତେ । ମୁକ୍ତି ଆସ୍ୱାଦନ
ପ୍ରାଣ ମୋର ନିତ୍ୟ ଚାହେଁ, ଗୃହ ବୃହତ୍ତର
ମୋହର ନାରୀତ୍ୱ ମାଗେ, ନିଖିଳ ଦେଶର
ସେବିକା ହେବା ମୋ ଇଚ୍ଛା ଦିଅ ଅନୁମତି ।'

'ବାହୁ ଛିନ୍ନ କରି ଯାଅ ଦେଲି ମୁଁ ସମ୍ମତି'
କହିଲି ପ୍ରିୟାରେ ହସି । ଶୁଣି ତାହା ପ୍ରିୟା
'କି କହ' 'କି କହ' କହି ଯୁକ୍ତ କଲା ହିୟା ।

## କ୍ରମଶଃ

ପ୍ରଥମେ ନଥିଲା ସ୍ନେହ, ପରେ ପରିଚୟ
ଅଙ୍କୁରିତ କଲା ହୃଦେ । ପୂର୍ବର ସଂଶୟ
ଧୀରେ ଧୀରେ ସ୍ଥାନ ଦେଲା ନବ ବିଶ୍ୱାସରେ
ଉପେକ୍ଷା ହୋଇଲା ଶେଷ କ୍ରମଶଃ ସ୍ନେହରେ ।
ମନେଅଛି ମୋର ପ୍ରିୟେ ପ୍ରଥମ ସମୟେ
ଶଙ୍କିତ ଚରଣ କ୍ଷେପେ, ଅର୍ଦ୍ଧ-ପରିଚୟେ
ଦ୍ୱିଧା-ଜଡ଼ ସମ୍ଭାଷଣେ, ଆସ ଅଭିସାରେ
ନିଶୀଥେ ମନ୍ଦିରେ ମମ । ନୀରବ ନିଶାରେ
କ୍ରମେ କ୍ରମେ ପରିଚୟ ହେଲା ପରସ୍ପରେ
ବର୍ଦ୍ଧିଷ୍ଣୁ ବିଶ୍ୱାସ ସହ । ହେଲା ଅନ୍ୟୋଽନ୍ୟରେ
କ୍ରମେ କ୍ରମେ ପରିପୂର୍ଣ୍ଣ ଆତ୍ମ-ସମର୍ପଣ
ପରମ ନିର୍ଭର ସହ । ସଲଜ୍ଜ ଭାଷଣ
ଫଳେ ଆଜି ଅବଶେଷ; ଆଜି ବିନିମୟ
ମୁଖର ପ୍ରଣୟ ସାଥେ, ମୁଖର ପ୍ରଣୟ ।

## ଯୋଗ୍ୟତା

'ହେ କବି, ହେ ବିଜ୍ଞ ପ୍ରିୟ'— ଭାଷିଲା ପ୍ରେୟସୀ
'ମୁଁ କ'ଣ ତୁମର ଯୋଗ୍ୟା ? ତୁମ ଆଗେ ବସି
ଗାଇ ତ ପାରିବିନାହିଁ କର୍ଣ୍ଣରସାୟନ
ସଙ୍ଗୀତ, ବିପଞ୍ଚି ଧରି; ଅପ୍‌ସରୀ-ନର୍ତ୍ତନ
ନାଚି ତବ ରୂପ-କ୍ଷୁଧା ତୋଷିବି କିପରି
ସେ କଳା ଜାଣେ ମୁଁ ନାହିଁ । ତୃପ୍ତି ଦେଲା ପରି
ରୂପ ବା କି ଅଛି ମୋର ? ମୂର୍ଖ ପଲ୍ଲୀବାଳା

ଲେଖି ନାହିଁ ଜାଣେ ପତ୍ରେ ପ୍ରଣୟର ଜ୍ୱାଳା
ରସିକା ଲେଖିବେ ଯେହ୍ନେ । ହାୟ ପ୍ରିୟତମ,
କାହିଁକି ଘେନିଲ ମତେ ?'– କନକ ଚରମ
ସ୍ପର୍ଶୀ ଧୀରେ କରେ ମୋର, କହିଲି– 'କଲ୍ୟାଣି,
ଜାଣ ତ ଅଶ୍ରୁରେ କହି ଗୂଢ଼ ହୃଦ-ବାଣୀ
ମୋ ମଙ୍ଗଳ ଲାଗି ଇଷ୍ଟଦେବତାଙ୍କ ପାଶେ ?
ତା ସଙ୍ଗେ ନାରୀର ଅନ୍ୟ ଗୁଣ ନିକି ଆସେ ?''

## ଆକର୍ଷଣ

ଏ ଭୁବନ ପଥେ ପଥେ ଯହିଁ ଯାଏ ଆଜି
ଚିତ୍ତ ଓ ଚରଣ ମଧ୍ୟେ ଦ୍ୱନ୍ଦ୍ୱ ଉଠେ ବାଜି ।
ଚରଣ ଚଳଇ ଆଗେ, ଚିତ୍ତ ପଛେ ଧାଏଁ
ପୃଥିବୀର ସେହି ସ୍ଥାନେ, ବାୟୁ ଯହିଁ ପାଏ
ପ୍ରିୟାର ଚିକୁର ଗନ୍ଧ, ତୁଚ୍ଛ ରେଣୁ ଯହିଁ
ଜୀବନ୍ତ ହୁଅଇ ପ୍ରିୟା-ପଦ ସ୍ପର୍ଶ ବହି ।
ଏହି ଦ୍ୱନ୍ଦ୍ୱ ହୃଦେ ଧରି ବୁଲେ ମୁଁ ନିରତ
ଆଜି ଏ ଭୁବନ ପରେ; ଯାତ୍ରୀ ଶତ ଶତ
ଦୁଇ ପାଶେ ଯାନ୍ତି ଚଳି ଭୁଜେ ଭୁଜ ଘଷି,
ନ ଜାଣନ୍ତି ବ୍ୟଥା ମୋର । ପଥ-ପାଶେ ବସି
ଭାବେ ମୁଁ ନିବିଷ୍ଟ ମନେ– କିପାଁ ଆକର୍ଷଣ
ହୃଦୟେ ହୃଦୟେ ଏହି ? ଗୋଟିଏ ବଦନ
କୋଟିଏ ବଦନ ମେଳେ କିପାଁ ମତେ ଟାଣେ
ଖିଳ-ବିଶ୍ୱେ ଏ ବନ୍ଧନ କିପାଁ ଦୁଇ ପ୍ରାଣେ ?

## ଜଣେ ଜାଣେ

ବସୁଧାର- ହୃଦ-ବ୍ୟଥା ଜାଣେ ବାରିବାହ,
ଅମୃତ-ଆସାରେ କରି ତା'ରେ ଅବଗାହ
ରୋମାଞ୍ଚିତ କରେ ଶସ୍ୟେ । କୁସୁମ-ବ୍ୟଥିତ
ତପନ ଜାଣଇ ମାତ୍ର, ପ୍ରଭାତେ ଚୁମ୍ବିତ

ଧୀରେ କରି, କରେ ତାରେ ସୁରଭି-ସୁନ୍ଦର
ହସାଏ କ୍ଷଣକ ଲାଗି । ଶୁଭ୍ର ନୀଳାମ୍ବର
ଆଲୋକର ବ୍ୟଥା ବୁଝେ । ନୀରବ ନିଶୀଥ
ପ୍ରେମିକର ବ୍ୟଥା ବୁଝେ— ପ୍ରେୟସୀ-ଶିଂଜିତ
ଶୁଣାଇ ଶ୍ରବଣେ ତା'ର । ନିଖିଳ ଭୁବନେ
ବୁଝିବାକୁ ଜଣକର ବ୍ୟଥା ଆଉ ଜଣେ
ସୃଜିଛି ପରମ ସ୍ରଷ୍ଟା; ବିଶ୍ୱଜନତାରେ
ସକଳେ ଉପେକ୍ଷି, ଚିତ୍ତ ବାଛିନିଏ ତାରେ
ଜୀବନ-ସଙ୍ଗିନୀ କରି । ସେହି ସେ ବିଧାନେ
ପ୍ରିୟା-ପ୍ରାଣ ଯୁକ୍ତ ହେଲା ଏ ଅଧମ-ପ୍ରାଣେ ।

## ଅଭିମାନ

ବାର ବାର ଜିଜ୍ଞାସିଛ ହେ ଅଭିମାନିନି,
ଏଇ ପ୍ରଶ୍ନ ନିଶି ନିଶି— 'ଆଦ୍ୟ ପ୍ରଣୟିନୀ
ଯେ ଥିଲା ତାହାରେ ଦେଇ, ସମସ୍ତ ପ୍ରଣୟ
ମତେ ହେ ଭୁଲାଅ କିପାଁ ? ପରମ ସଂଶୟ
ମୋର ଅଛି ତବ ସ୍ନେହେ'— କହିନି ଉତ୍ତରେ
ବରାଙ୍ଗୀ ମୁଁ ବାରବାର ?— 'ପ୍ରଣୟ-ମନ୍ତ୍ରରେ
ଅଭିଷିକ୍ତ କରି ମୋର ପ୍ରଥମ-ପ୍ରେୟସୀ
ଉପଯୁକ୍ତ କଲା ମତେ ପଦତଳେ ବସି
ଦେବାକୁ ତୁମ୍ଭରେ ମୋର ପ୍ରେମ-ଆରାଧନା
ବିଦଗ୍ଧ ପ୍ରେମିକ ସମ ! ସୁପ୍ତ ମୋ ବାସନା
ଜାଗ୍ରତ କରିଛି ସେହି, ପ୍ରଣୟ ପିପାସା
ଉଠାଇଛି ପ୍ରାଣେ ମୋର, ଶିଖାଇଛି ଭାଷା
କହିବାକୁ ପ୍ରୀତି-କଥା ପ୍ରେୟସୀ-ସମ୍ମୁଖେ;
ତା' ପ୍ରତି କି ଅଭିମାନ ସାଜେ ତବ ମୁଖେ ?

—

## ସୁରା ଓ ସୁଧା

ପ୍ରଥମ ପ୍ରଣୟ ପ୍ରିୟେ ମୋ ଜୀବନ-ପାତ୍ରେ
କାର୍ଯ୍ୟକଲା ମଦ୍ୟସମ, ମୋ ନିଖିଳ-ଗାତ୍ରେ
ସାଜିଲା ଅନନ୍ତ କ୍ଷୁଧା, ଅନନ୍ତ ପିପାସା,
ବିମୁଗ୍ଧ କଲା ମୋ ପ୍ରାଣ, ବିହ୍ୱଳ ମୋ ଆଶା,
ଜୀବନ ବିଦ୍ରୋହମୟ । ଫିଙ୍ଗିଲି ଶୃଙ୍ଖଳ
ଫିଙ୍ଗିଲି ଗୌରବ-ମାନ; ସଂସାର-ମଙ୍ଗଳ
ସେହି କାଦମ୍ବରୀ ପାନେ; କସ୍ତୁରିକା ସମ
ଧାଇଁଲି ମୁଁ ଭ୍ରାନ୍ତ ପରି । ସେ ମୋର ପରମ
ହୋଇଅଛି ଶେଷ ଆଜି । ଆଜି ହେ ସୁନ୍ଦରୀ
ପବିତ୍ର ଜାହ୍ନବୀ ସ୍ରୋତେ ଦାଣ୍ଡ ମୋର ଭରି
ଆସିଛ ମନ୍ଦିରେ ମମ । ସେହି ସୁଧା ପାନେ
ଶାନ୍ତ ମୋ ନିଖିଳ-କ୍ଷୁଧା; ମୋହ-ଅବସାନେ
ଘଟିଛି ମୋ ଜନ୍ମାନ୍ତର । ସୁରାପାନ ପରେ
ପ୍ରେମ ତବ ସୁଧା ସମ ପ୍ରାଣେ କାର୍ଯ୍ୟ କରେ ।

## ସେ'ଦିନ

ସେ'ଦିନ ପଡ଼ଇ ମନେ– ଯେ'ଦିନ କଲ୍ୟାଣି,
ଅପବାଦ, ଅନ୍ଧକାର, ଅପଥ ନମାନି
ଧାଉଁଥିଲି ସ୍ତବ୍ଧ ରାତ୍ରେ, ପ୍ରଥମା ପ୍ରିୟାର
ନିବିଡ଼ ଆଶ୍ଳେଷବନ୍ଧେ, ଦୁର୍ଦ୍ଦାନ୍ତ ହିୟାର
ଦୁର୍ଦ୍ଧର୍ଷ ବାସନାରାଶି ଶମିବାର ଲାଗି ।
ସ୍ୱପ୍ନେ ହେଲେ ସେ'ଦିନ ତ ନାହିଁ ଥିଲା ଜାଗି
ଚିତ୍ତେ ମୋର ତବ ରୂପ । କାହିଁ ଥିଲ ସଖି,
ସେକାଳେ ମୋ ଲାଗି ବକ୍ଷେ ଶୂନ୍ୟ ସ୍ଥାନ ରଖି
ମୋ କକ୍ଷ ଆଲୋକ ପାଇଁ ପ୍ରଦୀପ ସଜାଡ଼ି
କିଶୋରୀ ବୟସୁ ତବ ? ଆଲୋକ ଅଜାଡି
ଯେ ଅବଗୁଣ୍ଠନ ତଳୁ ଆସିଲ ଯେ ଦିନ

ତୁମରେ ଚାହିଁଲି ଦୂରୁ ହୋଇ ଦ୍ୱିଧା-ଭିନ୍ନ,
ଜିଜ୍ଞାସିଲି 'ଏ କିଏ ସେ ?' କିନ୍ତୁ ପରିଚୟ
ତୁଟାଇଲା ମମତାରେ ସକଳ ସଂଶୟ ।

## ପ୍ରେମର ସଂଜ୍ଞା

ପ୍ରେମ ସେ କିପରି କଥା କିବା ସଂଜ୍ଞା ତାର ?
କିପରି ହୁଅଇ ତା'ର ପ୍ରାଣରେ ସଂଚାର ?
କିବା ସଂଜ୍ଞା ଦେବି ପ୍ରିୟେ ? ବିଶ୍ୱ-ଆକର୍ଷଣ
ପ୍ରେମ ନାମ ପରିପୂର୍ଣ୍ଣ ଆତ୍ମ-ସମର୍ପଣ ।
ତରୁଣ ତରୁଣୀ ପ୍ରାଣ ଏହି ଯାଦୁକର
ଅନ୍ୟୋଽନ୍ୟେ ଟାଣଇ ଆଦ୍ୟେ, ଅଞ୍ଜନ ରୂପର
ଲଗାଇ ଦୁହିଁଙ୍କ ନେତ୍ରେ । ରୂପେ ହେଲେ ଶେଷ
ପ୍ରେମ ନାମ ନୁହେଁ ତାର, ଅନ୍ୟ କି ବିଶେଷ
ନିକୃଷ୍ଟ ସମ୍ଭୋଗ ତାହା । ଦେହ-ଅବସାନେ
ଯେ ମିଳନ ପ୍ରତିଷ୍ଠିତ ଅନ୍ୟୋଽନ୍ୟ କଲ୍ୟାଣେ,
ସେହି ସେ ପ୍ରକୃତ ପ୍ରେମ । ବିଶ୍ୱାସ ପରମ
ଆବୃତ କରଇ ତାରେ ଦୃଢ଼ ବର୍ମ୍ମ ସମ,
ଆଶଙ୍କା ସନ୍ଦେହ ଦ୍ୱନ୍ଦ୍ୱୁଁ । ସୁଖ ସେ ପ୍ରେମରେ
ଗ୍ରହଣ ନକରି ଖାଲି ତ୍ୟାଗ ପରସ୍ପରେ ।

## ମୃତ୍ୟୁ-ଭୟ

ନିବିଡ଼ ଆଶ୍ଳେଷ ମଧ୍ୟେ ପ୍ରଶ୍ନ ବାରବାର
ଉଠିନି କି ପ୍ରିୟ ସଖି ? କଙ୍କଣ ଝଂକାର
ସହସା ସ୍ତବ୍ଧ ହୁଏ, ଉନ୍ମୁଖୀ ଚୁମ୍ବନ
ରହିଯାଏ ଅର୍ଦ୍ଧପଥେ, ନିଃଶ୍ୱାସେ କମ୍ପନ
ଆସେ ସେ କରୁଣ ପ୍ରଶ୍ନେ- 'ଭୃତ୍ୟ ମରଣର
କାହା ଅଙ୍ଗେ ଅଗ୍ରେ ଥୋଇ ତା' ଶୀତଳ କର
ନିଃସଙ୍ଗ କରିବ ଆନେ ?'— ଲାଗଇ କଳହ

ଦୁଇ ଜନେ, କରିବାକୁ ମରଣ ସଂଗ୍ରହ
ଆଗ ହୋଇ ଆନଠାରୁ ।
ଆଜି କିନ୍ତୁ ସଖି,
ସେ ଭୟ ନାହିଁଛି ଆଉ; ମତେ ଏଥି ରଖି
ଯାଅ ଯଦି ପରପାରେ, ପ୍ରେମ ମୃତ୍ୟୁଞ୍ଜୟ
ଶକ୍ତି ଦେବ ବିରହରେ । ମରଣରେ ଜୟ
କରିବି ମୁଁ ଚିତା-ଭସ୍ମେ ଛାଇ ଦେହ-ସୀମା
ଦେହ ତଳେ ସୃଜି ତବ ମାନସୀ-ପ୍ରତିମା ।

## ବିରହ

ବହୁ ଦେଶ, ବହୁ ବନ, ଗିରି ନଦୀ ପାରେ
ବହୁଦୂରେ ଏକ ଗ୍ରାମେ ଛାଡ଼ି ମୁଁ ପ୍ରିୟାରେ
ବିଦେଶେ ବିଚ୍ଛେଦ-ଦୁଃଖ ଭୋଗୁଛି ହୃଦୟେ
ଜ୍ୱଳନ୍ତ ଅଙ୍ଗାର ଜାଳି । ମନ ନାହିଁ ରହେ
ଏ ସ୍ଥାନେ, ଏ କର୍ମ ମେଳେ, ଧାଏଁ ଅହରହ
ପୁଣି ସେହି ଛୋଟ ଗ୍ରାମେ, ପ୍ରିୟାର ବିଗ୍ରହ
ଧରି ଯେ ରଖିଛି ଏକ ଦରିଦ୍ର କୁଟୀରେ
ସିକ୍ତ ଯାର ରେଣୁ ରାଶି ପ୍ରିୟା ନେତ୍ର-ନୀରେ ।
ବ୍ୟବଧାନ ଦୁଇ ପ୍ରାନ୍ତେ ଯୁଗଳ ପ୍ରଣୟୀ—
ଦୁଇ ହୃଦୁ ବାର୍ତ୍ତା ଯାଏ ଅଗୋଚରେ ବହି
କରି ବ୍ୟବଧାନ ଜୟ; ତେଣୁ ଦୁହିଁଙ୍କର
ନେତ୍ରୁ ପଡ଼େ ଅବାରିତ ଅଶ୍ରୁ ବିରହର ।
ଦୁଇ ଦେଶେ ଦୁଇ ଦୁଃଖୀ— ପ୍ରେମ ଥାଇ କହେ
'ଚିନ୍ତା ନାହିଁ,— ପ୍ରାଣ ଲଭେ ପ୍ରସାର ବିରହେ' ।

## ପୁନର୍ମିଳନ

ଭାବିଛି ସମସ୍ତ ପଥ ମୁଖଛବି ତାର
କେମନ୍ତେ ମୋ ପାଶେ ପୁଣି, ତାର ଅଭିସାର

ହୋଇବ ବିରହ ପରେ; ଭାଷି ମୁଁ କି ବାଣୀ
ଡାକିବି ପ୍ରଥମେ ତାରେ; ଅଭିମାନେ ରାଣୀ
ନ ଶୁଣିଲେ ମୋ ଆଦର, ନ ବସିଲେ ପାଶେ
ମୋ ବ୍ୟଥା ବ୍ୟକତ ମୁହିଁ କରିବି କି ଭାଷେ ?
ଏହି ସେହି ଦ୍ୱାରଦେଶ, ରଖ ରଖ ଯାନ
ଓହ୍ଲାଏ ମୁଁ-ଥରିଲାଣି ମୋ ନିଖିଳ ପ୍ରାଣ
ପୁଲକିତ ଆଶଙ୍କାରେ । ଗୃହ-ଲକ୍ଷ୍ମୀ କାହିଁ ?
ଗୃହେ ମୁଁ ଯେ ହେଲି ଏବେ— କେହି କ'ଣ ନାହିଁ ?
ସହସା ଚରଣପାତ ଶୁଭିଲା କାହାର,
ପଣନ୍ତର ସଞ୍ଚାଳନ, ଦିଗ ବାରୁ ତାର,
ସମ୍ମୁଖେ ହୋଇଲେ ଉଭା ଶିରୀ କୁଟୀରର
ନେତ୍ର ମିଳୁ ମିଳୁ ବକ୍ଷ ମିଳିଲା ସତ୍ୱର ।

## ଦେହ ଓ ସ୍ନେହ

ପାଇଲି ମୁଁ ସ୍ନେହ-ରତ୍ନ ଦେହେ ଅବଗାହି
ମୁକ୍ତା ପାଇ ଫେରିଛି ମୁଁ ଗୁଞ୍ଜା ଖୋଜି ଯାଇ ।
ପ୍ରିୟାର ସରସ ସ୍ନେହ ଦେହ-ଅବସାନ
କରିଅଛି ଶେଷେ ମୋର । ଆତ୍ମା, ପରିତ୍ରାଣ
ଲଭିଛି ବନ୍ଧନ ଦେଇ, ଇନ୍ଦ୍ରିୟର ଶେଷେ
ଅତୀନ୍ଦ୍ରିୟ ସୁଖ ଲଭି ଆଜି ଅବଶେଷେ
ହୋଇଛି ମୁଁ ଜିତେନ୍ଦ୍ରିୟ । ଆଜି ଯେବେ ପ୍ରିୟା
ପାଶେ ଆସି ଯୁକ୍ତକରେ ହିୟା ସଙ୍ଗେ ହିୟା
ଭୁଲେ ମୁଁ ଶରୀର-ସ୍ପର୍ଶ; ଅନୁଭବେ ଖାଲି
ତା' ଦେହ-ମନ୍ଦିର ମଧ୍ୟେ, ପ୍ରିୟା ମୋର ଜାଳି
ରଖିଛି ଯେ ପ୍ରେମ-ଶିଖା; ଉଷ୍ଣତା ତାହାର
ତା' ଜଡ଼-ଶରୀର ଭେଦି ମୋ ଦେହେ ସଂଚାର
କରୁଛି ଜୀବନ ରସ । ପ୍ରଣୟ ଆମ୍ଭର
ରୂପପର ଥିଲା ଦିନେ ଆଜି ରୂପୋତ୍ତର ।

# ଭୋଗ ଓ ତ୍ୟାଗ

କରିବା କିସ ଗୋ ସଖି, ଭୋଗ ଆଉ ତ୍ୟାଗ
ଗ୍ରହଣ କରିବା କା'ରେ, କା'ରେ ପରିତ୍ୟାଗ ?
କହିଲା ବିଦୁଷୀ ପ୍ରିୟା—କି ସୁଖ ଭୋଗରେ ?
ଅଧମ ପ୍ରବୃତ୍ତି ଆଉ ସ୍ଥୂଳ ଇନ୍ଦ୍ରିୟରେ
ତୃପ୍ତି ଖାଲି ମିଳେ ତହିଁ; ମାନବ ଆତ୍ମାର
ଦୈବତ ପିପାସା ତହିଁ ନୁହେଁ ମେଣ୍ଟିବାର ।
ଆତ୍ମାର ନିର୍ମଳ ପ୍ରେମ ଢାଳ ମୋ ଆତ୍ମାରେ
ସେଇ ମୋ ପରମ ଭୋଗ । ମୋ ପ୍ରେମ-ବାହାରେ
ଦେଖ ଯାଅ ପଥେ ପଥେ ଦୁଃଖ ଅତ୍ୟାଚାର
ନଗ୍ନ ବର୍ବରତା ଘେନି କରଇ ବିହାର
କେହ୍ନେ ତବ ଜାତି-ଦେଶେ; ପତିତ ଦଳିତ
ଚିତ୍କାରେ ପୂରଇ ବାୟୁ । ଦିଅ ତବ ଚିତ୍ତ
ହତଭାଗ୍ୟ, ନିଃସହାୟ,ଦରିଦ୍ର ସେବାରେ,
ଜୀବନରେ ମୂଲ୍ୟ ଦିଅ ସେହି ବଞ୍ଚିବାରେ ।

# ଭକ୍ତି

ଏକ ଦିନ ନିଶାଶେଷେ ଗୃହ-ବଳଭୀରେ
ଦେଖଇ ନିଶାନ୍ତ-ନଭଃ ପ୍ରାଣସଙ୍ଗିନୀରେ
ବୁଝାଇଲି ସୃଷ୍ଟି କଥା । ଅନନ୍ତ ଗଗନେ
ଅଗଣ୍ୟ ହୀରକ-ଖଣ୍ଡ ନିଃସର୍ଗ-ଜ୍ୱଳନେ
ଜଳୁଥିଲେ ନିର୍ନିମେଷ; କହିଲି ଦେଖାଇ
'ଏ ଯେଉଁ ଜ୍ୟୋତିର ରେଣୁ-ପୁଞ୍ଜ ନଭଃ ଛାଇ,—
ଏହାର ପ୍ରତ୍ୟେକ, ଏକ ସୌର ପରିବାର
ଗ୍ରହ-ଉପଗ୍ରହ ଘେନି । ଅଗଣ୍ୟ ସଂସାର
ଭ୍ରମୁଛନ୍ତି ଅନ୍ତରୀକ୍ଷେ; ସେ ଜ୍ୟୋତିର୍ମଣ୍ଡଳେ
ଆମ୍ଭର ଏ ଧରା, କ୍ଷୁଦ୍ର ରେଣୁ ସମ ଚଳେ
ସୀମାହୀନ ବ୍ୟୋମପଥେ; ଏ ମହା-ସୃଷ୍ଟିର

କିଏ ସ୍ରଷ୍ଟା ?' ଅଛି କିଏ ?— ରହି କ୍ଷଣେ ସ୍ଥିର
'ଅଛି' କହି ଏକ ବିନ୍ଦୁ ଭକ୍ତି ସମ ଢଳି
ସ୍ରଷ୍ଟାରେ ନମିଲା ପ୍ରିୟା ମୁଖ ନତ କରି ।

## ପ୍ରାର୍ଥନା

କଠୋର ଜୀବନ-ରଣେ ନିତ୍ୟ ପରାହତ
ଦୁର୍ବଳ, ଦରିଦ୍ର, ଦୁଃଖୀ, ଦୀନ ମୁଁ ସନ୍ତତ,
ଜାଣିନି ଜୀବନେ ଅନୁଗ୍ରହ ବିଧାତାର
ତେଣୁ ପ୍ରାୟ ନାସ୍ତିକ ମୁଁ । ନିତ୍ୟ ହାହାକାର
ଚୌଦିଗେ ଉଠୁଛି ଯେଉଁ ଜୀବ-ଜଗତର
ସେଥିରେ ଅଥବା କେଉଁ ଶିବ-ଶୁଭଙ୍କର
ସ୍ରଷ୍ଟାର ବିଶ୍ୱାସ ମିଳେ ? ଥରେ ଥରେ ଖାଲି
ଭାବେ ଯେବେ କିଏ ଦେଲା ପ୍ରଣୟ-ସଙ୍ଗୀଳି
ଅପଦାର୍ଥ ହସ୍ତେ ମୋର, ହୁଅଇ ବିଶ୍ୱାସ
ଅଛି କେହି ସୁଖ-ସ୍ରଷ୍ଟା ବୁଝେ ଯେ ନିଶ୍ୱାସ
ଶୋକ-ତପ୍ତ ମନୁଷ୍ୟର । ଦିନେ ମୁଁ ପ୍ରିୟାରେ
ପଚାରିଲି— 'ଭକ୍ତି କର ଦେବ-ଦେବତାରେ ?'
'ହଁ' ବୋଲି ବୋଲିଲା ସଖୀ-'କି କର ପ୍ରାର୍ଥନା ?'
'ତୁମରି ମଙ୍ଗଳ ନିତ୍ୟ କରେ ମୁଁ ଯାଚନା ।'

## ଜିଜ୍ଞାସା

ହାୟ ରଜୁ-ବିଶ୍ୱାସିନି ! ବୁଝିଛ କି ଥରେ
କାହାରେ ପ୍ରାର୍ଥନା କର ? ତିନ୍ତ ଅଶ୍ରୁ ଜଳେ
ଏକାନ୍ତ ଶରଣ ବୋଲି ଡାକିଛ ଯାହାରେ
ସତ୍ୟ ସେ କି, ମିଥ୍ୟା ଅବା, କେବେ ଆପଣାରେ
ପଚାରିଛ ସଖୀ ମୋର ? ବାଳୁତ ବୟସେ
ତୁମ୍ଭ ପରି ଚିତ୍ତ ମୋର ବିଶ୍ୱାସର ରସେ
ରସବନ୍ତ ଥିଲା ସଖି, ଦେବତା-ଈଶ୍ୱର

ନଥିଲେ ଦୂରରେ ତେଣୁ । ଆଜି ତର୍କପର
ଯୌବନ କିନ୍ତୁ ଗୋ ସଖି ସୃଜି ଅବିଶ୍ୱାସ
ସେଦିନ-ବିଶ୍ୱାସେ କରି ସ୍ନିଗ୍ଧ ପରିହାସ
ବହୁଦୂରେ ରଖିଅଛି ସେ-ଦିନ ଈଶ୍ୱରେ
କବିର କଳ୍ପନା ବୋଲି । ଆଜି ମୁଁ ଚିତ୍ତରେ
ଭାଳେ ଖାଲି ଦୁଇ ମଧ୍ୟେ ସତ୍ୟ, କୁ' ପଥରେ,
ଏବ-ଅବିଶ୍ୱାସ ଅବା ସେବ-ବିଶ୍ୱାସରେ ।

## ବିରାଟ ସ୍ରଷ୍ଟା

ଦିନେ ଦିନେ ତାରକିତ ଗଗନରେ ଚାହିଁ
ଦେଖେ ମୁଁ ସୃଷ୍ଟିର ଲୀଳା— ମହାବ୍ୟୋମେ ଥାଇ
ଅଗଣ୍ୟ ସଂସାର ଭ୍ରମୁଛନ୍ତି ଅବିରତ
କା'ର ମହା ଇଙ୍ଗିତରେ ? ଚନ୍ଦ୍ରାତପବତ
ନୀଳ ବ୍ୟୋମେ ଖଞ୍ଜିଲା କେ ବିଦଗ୍ଧ ସୁନାରୀ
ହୀରା-ଚୂର୍ଣ୍ଣ ସମ ଏତେ ସୃଷ୍ଟି ସାରି ସାରି
ଜୀବନ୍ତ ନିୟମେ ବାନ୍ଧି ? ସୂର୍ଯ୍ୟ ଲକ୍ଷ ଶତ
କୁଟୁମ୍ବ ତାଙ୍କର ଧରି ପିପୀଲିକାବତ
ଚାଲିଛନ୍ତି ବ୍ୟୋମ-ମାର୍ଗେ ଯୁଗଯୁଗାନ୍ତରୁ
ଅଜ୍ଞେୟ ଅଜ୍ଞାତ ରାଜ୍ୟେ । କାହା ଇଙ୍ଗିତରୁ
ଏ ସୃଷ୍ଟି ପାଇଲା ଗତି ? ବିରାଟ ବ୍ୟାପାର
କିଏ ସେ ସୃଜିଲା ଅବା ? ଉତ୍ତରେ ଏହାର
ସନ୍ଧାନ ମିଳଇ ଏକ ବିରାଟ ସ୍ରଷ୍ଟାର,
ସ୍ତବ୍ଧ ଚିତ୍ତବୃତ୍ତି କରେ ମହିମା ଯାହାର ।

## ସନ୍ଦେହ

କିନ୍ତୁ ପରେ ଜିଜ୍ଞାସା ମୋ ଚିତ୍ତରେ ଉଠଇ
ଏହି ଯେ ବିରାଟ ସ୍ରଷ୍ଟା, ସେ କ'ଣ ଶୁଣଇ
ମାନବର ସୁଖ ଦୁଃଖ ? କୋଟି ଭୁବନର

ଉତୁଙ୍ଗ ସମ୍ରାଟ ସେ ଯେ; ତା ରଥ-ଚକ୍ରର
ରେଣୁ କରୁଥିବ ସୃଷ୍ଟି ବ୍ୟୋମ-ପ୍ରାଙ୍ଗଣରେ
ଆମ୍ଭର ଧରଣୀ ପରି ମହୀ ଅଜ୍ଞାତରେ
ଲକ୍ଷ ଲକ୍ଷ ଶତ ଶତ; ଆମ୍ଭ ଧରା ପରି
କେତେ ବା ତାହାର ରଥ-ଚକ୍ର ତଳେ ପଡ଼ି
ହେଉଥିବେ ନିଷ୍ପେଷିତ; ବିରାଟ ଈଶ୍ୱର
ସମ୍ବାଦ ରଖଇ ତା'ର ? ତା ମହାଯାନର
ଗତି କେବେ ସ୍ଥିର କରେ କରୁଣ କ୍ରନ୍ଦନ
ନିଷ୍ପେଷିତ ଜଗତର ? ସେ ବିଶ୍ୱ-ବନ୍ଦନ
ଭ୍ରୂକ୍ଷେପ କରଇ ବା କି ଭକ୍ତି-ବନ୍ଦନାରେ
ଅଣୁର ଅଣୁ ଏ ନର ଦିଏ ଯା ଶ୍ରଦ୍ଧାରେ ?

## ଦୁଃଖମୟ ସୃଷ୍ଟି

ସମ୍ମୁଖରେ ଦେଖି ଦୁଃଖମୟ ଏ ସଂସାର
ରୋଗ, ଶୋକ, ଦାରିଦ୍ର୍ୟର ବୀଭତ୍ସ ବିକାର,
ମିଥ୍ୟାର ତାଣ୍ଡବ-ଲୀଳା, ଅନ୍ୟାୟର ଜୟ
କଠୋର ଜୀବନ-ରଣେ ପ୍ରବଳ-ବିଜୟ
ଦୁର୍ବଳର ଜାନୁଭଙ୍ଗ,-କହିବ କିଏ ସେ
ଈଶ୍ୱର ଶୁଣନ୍ତି ଡାକ ନରର, ଦିଏ ସେ
କରୁଣ ବିଳାପେ ଯାହା ଊର୍ଦ୍ଧ୍ୱେ ବାହୁ ଟେକି
ଆକାଶେ ଭରସା କରି ? ଯନ୍ତ୍ରଣାରେ ବୋଲି
ଗଢ଼ିଛି ଯେ ସୃଷ୍ଟି, ତାହା ଜୀବ ଶୁଭ ପାଇଁ
କେ କିପାଁ କହିବ ଅବା ? ଚିତ୍ତ-ସୁଖ ପାଇଁ
ଲକ୍ଷ କୀଟ-ଜୀବ ଏଇ ଦଳିଲି ମୁଁ ପଦେ,
କେ ତାଙ୍କୁ ରଖିଲା ଆସି ଏ ଗୁରୁ ବିପଦେ ?
ସବୁ ଜୀବ ଏହିପରି ଏଥି ଅଶରଣ,
ଭୋଗୁଛନ୍ତି ଅର୍ଥହୀନ ଜୀବନ-ମରଣ ।

—

# ସୃଷ୍ଟି ଓ ଧ୍ୱଂସ

ଅଜ୍ଞାତ ଶକତି ଏକ ଆୟସ ଶାସନେ
ଚଳାଏ ବିପୁଳ ସୃଷ୍ଟି, ଜୀବନେ ମରଣେ
ପ୍ରାଣୀର, ଭ୍ରୂକ୍ଷେପ ନାହିଁ ତିଳେକ ତାହାର,
ପ୍ରାର୍ଥନା ଆମ୍ଭର ବ୍ୟର୍ଥ ନିଷ୍ଫଳ ଚିତ୍କାର ।
କ୍ରୀଡ଼ାପର ଶିଶୁ ପରି ସୃଜି ଏ ସଂସାର
ପଦାଘାତେ ଭାଙ୍ଗିବାରେ ଆନନ୍ଦ ତାହାର ।
ମାନବ ଗର୍ବର ବସ୍ତୁ ଉନ୍ନତ ସଭ୍ୟତା,
ତାକୁ ସେ କି ଚାହେଁ ତିଳେ ? ସେ କରୁଣ କଥା
ଇତିହାସ କହେ ଆଜି, କେତେ ମହା ଜାତି
ଧ୍ୱଂସ ହେଲେ ଧରାପୃଷ୍ଠୁ, ଆଜି ସେ କାହାନ୍ତି
ରଚିଲେ ଯେ ପିରାମୀଡ଼ ? ସେହି ଜାତି ପରି
ଆମ୍ଭେ ମଧ୍ୟ ହେବୁ ଧ୍ୱଂସ; ସମୃଦ୍ଧ ନଗରୀ
ଆଜି ଯହିଁ, ତହିଁ ହେବ ବାଲୁକା ବିସ୍ତାର
ସୃଷ୍ଟି ଖାଲି ଧ୍ୱଂସ ପାଇଁ ସ୍ରଷ୍ଟାର ସଂସାର ।

# ବିଶୁଦ୍ଧ ସନ୍ଦେହ

ବିଶୁଦ୍ଧ ସନ୍ଦେହ ଭଲ କ୍ଲିନ୍ନ ବିଶ୍ୱାସରୁ
ତେଣୁ ଏ ନାସ୍ତିକ ତର୍କ ଅଧମ ଚିତ୍ତରୁ ।
ମାନବର ଦୁଃଖ-କଷ୍ଟ, ଜଗତର ତ୍ରାସ
କ୍ରମେ କ୍ରମେ ନିଏ ମୋର ଈଶ୍ୱର ବିଶ୍ୱାସ ।
ଗଭୀର ନିରାଶାମୟ ଏ ଜୀବ ସଂସାରେ
ଏକମାତ୍ର ଆଶା ଖାଲି ମାନବ ଆତ୍ମାରେ ।
ସମସ୍ତ କଷଣେ, ନିଷ୍ପେଷିତ ଅତ୍ୟାଚାରେ
କରୁଣା, ବିଶ୍ୱାସ, ସ୍ନେହ ମହିମା ପ୍ରଚାରେ
ମାନବ ଆତ୍ମାର ନିତ୍ୟ; ଏହି ରସ ପାଇ
ମାନବ ବଞ୍ଚିଛି ଏଥି, ଏ କଲ୍ୟାଣ ପାଇଁ

ପରିପୂର୍ଣ୍ଣ ଧନ୍ୟବାଦ ଦେଇଛି ସ୍ରଷ୍ଟାରେ
ବାର ବାର ମନେମନେ । ଶେଷେ ତୁମ୍ଭଠାରେ
ପ୍ରିୟେ ଦେଣୁ ଅଳି ମୋର, ଶକ୍ତି ଅନୁଯାୟୀ
ଆତ୍ମାର ଏ ରସ ଦିଅ ବିଶ୍ୱ ଶୁଭ ପାଇଁ ।

## ମୁକ୍ତି ନାହିଁ ମାଗେ

ସ୍ୱର୍ଗ, ମୁକ୍ତି ନାହିଁ ବାଞ୍ଛେ, ଜୀବନ ମୁଁ ଚାହେଁ
ସୁଖଦୁଃଖମୟ ଏହି ଜୀବନ ପ୍ରବାହେ
ଏ ବିଚିତ୍ର ଧରଣୀର । ମୋର ଜନ୍ମାନ୍ତର
ଜଗତର କୋଟି କୋଟି ଦୁଃଖୀ ଦରିଦ୍ରର
ନୟନ ଲୋତକେ ମୋର ଲୋତକ ମିଶାଇ
ହେଉ ଗୋ ପବିତ୍ରତର । କବିତାରେ ଗାଇ
ଦଳିତ ଲାଞ୍ଛିତ ଯେତେ, ତାଙ୍କ ଦୁଃଖ ବ୍ୟଥା
ଅବଜ୍ଞାତ, ସୁଖଦୁଃଖମୟ ପ୍ରାଣ କଥା,
ଲେଖନୀ ମୋ ଧନ୍ୟ ହେଉ । ଏ ମୋର ଶରୀର
ଅନନ୍ତ କରୁଣା ଭରେ ପୋଛି ନେତ୍ର ନୀର
ଲକ୍ଷ ଲକ୍ଷ ଦରିଦ୍ରର କ୍ଷୀଣ ପଳେ ପଳେ
ହେଲେ ସେ ପରମ ଭାଗ୍ୟ, ମୋର ଜନ୍ମାନ୍ତରେ ।
ଜୀବନେ ଜୀବନେ ଜନ୍ମି ରକ୍ତ ମୋର ଦେଇ
ମେଣ୍ଟିବି ମାନବ ଦୁଃଖ କ୍ରୁଶ ଅଙ୍ଗେ ନେଇ ।

## ଆତ୍ମାର ସୌନ୍ଦର୍ଯ୍ୟ

ପଚାରିଛ କେତେ ବାର 'ମତେ ନା ରୂପରେ
କାହାରେ ପ୍ରଣୟ ଦିଅ ?' କହିଲେ ସତ୍ୟରେ
ଉଭୟକୁ ପ୍ରିୟ ସହି । ରକ୍ତ ମାଂସ ଦେହ,
ଏ ଦୁଷ୍ଟ ଇନ୍ଦ୍ରିୟ-ଗ୍ରାମ, ଘୃଣା-ଦ୍ୱେଷ ସ୍ନେହ—
କେମନ୍ତେ କହିବି,— ଏ ସମସ୍ତ ସାଥେ ଧରି
ରୂପାତୀତ ସ୍ନେହ ମମ, ଜିତେନ୍ଦ୍ରିୟ ପରି ?

ରୂପ ବା କି ଘୃଣ୍ୟ କଥା ? ନର-ସୌନ୍ଦର୍ଯ୍ୟରେ
ଭକ୍ତ ସମ ଅଛି ଚାହିଁ ମୁଗ୍ଧ ନୟନରେ
କେତେ ବାର ସଖୀ ମୁହିଁ, ବିଦ୍‌ଗଧ ସ୍ରଷ୍ଟାର
ସୃଷ୍ଟିର ମହିମା ସ୍ମରି । କିନ୍ତୁ ଗୋ ଆମ୍ଭର
ସୌନ୍ଦର୍ଯ୍ୟ ତହିଁରୁ ବଳି, ଯାର ସମ୍ମୁଖରେ
ମନୁଷ୍ୟ ନୁଆଁଏ ମଥା । ତବ ରୂପ ତଳେ
ସେ ରୂପର ସନ୍ଧାନ ମୁଁ ପାଇଛି ସୁନ୍ଦରୀ,
ମୋ ପ୍ରେମ ସରସ ଦେହ, ଅନ୍ତର ସଞ୍ଚରି ।

## ଗୋପବନ୍ଧୁ

ପ୍ରାଣ-ରୂପେ ରୂପବାନ୍ ଜଣେ ମହାଜନେ
ସମ୍ମୁଖେ ଦେଖ ଗୋ ଏଇ, ପ୍ରଣମ ଚରଣେ ।
ପୁଣ୍ୟ-ପ୍ରାଣ ଗୋପବନ୍ଧୁ ଉତ୍କଳ ଦେଶର
ମୁକୁଟବିହୀନ ରାଜା; ଦୀନ ଦରିଦ୍ରର
ପ୍ରକୃତ ପରମ ବନ୍ଧୁ, ଦୀନ ଦୁଃଖୀ ପାଇଁ
ନୟନୁ ହୃଦୟ-ଦ୍ରାବି ଲୋତକ ବୁହାଇ
କିଏ ଆଉ ତାଙ୍କ ପାଶେ ଦୁଃଖ ଦୁର୍ଦ୍ଦିନରେ
ଅନ୍ନ ଧରି ହେବ ଠିଆ, କୋମଳ ବାକ୍ୟରେ
ଭୁଞ୍ଜାଇବ ବୁଭୁକ୍ଷରେ ? ଏ ଦେଶ-ଜାତିରେ
ପ୍ରାଣପୂର୍ଣ୍ଣ ସ୍ନେହ ଦେଇ ନୟନର ନୀରେ
ତର୍ପଣ କରିବ କିଏ ? ଉତ୍କଳ-ଜନନୀ
ହରାଇ ଏମନ୍ତ ଯୋଗ୍ୟ ପୁତ୍ର ଗୁଣମଣି
ହୋଇଅଛି ଆଣ୍ଠୁକୁଡ଼ୀ କୋଟି ପୁତ୍ର ଥାଉଁ,
ତାଙ୍କ ପରେ ଦରିଦ୍ରର ବନ୍ଧୁ ନାହିଁ ଆଉ ।

## ଚନ୍ଦ୍ରଶେଖର

ଅଜ୍ଞାନ ତମସାବୃତ ଉତ୍କଳ-ଭୁବନେ
ଜାଳିଲେ ଯେ ଜ୍ଞାନ-ଦୀପ ଦରିଦ୍ର-ପ୍ରାଙ୍ଗଣେ,

ଆଲୋକ ଯାହାର ଦେଖି ଦେଶ ଦେଶାନ୍ତର
ଜାଣିଲା ପ୍ରଥମେ ନାମ ଉତ୍କଳ-ଦେଶର,
ଏହି ଚନ୍ଦ୍ରଶେଖର ସେ ପୁରୁଷଉତ୍ତମ
ସୁନ୍ଦର, ପ୍ରାଣର ରୂପେ, ସଖିରେ ପ୍ରଣମ ।
ରୁଗ୍‌ଣ ରୁକ୍ଷ ଦେହ-ଯଷ୍ଟି; କିନ୍ତୁ ଅନ୍ତରରେ
କି ତେଜ କି ପ୍ରାଣ ଥିଲା ! ଭୁଲି ଦାରିଦ୍ର୍ୟରେ
ଭୁଲି ରୋଗ, ଭୁଲି ଋଣ, ରାଜ-ଅତ୍ୟାଚାର,
ନ ରଖି ଫଳରେ ଆଶା ତିଳେ ସାଧନାର,
କେମନ୍ତେ କଠୋର ଜ୍ଞାନ-ଯୋଗ ସେ ତପସ୍ୱୀ
ସାଧିଲେ ଅଜ୍ଞାତ ରାଜ୍ୟେ ! ମସ୍ତକ ପ୍ରେୟସୀ
ଆପେ ନଇଁଆସେ ଏହି ଋଷି ସମ୍ମୁଖରେ,
ସ୍ତବ୍‌ଧ ମୁଁ ହୁଅଇ ତାଙ୍କ ପ୍ରାଣ-ସୌନ୍ଦର୍ଯ୍ୟରେ ।

## ଯୁଗ୍ମ ସୌନ୍ଦର୍ଯ୍ୟ

ବୁଝିଲ ସୌନ୍ଦର୍ଯ-ଭେଦ ? ଝଲକ ଚର୍ମର
ଖଦ୍ୟୋତର ଜ୍ୟୋତି ପରି; କ୍ରୂର ବାର୍ଦ୍ଧକ୍ୟର
ନୀହାର-ଶୀତଳ ହସ୍ତ ଦିନେ ସ୍ପର୍ଶେ ତା'ର
ବଦନେ ସୁନ୍ଦରତମେ ଆଣିବ ବିକାର,
କରିବ ଲୋଳିତ ଚର୍ମ । ଅନିନ୍ଦ୍ୟ ସୁନ୍ଦରୀ
ଯେ କିଶୋରୀ ଆଜି ଛାଡ଼େ ତୀକ୍ଷଣ ବାଣ ପରି
ନୟନୁ କଟାକ୍ଷ ତାର, ଦିନେ ତା' ନୟନ
ଜ୍ୟୋତିଃହୀନ ହେବ ଠୁଳେ, ଚଞ୍ଚଳ ଚରଣ
ସ୍ଥବିର ହୋଇବ ଭାରେ । କିନ୍ତୁ ଗୋ ଆତ୍ମାର
ସୌନ୍ଦର୍ଯ୍ୟ ବଢ଼ଇ କ୍ରମେ, ବାର୍ଦ୍ଧକ୍ୟ ବିକାର
ହ୍ରସ୍ୱ ତା'ରେ ନାହିଁ କରେ । ମୃତ୍ୟୁଭସ୍ମ ପରେ
ସୌରଭ ତାହାର ଲୋକ-ହୃଦୟେ ସଞ୍ଚରେ
ପୁରୁଷୁଁ ପୁରୁଷ କରି । ସେଇ ସୌରଭରେ
ମାନବ-ସଭ୍ୟତା ଗଢ଼ାହୁଏ ଜଗତରେ ।

---

## ଗ୍ରାମ-ସନ୍ଧ୍ୟା

ସନ୍ଧ୍ୟା ସମାଗତ ଏବେ, ଗ୍ରାମ କନ୍ୟାଗଣ
ଶୂନ୍ୟ କୁମ୍ଭ କାଖେ ଘେନି କଲେଣି ଗମନ
ଗ୍ରାମକୂପୁଁ ଜଳ ଲାଗି, ଗ୍ରାମ ଗାଭୀଦଳ
ଲେଉଟନ୍ତି, ଖୁରା-ଘାତେ ବାଲୁକା ପଟଳ
ଉଡାଇଣ ଗ୍ରାମ-ଦାଣ୍ଡେ, ଅସ୍ତ ରବିକର
ଗୃହ-ଚାଳେ ଉର୍ଦ୍ଧ୍ୱେ ରହି ତହିଁ ସୁବର୍ଣ୍ଣର
ବସନ ଦେଇଛି ଭିଡ଼ି । ଯୁଗ୍ମ ପାରାବତ
ବସି ତହିଁ କରୁଛନ୍ତି ଚଞ୍ଚୁରେ ଆହତ
ପରସ୍ପରେ କୌତୁକରେ । ଗୃହକର୍ମ ସାରି
ଗୃହିଣୀ ଆସିଲେ ଏଇ ଧରି ଜୀର୍ଣ୍ଣ ଶାଢ଼ୀ
ବଳିବାକୁ ସଞ୍ଜବତି; କର୍ମିଷ୍ଠ ଗୃହସ୍ଥ
ଫେରିଲେଣି ଏଣେ କ୍ଷେତ୍ରୁ; ମୋର ଗୀତ-ଗ୍ରନ୍ଥ
ଏ ମୁହୂର୍ତ୍ତେ ସାଙ୍ଗ କରେଁ ପେୟସୀ ଗୋ କହ
ବିଶେଷ ବକିଲେ ହେବ ପ୍ରଣୟ-କଳହ ।

## ଅପରାଧ

କହିବାକୁ ପଚାରିଛ ତୁମେ କେତେବାର
ଜୀବନେ କରିଛି କିବା ପାପ-ବ୍ୟଭିଚାର !
ଭାବିଛି ଅନେକ ଥର, ସରମ ଫୋପାଡ଼ି
ତବ ଆଗେ ଦିଅନ୍ତି ମୋ ଅପରାଧ ବାଡ଼ି
ତପ୍ତ ଗୁପ୍ତ ଅନ୍ତରର । କିନ୍ତୁ କିସ ଲାଭ ?
ଅପରାଧ ଜାଣିଲେ କି ବଢ଼ିବ ସଦ୍‌ଭାବ,
ଘନତର ହେବ ପ୍ରୀତି ? ନଖେ ନଖେ ଚିରି
ଅଧିକ କି ଅନୁଭବ ହୁଏ ପୁଷ୍ପ-ଶିରୀ ?
ମୋ ଆତ୍ମାର ପୁଣ୍ୟ ଗନ୍ଧ ଦେବି ମୁଁ ତୁମରେ
ସରଳ ନିର୍ମଳ ପ୍ରେମ ଢାଳିଦେବି କରେ,

ବିନିମୟେ ଦିଅ ମତେ । ପାପ-ଅପରାଧ
ପ୍ରେମ-ସିନ୍ଧୁ ତଳେ ପଡୁ । ରଖି ସେ ସମ୍ବାଦ
କି ଲାଭ ତୁମ୍ଭର ହେବ ? କର୍ତ୍ତବ୍ୟ ତୁମ୍ଭର
ପ୍ରେମ ଜଳେ ଧୋଇ ମତେ ପବିତ୍ରିତ କର ।

## ନିଶୀଥ-ଆଳାପ

ନୀରବ ନିରୋଳ ଗ୍ରାମ; ନିଦାଘ ରଜନୀ
ସ୍ୱେଦ ସିକ୍ତ କରେ ଶଯ୍ୟା, ଆଜି ଗୋ ସଜନି
ଶୟନେ ବିଦାୟ ଦିଅ । ବସ ମୋ ପାଶରେ
ଆଣ ସେଠୁ ତାଳବୃନ୍ତ ବ୍ୟଜନ ମୁଁ ଧରେ
ବିଞ୍ଚିଦେବି ଦେହୁ ସ୍ୱେଦ; ତା'ପରେ ନୀରବ
ଏ ନିଶୀଥ, ଗୁଞ୍ଜରିତ କରି, ଅନୁଭବ—
ଦୁହିଁଙ୍କର, ପରସ୍ପରେ ହେବା କୁହାକୁହି;
ଅମ୍ଳ-ମଧୁ ପରିହାସ ହେବା ସୁହାସୁହି ।
ଶେଷେ ନିଶା-ଶେଷେ ଯଦି ସୈନ୍ଧବ ପବନ
ଶୀତ ସ୍ପର୍ଶେ ତନ୍ଦ୍ରାଜଡ଼ କରିବ ନୟନ
ସଧୀରେ ଶୁଆଇଦେବି, ଦରିଦ୍ର ଶୟନେ
ଉପାଧାନେ ଥୋଇ ମଥା । ଭୟ ଅକାରଣେ
କର ନାହିଁ ସଖୀ ମତେ । ଅଙ୍ଗ-ଆବରଣ
ଆବୃତ ରଖି ଗୋ ଥିବ ଉରୁରୁ ଚରଣ ।

## ଅନୁରୋଧ

ଚେତା ନ ହରାଉଁ ସଖୀ ଗଭୀର-ଶୟନେ,
ଶୁଣ ଖାଲି ପଦେ କଥା କହେ ମୁଁ ଶ୍ରବଣେ ।
ନଶ୍ୱର ମାନବ-ଜୀବ, ଅଗ୍ନିକଣା ପରି
କାହୁଁ ଜଳିଯାଏ କାହିଁ ଶୂନ୍ୟରେ ସଞ୍ଚରି ।
କ୍ଷୁଦ୍ର ଏ ଜୀବନ ପୁଣି ଅସଂଖ୍ୟ ଜଞ୍ଜାଳେ

ଜଡୀଭୂତ; ଜଳେ ନୁହେଁ ଅଧିକେ ଜମ୍ମାଳେ
ପରିପୂର୍ଣ୍ଣ ମାନବର ଜୀବନ-ସରିତ,
ରସ ପାଇଁ ଯୁଦ୍ଧ ଚାହି ବିଷର ସହିତ ।
ଦୁଃଖମୟ ଏ ସଂସାରେ, ନିତ୍ୟ ଦୁର୍ଦ୍ଦିନରେ,
ଏକମାତ୍ର ଆଶା ଖାଲି ମାନବ ପ୍ରାଣରେ ।
ପ୍ରାଣ ପାଶେ ଠିଆକର ପ୍ରାଣ ତବ ସଖି,
ବିଶ୍ୱାସ, ପ୍ରଣୟ, ପ୍ରୀତି ପରସ୍ପରେ ରଖି,
ପଙ୍କରୁ ପଙ୍କଜ ଏଥି ଫୁଟାଇବା ଆସ,
ଦୁଃଖ ମଧ୍ୟେ ଏ ଜୀବନ ହେଉ ଦୀର୍ଘ-ରାସ ।

## ଜୀବନ-ପଥ

ଆଣ ତବ କର ସଖି, ଧରେ ମୁଁ ନିବିଡ଼େ
ଚାଲିବା ସରଣୀ ଖୋଜି, ଏ ସଂସାର-ଭିଡ଼େ
ଜୀବନ-ସଂଗ୍ରାମ କାଟି । ମିଥ୍ୟା, ବ୍ୟଭିଚାର,
ଦାରିଦ୍ର୍ୟ, ଲାଞ୍ଛନା, ଦୁଃଖ, ଦୈନ୍ୟ, ଅବିଚାର
ସମସ୍ତ ଜିଣିବା, ଆତ୍ମା ଆତ୍ମାରେ ମିଶାଇ
ଦୁର୍ଦ୍ଦିନ କାଟିବା ପରସ୍ପର ମୁଖ ଚାହିଁ ।
ଅନ୍ୟୋଽନ୍ୟ ପ୍ରଣୟ ହେଲେ ବର୍ମ ଅନ୍ୟୋଽନ୍ୟର
ଛୁଇଁ ନ ପାରିବ ଦୁହେଁ ଦୁଃଖ ଜଗତର ।
ଦୁହିଁଙ୍କର ପଦ-କ୍ଷତ ଦୁହିଁଙ୍କ ଲୋତକେ
ପୋଛିବା ଯଦି ଗୋ, ବ୍ୟଥା ତୁଟିବ କ୍ଷଣକେ ।
ପ୍ରେମହୀନ ଏ ସଂସାରେ ବିତରି ପ୍ରଣୟ,
ଆଘାତକୁ ଆଶୀର୍ବାଦ ଦେଇ ବିନିମୟ,
ବଞ୍ଚିବା ଜୀବନ ଯଦି, ଆମ୍ଭ ଯିବା ପଥେ,
 କଣ୍ଟକ ଫୁଟିବେ ପୁଷ୍ପ ସମ ପଛେ ପଛେ ।

—

## ଜୟେ-ପରାଜୟେ

ଗୁଣବତୀ ହେ କିଶୋରି, ମାନ-ଅଭିମାନ
ଘେନା-ଘେନି, ତ୍ୟାଗ-ଭୋଗ, ଦ୍ୱନ୍ଦ୍ୱ-ସମାଧାନ
ଏସବୁ ମଧ୍ୟରେ ଆମ୍ଭ ପ୍ରେମ-ଶତଦଳ
ଫୁଟିଉଠୁ ପଦ୍ମ ଯଥା ଫୁଟେ ଭେଦି ଜଳ ।
ସଂସାର-ସଂଗ୍ରାମେ ଯୁଝି ଜୟମାଲ୍ୟ ଧରି,
କୁଟୀରେ ଫେରିବି ଯେବେ, ତୁମ୍ଭେ ସହଚରି,
ସ୍ୱର୍ଣ୍ଣ-ଭୁଜ ମାଳା ମୋର କଣ୍ଠେ ଦେଇ ଭିଡ଼ି,
ଚୁମ୍ବନ-ତିଳକ ସ୍ୱିନ୍ନ-କପାଳେ ନିବିଡ଼ି,
ସାର୍ଥକ କର ମୋ ଜୟ । ଫେରିବି ଯେ ଦିନ
ଭଗ୍ନଜାନୁ, ଅବସନ୍ନ, ପରାଜୟ ଦୀନ
ସେଦିନ ଜନନୀ ସମ ତୋଳି ମତେ ତଳୁ,
କଲ୍ୟାଣ-କୋମଳ ହସ୍ତେ ନିଖିଳ ଅଙ୍ଗରୁ,
ପୋଛିନେଇ ସବୁ ଦୈନ୍ୟ, ସବୁ ଅପମାନ,
ଦେବ ମତେ ତବ ପ୍ରେମ— ମୋ'ଶ୍ରେଷ୍ଠ ସମ୍ମାନ ।

## ଭଗିନୀ

ଏଇ ଗୀତ ଶେଷେ ଆସ ଦୁହେଁ ନମସ୍କାର
କରିବା, ତାରେ ଯେ-କରି ଚିକୁର ସଂସ୍କାର,
ଅଙ୍ଗେ ଦେଇ ଆଭରଣ, ନୟନେ କଜ୍ଜ୍ୱଳ
ତୁମ୍ଭରେ ଆଣଇ, ବାଂଛି ଅନନ୍ତ ମଙ୍ଗଳ
ଦୁହିଁଙ୍କର, ମୋ ମନ୍ଦିରେ ଶାନ୍ତ ନିଶୀଥରେ
ଶୟନ ସଜାଡ଼ି ଦିଏ ମାତୃସ୍ନେହ ଭରେ ।
ଦୁଃଖିନୀ ଭଗିନୀ ମମ ଜାଣ ସେ କଲ୍ୟାଣୀ
ଏକ ବୃନ୍ତେ ଯୁଗ୍ମ ପୁଷ୍ପ ଆମ୍ଭେ ଦୁହେଁ ଜାଣି;
ଏକ ଲାଗି ଆନ କାନ୍ଦେ, ରହି ଦୂରେ ଦୂରେ
ମୁଁ କାନ୍ଦେ ବିଦେଶ ଭୂମେ, ସେ ଚିଲିକା-କୂଳେ ।

ପୋଛିବି କେମନ୍ତେ ନୀର ତା'ର ନୟନର
ସଖି ଗୋ ନ ଜାଣେ ମୁହିଁ । ଦୀନ ଦରିଦ୍ରର
କାହିଁ ଏ ଜଗତେ ସେହି ପୁଣ୍ୟ ଅଧିକାର ?
ମୋ ସ୍ୱାଧ୍ୱୀ ଭଗିନୀ ଭୁଞ୍ଜେ ତେଣୁ ଅତ୍ୟାଚାର ।

## ପ୍ରେମିକର ଅଧିକାର

କିଶୋରି ଜାଣ ଗୋ ମତେ ଦରିଦ୍ର ଭିଖାରି,
ତୁମ୍ଭର ପ୍ରଣୟ-ଦ୍ୱାରେ; କର-ପୁଟ ପାରି
ମାଗିବି ବିନୀତେ ତବ ମହାର୍ଘ ପ୍ରଣୟ
— ସେହି ମୋର ଅଧିକାର । ନିର୍ଦ୍ଦୟ-ହୃଦୟ
ହୋଇ ଯଦି କହ ଦିନେ— 'ତୁମ୍ଭେ ଅଭାଜନ
ମୋ ପ୍ରେମର, ଯାଅ ଫେରି, ପ୍ରଣୟ ଯାଚନ
ରଖି ମୁଁ ପାରିବି ନାହିଁ'— ଫେରିବି ନୀରବେ
ତୁମ୍ଭର କୁଟୀର-ଦ୍ୱାରୁ, ପ୍ରଣୟୀ-ଗରବେ
ନ ତେଜିବି ଅଶ୍ରୁବିନ୍ଦୁ । ଫେରି ମୋ କୁଟୀରେ
ବିରଚିବି ସ୍ୱର୍ଣ୍ଣ-ସୀତା, ଉଷ୍ଣ ଅଶ୍ରୁନୀରେ
ଅଭିଷିକ୍ତ କରି ତା'ରେ ଦେବି ଅନୁରାଗ
ଜୀବନ୍ତ ପ୍ରେୟସୀ ଭାଳି । ଏ ପ୍ରଣୟ-ଯାଗ
ଶୁଣି ଯଦି ଆସ ଦିନେ ତେଜି ସିଂହାସନ
ତହିଁରେ ହୋଇବ ମୋର ବ୍ରତ ଉଦ୍‌ଯାପନ ।

## ଭଗିନୀ

ଜନନୀର ଜନ୍ମାନ୍ତର ଅପା ତୋ ଚରଣେ,
ଦୁହିଁଙ୍କର ଶିର ଲାଗୁ ଜୀବନେ ଜୀବନେ ।
ଏ ଜନ୍ମେ ତୋ ଲାଗି ତ୍ୟକ୍ତ ଅଶ୍ରୁ ଦୁହିଁଙ୍କର,
ଅଶ୍ରୁହୀନ କରୁ ଅପା ତୋର ଜନ୍ମାନ୍ତର ।
ଜୀବନେ ଜୀବନେ ଦୁହେଁ ତୋର ନେତ୍ର ତଳେ,

ତୋହରି ଚରଣ-ପ୍ରାନ୍ତେ ଏକ ଶୟନରେ,
ତୋହରି ସନ୍ତତି ସମ, ଲଭୁ ଲୋ ଆଶ୍ରୟ
ସ୍ରଷ୍ଟାପଦେ ସେହି ମୋର ଯାଚିତ-ବିଷୟ ।
ତୋ ଲାଗି ବିଦେଶ ଭୂମେ ଯେବେ ଅଶ୍ରୁ ଢାଳି
ତୋ କଥା ଭାବିଛି ବସି ଏ ବକ୍ଷ ପଖାଳି,
ସେ ଆନନ୍ଦ, ଆତ୍ମାର ସେ ଦିବ୍ୟ ଅନୁଭବ
ସକଳ ସୁଖରେ କରିଅଛି ପରାଭବ ।
କେତେ ଲାଗି ଢାଳିଅଛି କେତେ ତ ଲୋତକ,
ତୋ ଲାଗି ଯେ ଅଶ୍ରୁ ତାହା ପବିତ୍ର ଉଦକ ।

## ସତ୍ୟ-ସୁଖ

ସୀମାହୀନ ମହାକାଳ, ସୃଷ୍ଟି ସୁବିପୁଳ
କୋଟି କୋଟି ଗ୍ରହତାର । ଯହିଁ ନିତ୍ୟ ଠୁଳ,
ତହିଁ ସଖି ଆମ୍ଭର ଏ ଦୁଇଟି ଜୀବନ
ଦୁଇ ବିନ୍ଦୁ ରେଣୁ ସମ । ନିଦ୍ରିତ-ସ୍ୱପନ
ସମାନ ଜୀବନ-ଲୀଳା ଏ ଧରଣୀ ପରେ,
ବୁଦ୍‌ବୁଦ ସମାନ, ମହା-ସୃଷ୍ଟି-ସମୁଦ୍ରରେ ।
କେଉଁ ଅହଂକାରେ ହୋଇ ଅଣୁଁ ଅଣୁତର,
କହ, କାଳତୀରେ ସ୍ଥିର ମନ୍ଦିର ଯଶର
ତୋଳିବାକୁ ଯିବୁ ସଖି ? ମିଥ୍ୟା ସେ ବାସନା,
ମିଥ୍ୟା ଏହି ଜଗତର ଗୌରବ ଗଣନା,
ମିଥ୍ୟା ଏହି ଧନ ମାନ । ମିଥ୍ୟା ତେଜି ସଖି
ଦୁହେଁ ଆସ ନେତ୍ରକୋଣେ ନେତ୍ରକୋଣ ରଖି
ଯୁକ୍ତ କରି ଦୁଇ ଆତ୍ମା ନୀରବ ମିଳନେ
ଏକ ମାତ୍ର ସତ୍ୟ-ସୁଖ ଭୁଞ୍ଜିବା ଭୁବନେ ।

---

# ଜ୍ୟୋସ୍ନା-ଭୋଗ

ଶୀତଳ ଜୋଛନା ସଖି ବ୍ୟାପିଛି ଭୁବନ
ଧରଣୀରେ ଦେଇଛି କେ ସ୍ୱପ୍ନ ଆବରଣ,
ଛାଡ଼ି, ବଞ୍ଚିବା-ଜଞ୍ଜାଳ,
ଆସ ଗାଢ଼େ ଭୋଗବା ଏ ଅତୀନ୍ଦ୍ରିୟ କାଳ ।

ନୂତନ ବସନ୍ତ ଆସି ଧରଣୀ ଦୁଆରେ
ପ୍ରଚାରଇ ଅଭିଯାନ ମଳୟ ପ୍ରସାରେ ।
ସେହି, ଦକ୍ଷିଣା ପରଶେ,
ଜଡ଼ ଚିତ୍ତ ତେଜିଉଠେ ଯଉବନ-ରସେ ।

ନାହିଁ ସୁଖ ଏକା ଏକା ଭୋଗି ଆନନ୍ଦରେ,
ଆସ ସଖୀ ଧୀରେ ମିଶ ପଛୁ ମୋ ସ୍କନ୍ଧରେ ।
ତବ ବଦନ ସୁଗନ୍ଧ,
ଉଚ୍ଚାଟରେ କରୁ ମୋର ବାସନା ବିବନ୍ଧ ।

ଧରଣୀରେ ଜୋଛନାର ନିବିଡ଼ ଆବେଶ
ଏକାକୀର ଚିତ୍ତେ ଆଣେ ଶୂନ୍ୟତା ବିଶେଷ,
ଏକ, ଦୁଇ ଖୋଜୁଥାଇ
ଦୁଇ ପ୍ରାଣ ଆନେ ଆନେ ଟାଣିହୋଇଯାଇ ।

ବାର ବାର ଚାନ୍ଦିନୀର ମୁକତ ସଭାରେ
ସଖିରେ ତୋହର ଲଜ୍ଜାମୌନ ଅଙ୍ଗୀକାରେ,
ଧୀରେ, ଫେଇ ଆବରଣ
କରିଅଛି ତୋ ରୂପର ବନ୍ଧନ ମୋଚନ ।

ଚନ୍ଦ୍ରିକା ଚିତ୍ରଣେ ଯେଉଁ ବର ଦୂଳୀଧର
ସ୍ୱପ୍ନପୁରୀ କରେ ରୁକ୍ଷ ଧରା କଳେବର;
ତବ, ମୁକ୍ତ ଦେହ ଶିରୀ
ନୁହେଁ କି ସେ ଚିତ୍ରକର ନୀରାଜନା ପରି ?

ସ୍ୱର୍ଣ୍ଣଶସ୍ୟ ଭାରେ ନତ ଧାନ୍ୟ ଲତା ସମା
ମୁକ୍ତବେଣୀ ହୋଇ ଉଭା ହେଲେରେ ଉତ୍ତମା
ମୁଗ୍ଧ ଏ ରୂପ-ପୂଜାରୀ
ଚୁମ୍ବିଯାଏ ଆନ ପୂଜା ଜାଣି ନାହିଁ ପାରି ।

ତୁମ୍ଭେ ଚକ୍ଷୁ, ତୁମ୍ଭେ ଓଷ୍ଠ, ତୁମ୍ଭଇ କପୋଳ,
ତୁମ୍ଭେ କଣ୍ଠ, ବାହୁ, ଉରକୁସୁମ ଯୁଗଳ,
ତୁମ୍ଭେ, କୁଞ୍ଚିତ କୁନ୍ତଳ
କେ କିସ କହିବ ? ନର, ଦାସ ତ ରୂପର ?

ଲତା ସମ ନିଜ ଦେହ ଜଡ଼ାଇ ମୋ'ଠାରେ,
ତମେ ଶାନ୍ତ କର ତୀବ୍ର ପ୍ରାଣ-ପିପାସାରେ,
ସେହି, ମିଳନ ପ୍ରକାଶ
ଦେଖିଛନ୍ତି ଖାଲି ଏହି ଚନ୍ଦ୍ରିକା, ଆକାଶ ।

ଆଜି ପୁଣି ସେ ଚନ୍ଦ୍ରିକା ଆସିଛି ଭୁବନେ
ପୁଣି ଗୋ ପିୟାସୀ ମୁହିଁ ନିବିଡ଼ ମିଳନେ,
ପାଦେ, ଜୀଇଁବା ଜଞ୍ଜାଳ,
ଠେଲିଦେଇ, ଆସ କ୍ଷଣେ ଭୋଗିବା ଏକାଳ ।

## ବିରହୀ-ଗାଥା

ବିରହ-ବିଧୁରେ ମନ ମନ୍ଦିରେ
ତୁମରି ଚରଣ-ପାତ ହିଁ ଶୁଣେ,
ଚିତ୍ତ ନିଖିଳ ବିରହ-ଅଥିର
ଭବିଷ-ମିଳନ-ମାଧୁରୀ ଗୁଣେ ।
ଧାଏଁ ମନୋରଥ ସଖୀ ଅବିରତ
ତୁମରି କକ୍ଷ-ଗବାକ୍ଷରେ,
ଦେଖିବାକୁ, ତୁମେ ପ୍ରିୟଲାଗି ଭୂମେ
ଅଛ ଯେ ଶାୟିତା ବିଚ୍ଛେଦରେ ।
ଦୂରୁ ମନୋରଥ ଇଚ୍ଛା ପଣତ
ଟୋଳି, ଟୋଳି ନେବ କାନ୍ତ ତନୁ,
ଅଶ୍ରୁ ପୋଛିବ ଉଢାରି ଶିବ;
ଆଣିବ ସାଉଁଳି ସେ ଭୂରୁ-ଧନୁ ।
ତନୁ ତନୁଲତା ହୃଦୟେ ଶାୟିତା
କରି କାନେ ଦେବ ସାନ୍ତ୍ୱନା,

ମୁଖ ଆଘ୍ରାଣି, ଧରି ଧୀରେ ପାଣି
କହିବ 'ଅଶ୍ରୁ ମୁଞ୍ଚନା' ।
କି କରୁଛ ଅୟି, ଅନ୍ତର ଦହି
ତୀକ୍ଷ୍ଣ କଠୋର ବିରହ-ବାଣେ,
ତୁମର ଚିତ୍ତ ବିଦ୍ଧ ବ୍ୟଥିତ
ମୋର ଏ ପ୍ରାଣର ବ୍ୟଥା କି ଜାଣେ ?

(୨)

ଭୁବନ ପାନ୍ଥ-ଶାଳାରେ ଯେତେକ
ରୁଣ୍ଡ ପାନ୍ଥ ଯାତ୍ରା ପାଇଁ,
ମୋ ପରି ଦୁଃସ୍ଥ ଅକିଞ୍ଚନ ବା
ମୂଲ୍ୟବିହୀନ କେହି ତ ନାହିଁ ।
ନୟନ ଆଗେ ଯେ ଭାଗ୍ୟବନ୍ତ
ଯାଆଁତି ସକଳ ଯାତ୍ରୀ ପଥେ,
ମିଶିବି କିପରି ସାଥିରେ ତାଙ୍କ
ନିଜର ଦୈନ୍ୟ ଖାଏ ଯେ ମତେ ।
ସରମଭରେ ମୁଁ ତେଣୁ ଏ ଭୁବନେ
ନ ପାରେ କାହାଠି ଚିତ୍ତ ଖୋଲି,
ମରମେ ମୋର ଯେ ପ୍ରଣୟ ତୋହର,
କାହାକୁ ଏ କଥା ଲାଜରେ ବୋଲି ?
ପାଥେୟ ଆଉ କି ଅଛି ଗୋ କହ,
ତଥାପି ମୋର ଏ ଜୀବନ-ପଥେ,
ତୋହର ପ୍ରଣୟ ପରମ ସିନା ଗୋ
ଜଗତେ ମଣିଷ କରିଛି ମତେ ।
ପରାଣ ଭିତର ଅନ୍ଧକାରରେ
ମାଣିକ ସମାନ ଜଳଇ ତାହା,
ଦୂରଦିନ ଘୋର ତାମସ ପଥରେ
ଦେଖାଇଦେବ ସେ ମତେ ଗୋ ରାହା ।

(୩)

ଅନେକ ବେଳେ ଗୋ ଭାଳଇ ସଜନି,
ଏଇ ଜନମରେ ହେଲା କି ଦେଖା,

ଏଇ ଜନମର ଚିହ୍ନା-ଚିହ୍ନି
କାଟିଲା କି ଏଡ଼େ ଗଭୀର ରେଖା ?
ଅପରିଚିତ କି ଥିଲେ ଆଗେ ଆମେ,
ଏଇ ଜନମର ପୂର୍ବ ପାରେ
କୁନ୍ତଳ ତବ ସଜାଉଥିଲି କି
ଆରେକ କାହାର ପୁଷ୍ପମାଳେ ?
ଜୋଛନା ରାତିରେ ଜଡ଼ିତ ଚରଣେ
ଆଉ କେ ତମର ଶୟନ-ଧାରେ,
ପରଶୁଥିଲା କି ତୋଳି ଧରିବାକୁ
ହଲାଇ କୋମଳେ ବକ୍ଷହାରେ ?
ଚରଣ ତଟରେ ଲଗାଉଥିଲା କି
ଅଲକ୍ତ ଆନ ଅଙ୍ଗୁଳି
ଆଉ କା'ର ଓଠ ଶୁଣାଉଥିଲା କି
ଶ୍ରବଣ କୁହରେ ଗୁଞ୍ଜରି ?
ନାହିଁ ନାହିଁ ! ମିଛ ! ବକ୍ଷେ ଜାଳଇ
ବହ୍ନି ସେ ସବୁ କଳ୍ପନା,
ତୁମେଇ ମୋହର ସଖୀ ସନାତନୀ
ଜନମେ ଜନମେ ସାନ୍ତ୍ୱନା ।

(୪)

ଗଣନା-ଅତୀତ ସୂର୍ଯ୍ୟ, ତାରକା
ନକ୍ଷତ୍ରର ସୃଷ୍ଟି ଲୟେ,
ତୁମେ ଅବା ମୁହିଁ କେଉଁଠି ଥିଲେ ଗୋ
ଏ ଜୀବନ ଧରି ନିତ୍ୟ କ୍ଷୟେ ?
ସୃଜନ ବାସନେ ଥିଲେ କି ଆମେ ଗୋ,
ସୃଷ୍ଟିକାରୀ ସେ ବିଷ୍ଣୁର
ନୀହାରିକା କୋଟି ବିନ୍ଦୁ ମେଳରେ
ଯୋଡ଼ିଏ, ପ୍ରଣୟ ସଂକୁଳ ?
ତା'ପରେ ସକଳ ସୃଜନଧାରାରେ
ଥିଲେ କି ଦୁଇଟି ବିନ୍ଦୁ ହୋଇ

ସକଳ ରୂପର ଭୋଗିଣ ମରମ,
ସକଳ ଜନମେ ଯୁଗ୍ମ ରହି ?
ଅୟୁତ ଅୟୁତ ଜନମ ବିତାଇ,
ପୁଣି ଗୋ ପୁରୁଣା ଧରଣୀ ତଳେ
ଜନମ କି ଆମେ ଯୁଗଳ ପରାଣ
ମାନବ ଶରୀରେ ମାନବ ଘରେ ?
ଅଭିଯାନ ଏହି ଯୁଗ୍ମ ପ୍ରାଣର
ବିପୁଳ କାଳର କକ୍ଷେ କକ୍ଷେ,
ବୋଲି ପାରିବ କି ସଙ୍ଗିନୀ ମୋର,
କେଉଁ ସେ ନିଗୂଢ଼ ଗୁପ୍ତ ଲକ୍ଷ୍ୟ ?

(୫)

ଅୟୁତ ନିୟୁତ ଜନମ ଶେଷରେ
ଆଉ ଥରେ ପୁଣି ମାନବ-ଦେହେ,
ନୀହାରିକାର ସେ ଯୁଗ୍ମ ବିନ୍ଦୁ
ମିଳନ ଖୋଜଇ ନିବିଡ଼ ସ୍ନେହେ ।
ତେଣୁ କି ତୀବ୍ର ମିଳନ-ଆଶା,
ନିତ୍ୟ ଉଠଇ ବାରମ୍ବାର
ତେଣୁ କି ତୁମର କାନ୍ତ ଦେହେ
ବାସନା ମୋ ତନୁ ମିଶାଇବାର ?
ତେଣୁ କି ଆଜି ଏ ବିଚ୍ଛେଦରେ
ହୃଦୟ ମୋ ଚାହେଁ ବାହାରିଯିବ
ଭଗ୍ନ କରି ଏ ଶରୀର-ବନ୍ଧ
ଯେଉଁଠି ତାହାର ସଙ୍ଗୀ ଥିବ ?

(୬)

ମରଣ-କପାଟ ପଡ଼ିବ ଯେବେ ଗୋ
ଏହି ଜନମର ସରଣୀ ଶେଷେ,
ନୂତନ ପଥରେ ଯାତ୍ରା କି ହେବ
ପୁଣି ଗୋ ନୂତନ ଯୁଗଳ ବେଶେ ?
ତାରାରେ ତାରାରେ ଯିବା କି ମିଶି ଗୋ
ବିପୁଳ ବ୍ୟୋମର ପଙ୍ଗତେ,

ଭ୍ରମିବା ଯୁଗଳ ଜ୍ୟୋତିର୍ମନ୍ତ
ଅଗଣ ତାରକା ସଙ୍ଗତେ ?
ଅଥବା ସଜନି, ଫେରି ବା ଆସିବା
ଅନ୍ୟ ବେଶେ ଏ ଧରଣୀ ପରେ,
ଅନ୍ୟ ଦେଶରେ ଅନ୍ୟ ଜାତିର
ଆଦର-ତପ୍ତ କୁଟୀର ତଳେ ?
ଅଥବା ହେବାରେ ପୁଳିନେ କାହିଁବା,
ପ୍ରଣୟ ବିଧୁର ଚକ୍ରବାକ,
ମଧୁର-ଦୁଃଖ ଭୋଗବା ଶୁଣି ସେ
ପରସ୍ପରର ବିରହ-ଡାକ ?

(୭)

ଯହିଁବା ଯାଏ ମୁଁ ଯେଉଁଠି ଥାଏ ବା,
ନିର୍ଦ୍ଦେଶ ବଳେ ସ୍ରଷ୍ଟାର
ତୁମ୍ଭେ ନିକି ମୋ ପାଶରେ ଥିବ ଗୋ
ଶୁଣାଇ ରସନା ଝଙ୍କାର ?
ମୂର୍ଖ ସବୁରେ ମୁକ୍ତି ମାଗଇ
ସ୍ୱର୍ଗ ମାଗଇ ତପଶ୍ଚାରୀ,
ସ୍ୱର୍ଗ ମୋହର ଚିରନ୍ତନ ଗୋ
ତୁମେଇ ଜୀବନ ସଙ୍ଗ-ତରୀ ।
ତୁମରି ବାହୁର ମୃଣାଳ-ଲତିକା
ଥିଲେ ଛନ୍ଦିତ ଏ ମୋର ଗଳେ
ଅକୁଣ୍ଠିତରେ ଚଳିବି ଗୋ ମୁହିଁ
*ଜାହାନ୍ନାମର ଗଭୀର ତଳେ ।

## ଯୋଗ୍ୟ ହେବି

ବିକଚ କୁସୁମ କର ନାଥ,
ଯୋଗ୍ୟ ହେବି ତା କେଶ ଶୋଭନେ,
ବିଶୁଦ୍ଧ ସୁବର୍ଣ୍ଣ ମତେ କର,
ଲାଗିବି ତା ଦେହ ଭୂଷଣେ ।

*ଜାହାନ୍ନାମ-ଯାବନିକ ଭାଷାରେ ନରକ ।

ଜୀବନକୁ ଶୌର୍ଯ୍ୟମୟ କର
କାଳେ ତା'ର ପାଇବି ପ୍ରଶଂସା,
ବିଶୁଦ୍ଧ ପୁରୁଷ କର ମତେ
ତା' ସଖିତ୍ୱ ପାଇବି ଭରସା ।

## ବିରହ-ପ୍ରଦୀପ

କେ ଜାଳିବ ସନ୍ଧ୍ୟା ଦୀପ ଆଜି,
ଅନ୍ଧାର ଯେ ରହିଲା କୁଟୀର,
ମନ୍ଦିରର ଦେବୀ ଗଲେ କାହିଁ,
ଚାରିଆଡ଼ ନୀରବ ଗଭୀର ।

ବାହାର ଭିତର ଚାରିଆଡ଼େ
ଅନ୍ଧକାର ବ୍ୟାପିଛି ପରାଣେ,
ପ୍ରଦୀପ ଆଣିଲେ ଆନ କେହି
ସେ ଆଲୋକେ ପରାଣ ନ ମାନେ ।

ଆଖି ଖୋଜେ ସେହି ପରିଚିତ
ନର୍ମଦାୟୀ କମନୀୟ କରେ,
ଜଳିବାର ସ୍ୱର୍ଣ୍ଣଦୀପ ଶିଖା
ଝାପସାଇ କୃଷ୍ଣ ନୟନରେ ।

ସେ ଯେ ନାହିଁ, ସେ ଯେ ନାହିଁ ଆଜି,
ଆଲୋକ ତ ହରାଇଛି ଜ୍ୟୋତି,
ଶାମୁକା ମାଟିରେ ଅଛି ପଡ଼ି
ନେଇ ତ ଯାଇଛି କିଏ ମୋତି ।

ତେବେ କିପାଁ ବୃଥା ଏ ଆଲୋକ,
ଅନ୍ଧକାର ରହୁ ଏ କୁଟୀର,
ସ୍ମରଣର ପ୍ରଦୀପ ଲଗାଇ,
ଆଲୋକିବି ଆତ୍ମା ବିରହୀର ।

—

# ଶ୍ରାବଣ-ଅଭିସାର

ପ୍ରଳୟିତ ଘନ ଘୋର ଶିରାବଣ ନିଶୀଥ
ଅ-ସର ଆସାରେ ପୁର, ବିଲ, ବନ ବ୍ୟଥିତ;
ଅଣଚାଶ ବହେ ଘୋର ବତାସି
ଆକାଶରେ ନାହିଁ ତାରା, କାଳିମା-ବିକଟ ଧରା,
ଝଡ଼େ ଜୀବ ହୋଇଉଠେ ହତାଶୀ ।

କଳକଳ, ଛଳଛଳ ବରଷାର ସଲିଳ
ବହିଯାଏ ଧାରେ ଧାରେ ଖାଇ ପଥ ଗଭୀର,
ତାଳଗଛ ଦୋଳେ ଝଡ଼ ପବନେ,
ଚାରିଆଡ଼ ସାଇଁ ସାଇଁ ଜନପ୍ରାଣୀ କେହି ନାହିଁ
ଦୁଆର ଆଉଜା ପ୍ରତି ଭବନେ ।

ବୁଜା ବାତାୟନ ଥରେ ବତାସିର ଦମକେ,
ବିଜୁଳି ଝଲକେ ଜାଗରିତ ବୁକୁ ଚମକେ,
ଯୁଝେ ରତ ଆକାଶର ଦାନବେ
ଘଡ଼ଘଡ଼ି ଚଡ଼ଚଡ଼ି ଘଡ଼ିକେ ଘଡ଼ିକେ ରଡ଼ି
ପୂରଇ ଭୁବନ ଘୋର ଆରବେ ।

ମନ ନାହିଁ ଲାଗେ ମୋର, ଘରେ ରଜନୀରେ ଗୋ
ଜୁଆର ଉଠଇ ହ୍ରଦ ଯମୁନାର ନୀରେ ଗୋ,
ତୀର ଡେଇଁ ଯିବ ବହି କୁଆଡ଼େ,
ଦୁଆର ଖୋଲ ହେ ଖୋଲ, ଶ୍ରାବଣର ଘନ ରୋଳ
ମିଶୁ ଆସି ମୋ ହୃଦୟ ଜୁଆରେ ।

ଲାଗଇ ଯେପରି କିଏ ଖୋଜେ ମତେ ପରାରେ
ପ୍ରାଣର ପୀଡାରେ ବାହାରିଛି ଏହି ଅକାଳେ ।
ହୃଦୟ ମୋହର ତେଣୁ ଉଥଳ,
ମନ ନାହିଁ ଘରେ ଧରେ ମୁକତ ଆକାଶ ତଳେ
ବତାସିରେ ଖୋଜିବି ସେ ଦୋସର ।

ମଥାରେ ପଡୁସେ ଧାରା, ଆଖେ ବାଜୁ ତୋଫାନ
ଖସଡୁ ଚରଣ, କାନେ ପଶୁ ମେଘ-ବିଷାଣ,

ପାଗଳ ପରି ମୁଁ ତାକୁ ଖୋଜିବି,
ଖୋଜିବାକୁ ଚରାଚର ମେଲାଇ ମୁଁ ଦୁଇ କର
ଶ୍ରାବଣ ବତାସି ଦେହେ ହଜିବି ।

ପାଏ ବା ନପାଏ ତାକୁ ନାହିଁ ତହିଁ ଶୋଚନା
ଏ ଘରେ ନିଶୀଥେ ଖାଲି ଅଭିସାର ରଚନା
କରିବି ମୁଁ ପ୍ରିୟଜନ ପାଇଁରେ,
ପ୍ରାଣେ ମମ ବ୍ୟାକୁଳତା କହିବାକୁ ପ୍ରାଣ ବ୍ୟଥା
ବରଷା ବିଜୁଳି-ଘୋର ଭୂଇଁରେ ।

ବାଧା ଡ଼େଇଁ ଅଭିସାର, ପୀରତିର ବିଳାସ
ପାଇବାଠୁଁ ଖୋଜିବାରେ ପ୍ରଣୟର ପ୍ରକାଶ,
ତେଣୁ ଏ ବତାସି ଘୋର ନିଶୀଥେ,
ଘର ଛାଡ଼ି ପଥେ ବନେ ଖୋଜିବାକୁ ପ୍ରିୟଜନେ
ହୃଦୟ ପୂରଇ ଘୋର ବ୍ୟଥିତେ ।

ଜୀବନେ ଜୀବନେ ମମ ନାହିଁ ଆନ ଯାଚନା
ଧନେ ମାନେ ନୋହୁ ମୋର ସୁଖନୀଡ଼ ରଚନା,
ପ୍ରାଣ ଚାହେଁ ଏହିପରି ବତାସେ,
ବରଷା ବିଜୁଳି ସହି, ଯିବି ନିଶାପଥେ ଧାଇଁ
କର ମେଲି ପିୟଜନ ସକାଶେ ।

ପାଖ ଛାଡ଼ି ତୁରେ ସଖୀ ଯାଅ ଚାଲି ବାହାରେ
ପୋଡ଼ି ହୁଅ ଯାଇ ଘୋର ବିରହର ଦାହାରେ
ଆନ ଆନେ ଏ ନିଶୀଥେ ଖୋଜିବା,
ଲୁହ ମିଶୁ ବରଷାରେ, ଅଦମିତ ତୃଷାରେ
ଅଭିସାର ସୁଖେ ଆଜି ମଜିବା !

ଜୀବନେ ଜୀବନେ ସଖି, ଏସନ ରଜନୀରେ,
ଆସିବୁ ତୁ ଧୋଇ ମେଘ ନୀରେ ତୋର ବେଣୀରେ,
ଆସାରେ ଓଦାଇ ଦେହ ବସନ,
ପ୍ରଣୟ ଯମୁନା କୂଳେ ଧାଇଁଥିବି ମୁଁ ବ୍ୟାକୁଳେ
ସମ୍ଭାଳିବ ଦିହିଁକର ସପନ ।

ଦୁଇ ଟୋପା ଲୁହ ସମ ଜନମ ଜନମରେ
ବିରହ ବ୍ୟଥିତ ହୋଇ ପ୍ରଣୟ-ସରମରେ
ବାହାରିବା ଏହିପରି ତୋଫାନେ
ଯୁଗ ଯୁଗ ଯିବ ସରି ଖାଲି ଅଭିସାର କରି
ଜୀବନ ଜୀବନ ପ୍ରତି ସୋପାନେ ।

## ମିଳନ-ମାଧୁରୀ

କିଶୋରୀ ଗୋ, ତବ ବକ୍ଷ-କମଳ
ମୋ ହୃଦ-କମଳ ପରେ
ରଖିଲ ଯା, ଟିକେ ରହ ଥିର ହୋଇ,
ଅନୁଭବ ତାହା କରେଁ ।
ପୁଲକିତ ଦେହ, ପୁଲକିତ ମନ
ଆଲୋକିତ ଅନ୍ତର,
କ୍ଷୁବ୍ଧ-ଶୋଣିତ, ଅଙ୍ଗେ ଅଙ୍ଗେ
ଆନନ୍ଦେ ଥର ଥର ।
କ୍ଷୁଦ୍ର ଜୀବନ ମହା ଜୀବନରେ
ଧୀରେ ଧୀରେ ଧୀରେ ମିଶେ
ଭାସିଯାଏ ଆମ ମିଳନ-ମାଧୁରୀ
ସୃଷ୍ଟିର ଦଶ ଦିଶେ ।
ଧରା ଜୀବନର ଜଡ଼ ଅନୁଭବ
ଦେହ ମନୁ ଧୀରେ ତୁଟେ
ହୃଦୟଦଳରୁ ସୌରଭ ସମ
ମହିମ୍ନ ସ୍ତବ ଫୁଟେ ।
"ଜୟ ଈଶ୍ୱର, ପତିତ ପାବନୀ,
ଲକ୍ଷ୍ମୀ ଗୋ, ଜୟ ନାରୀ,
ମଙ୍ଗଳ କର, ଜାଗ୍ରତ କର
କଲ୍ୟାଣ ତବ ଢ଼ାଳି ।
ତୋହର ପ୍ରଣୟ-ଉଷାର ପରଶେ
ମୋର ମନ ଶତଦଳ,
ବିକଶିତ ହେଉ ବସନ୍ତ ସମ
ସୌରଭେ ଟଳମଳ ।

ତୋହର ପାବନ ପୁଣ୍ୟ-ଶିଖାରେ
ନିର୍ମଳ କର ମତେ,
ଧରି ହାତ ମୋର, ଘେନି ଯାଅ ଯହିଁ
ଚିତ୍ତ ତୋ ଯେଉଁ ପଥେ ।

# ନିତ୍ୟ-ସ୍ୱୟମ୍ବର

ପ୍ରଥମ ବରମାଳ ଦେଲ ଯା ଗଳେ
ଶେଷ ମୁଁ ଭାବିଥିଲି ତାହାରେ,
ପ୍ରଥମ ଲଘୁଚାପ ଦେଲ ଯା କରେ,
ପ୍ରଥମ ପରଶ ମୋ ହିୟାରେ ।

ସଖି ଗୋ ଭାବିଥିଲି ଶେଷ ବୋଲି ତା,
ପ୍ରଥମ ସ୍ୱାଦ ନାହିଁ ପାଇବି,
ପ୍ରଣୟ, ଶୁଣିଥିଲି- ପ୍ରଥମ-ମିଠା,
ଶେଷେ ବିରାଗେ ଅବଗାହିବି ।

ଭେଟିଲେ ନିରଜନେ ହୁଏନି ଆଉ
ନୟନ ଲୋଳ, ମୁଖ ସ-ହସ
ହୁଏନି ପଛୁ-ଚାହାଁ ପାଖରୁ ଯାଉଁ,
ବଢ଼ିଲେ ପରା ପ୍ରୀତି-ବୟସ ?

ପ୍ରଣୟ-ଭୂମେ ଆସି ବହୁତ ପଥ
ଲାଗଇ ଏହା ମିଛ ପରି ତ,
ସଖିରେ ଆଦ୍ୟ-ଦାହ ହୋଇଛି ଗତ
ଅବଗାହିକି ପ୍ରୀତି-ସରିତ ?

ପହଣ୍ଡେ ଗଲେ ସେ ଯେ ପଛେ ଅନାଏ
ଅଛି କି ଗଲା ପ୍ରିୟ କୁଆଡ଼େ ?

ନିତି ତ ଅପେକ୍ଷିକା ପରିରେ ଥାଏ
ମିଳନ ଖୋଜୁଥାଏ ଉହାଡ଼େ ।
ନିତି ତ ଭୁଜମାଳା ବରଣେ ଟେକେ
ପ୍ରଥମ ପରି ଦ୍ୱିଧା-ହୃଦୟେ,
ନୟନ ଲୁହେ ପ୍ରିୟ-ସ୍ୱପନ ଦେଖେ,
ଦଳିତ ତା'ର ହିୟା ବିରହେ ।

ପ୍ରିୟ ବି ନିତି ତା'ର, ପ୍ରଣୟ ଲାଗି
ପ୍ରଥମ ପରି କରେ ଯାଚନା;
ପ୍ରତ୍ୟହ ସ୍ୱୟଂବରେ ତା' କର ମାଗି
ଭୁଲଇ ସବୁ ଦୁଃଖ ଲାଞ୍ଛନା ।
ପ୍ରୀତିର ଆଦି ଅଛି ଶେଷ ତ ନାହିଁ
ନିତି ସେ ନୂଆ, ଉଷା ପରିରେ,
ବନ୍ଧନେ ତହିଁ ଏକା ମୁକତି ପାଇ,
ସ୍ୱରଗ-ଅନୁଭୂତି ଶରୀରେ ।

## ଅତୃପ୍ତ ଭୋଗ

ଦୁଇଟି ନୟନରେ ନ ଆସେ ତୃପ୍ତି
ଲକ୍ଷ ନୟନରେ ଚାହିଁବି,
ଗୋଟିଏ ରସନାରେ ନ ପାଏ ମୁକ୍ତି
ବଚନ,– ଆଉ ହେଲେ ଗାଇବି ।
ଦୁଇଟି ଭୁଜେ ଭିଡ଼ି ସାରିଲେ ତାହାରେ,
ମୁଗ୍ଧ ଦେହ ଆଉ ଖୋଜଇ,
ଅଧର ଯେତେ ପାନ କଲେହେଁ ବିଳସି
ଅଗ୍ନି ପୁଣି ଓଠେ ଜାଗଇ ।
ଗୋଟିଏ ବକ୍ଷରେ ପୀରତି କୁଳାଏନି,
ନିୟୁତ ବକ୍ଷ ମୁଁ ଚାହେ ଯେ
ତାହାରେ ଭାବି, ସବୁ ଭୁଲିବି ଭାଳେଣି,
ମରିବି ତା'ର ଅବଗାହେ ଯେ ।
ଆଜି ମୁଁ ଚାହେଁ ତେଣୁ ମତେ ହେ ଦେବତା
ମିଳାଅ ପଞ୍ଚ ଏ ଭୂତରେ,
ସୀମାକୁ ଡେଇଁ ମୋର ଅସୀମ ମମତା
ବ୍ୟକ୍ତ ହେବ ବହୁ ରୂପରେ ।
ଜ୍ୟୋତ୍ସ୍ନା ମଳୟରେ ମିଶି ମୁଁ ପ୍ରିୟାରେ
ଦେବି ମୋ ଆଶ୍ଳେଷ ଅଗଣ,
ମିଳିଲେ ନୀଳାକାଶେ ତାରାରେ ତାରାରେ,
ତୃପ୍ତ ହେବ ଅବଲୋକନ ।

# ନବ-ଜନନୀ

ହେ ନବ-ଜନନୀ,
ସନ୍ତାନ-ଜନକ କରେ
ବିସ୍ମୟିତ ଭକ୍ତିଭରେ
ବନ୍ଦନା ଚରଣେ ନମି ନମି ।
କାଲି ଥିଲ ବିମୁକ୍ତ ହରିଣୀ
ଯୌବନ-ବସନ୍ତ ବନେ
ଧାଇଁବୁଲି ଆନମନେ;
ହୋଇଥିଲ ସ୍ୱପନ-ଚାରିଣୀ !
ଆଜ ଦେଖେ ବ୍ୟସ୍ତ ଜଞ୍ଜାଳରେ,
ଧରାଗତ ନବ ମନୁଷ୍ୟରେ
କଲ୍ୟାଣମୟ ସେ ବକ୍ଷେ
ସ୍ତନ୍ୟ ଦେଇ, ଚାହିଁ ଚକ୍ଷେ
ପରମ କରୁଣାଭରେ,
ତୁମ୍ଭେ ନବ ବାତ୍ସଲ୍ୟରେ
ହୋଇଅଛ ନବୀନ ଜନନୀ ।
ସେହି ସେ କୋମଳ ବକ୍ଷ
ଆଶ୍ରା ମୁହିଁ ଖୋଜିଅଛି ଯହିଁ,
ତହିଁ ପୁଣି ସଞ୍ଚୟନ
ଥିଲ କରି ଆୟୋଜନ
ନବାଗତ ଅଭ୍ୟର୍ଥନା ପାଇଁ !
ହେ ନାରୀ, ତୁ କାଳେ କାଳେ
ତୋର ସେହି ବକ୍ଷସ୍ଥଳେ
ପ୍ରେୟସୀ, ଜନନୀ ବେଶେ
ସ୍ନେହ ଢ଼ାଳି ନିର୍ବିଶେଷେ
ମାନବରେ ଆଣିଛୁ ବଢ଼ାଇ !
କାହୁଁ ତୁ ଆଣିଲୁ ଏହି
ନବଜାତ ଜୀବନ ରତନେ
ନିଜ ଦେହେ ମାୟାବିନୀ
କେମନ୍ତେ ପ୍ରତିମା ଦେଲ
ଅନ୍ତରର ଗୁପତ ସ୍ୱପନେ !

ମହୀୟସୀ, ହେ କ୍ଷୁଦ୍ର ଧରିତ୍ରୀ,
ଚାରୁ ଦେହ-ଲତା ପରେ
ଫୁଟାଇଲ ଜୀବନସୁମନେ ।
ଜନୟିତ୍ରୀ ମାନବ ଜାତିର,
ହେ ନାରୀ,କରଇ ନମସ୍କାର !
ଗବାକ୍ଷେ ସେଦିନ ମତେ କଟାକ୍ଷେ ଚାହିଁଲ,
ଆଲିଙ୍ଗନେ ପାଶେ ବସାଇଲ,
ଅଲକ୍ଷ୍ୟେ ଥିଲା କି ଏ ବିଚାର ?
କି ଛଳେ ଯେ ଜନନ-ପିପାସା
ମେଣ୍ଟିବାକୁ, ମୋର ପଦତଳେ,
ଦେଲ ଦେହ ମନ ସମସ୍ତରେ,
ସୃଜନର ପିପାସାରେ
ମୋ ଆଶ୍ଲେଷେ ଆପଣାରେ
ଏକୁଁ କଲ ଯୁଗଳ ପ୍ରକାର ।
ହେ ପ୍ରକୃତି ମାୟାବିନୀ,
ହେ ଧରଣୀ, ମାନବ-ଜନନୀ
ହେ ନାରୀ ଏକାନ୍ତ-ସଖୀ, ପୁରୁଷର ନିତ୍ୟ ସଂଜୀବନୀ
ତୋ ପଦେ ତୋ ପ୍ରିୟ କରେ,
ବାରମ୍ବାର ଭକ୍ତି-ନମସ୍କାର ।

## ନାରୀର ଅଧିକାର

ପ୍ରିୟ ମମ, ଭରି ଏ ଅନ୍ୟାୟ,
ଭାସିଯାଅ ପୁରୁଣା କଥାରେ,
ଏ-ଜୀବନ ସାର୍ଥକ କି ଖାଲି,
ଦାସୀ ପରି ତୁମରି ସେବାରେ ?
ମାନବର ଜନନୀ ମୁଁ ନାରୀ,
ଜନନୀ ମୁଁ ତମ ସନ୍ତତିର,
ମାଆ ବୋଲି ପୂଜା ଯେ ପାଇବ,
ତା ଜୀବନ ହୋଇବ ଦାସୀର ?

କହିଥିଲ ପ୍ରଥମ ମିଳନେ,
ହୃଦୟର ରାଣୀ ବୋଲି ମୋତେ
ସେ କି ମୋର ଭୋଗ ଲାଳସାରେ,
ଯଉବନ ମଦିରା ଉନ୍ମତ୍ତେ ?
ନାରୀର କି ଶ୍ରେଷ୍ଠ ଯାହା କିଛି,
ରୂପ ଏଇ ଚରମ ସମ୍ବଳ ?
ଆମର କି ସିଦ୍ଧି ବାଣ୍ଟିବାରେ,
କୁତ୍ସିତ ଏ ଶରୀର ମାଂସର ?
ମାନବର ମାଆଠାରୁ ତମେ
ଆଉ ବେଶୀ ଆଶା କର ନାହିଁ ?
ଜନ୍ମ ଆମ, ତମ ପଦତଳେ
ଦାସୀ ରହି ଚିରସେବା ପାଇଁ ?
ତମଠୁଁ ମୁଁ ବଡ଼ ଆଶା କରେ,
ପୁରୁଷତ୍ୱେ ଅନ୍ଧ ନୁହଁ ପ୍ରିୟ,
ହୃଦୟର ରାଣୀ ଯେ ତାହାକୁ
ନ୍ୟାଯ୍ୟ ତାର ଅଧିକାର ଦିଅ ।
ତମର ଯେ ଦାସୀ ମୁଁ ସତରେ,
ସେ କଥା କି ଅଜଣା ହେ ମତେ,
ତମ ହୃଦରାଣୀ ମୁଁ ଯେ କିନ୍ତୁ,
ଦେଖାଇବି ଜଗତେ କେମନ୍ତେ ?
ଜ୍ଞାନେ ମତେ କର ଗରୀୟସୀ
କରମରେ ଶିଖା କଉଶଳ,
ଧରମରେ କର ମତେ ସାଥୀ,
ଭକତିରେ କର ଟଳମଳ ।
ତେବେ ସିନା ଜୀବନ-ପଥରେ
ହେବି ତବ ସୁଯୋଗ୍ୟ-ସଙ୍ଗିନୀ,
ଦୁଃଖେ ମାତା, ରତି ଅବସରେ,
ଦିବା କର୍ମେ ସହଧରମିଣୀ ।
ଖାଲି ଯଦି ଆଖି ରଖ ପ୍ରିୟ
ଛାର ଏଇ ନାରୀ ଦେହଟାରେ,
ନରକର ଦ୍ୱାର ବୋଲି ନିଶ୍ଚେ,
ଘୃଣା ଦିନେ ହୋଇବ ବିକାରେ ।

ମାଟି ଦେହେ ଦେବୀକୁ ହେ ଦେଖ,
ଶ୍ରଦ୍ଧା ଦିଅ ଜଗଜ୍ଜନନୀରେ,
ଶକ୍ତି ରୂପେ ଉଭା ହେବ ନାରୀ,
ତବ ଦକ୍ଷକର ସନ୍ନିଧିରେ ।
ଦୁହେଁ ସିନା ହୋଇଲେ ସମାନ
ସହଯୋଗ ହେବ ସୁଖକର,
ଗୃହଦାସୀ କରି ତ ରଖିଲ,
ଯୁଦ୍ଧେ କିଏ ଯୋଗାଇବ ଶର ?
ଚଲାଇବା ନ ଶିଖାଅ ଯଦି
ହେବୁ ଆମେ ତମ କାନ୍ଧେ ଭାର,
ଚଲାଇବା ଶିଖାଇଲେ ଆମେ
ଯୁଦ୍ଧେ ନେବୁ ତମ ତରବାର ।
କେବଳ ମୁଁ ନୁହଇ ରମଣୀ
ନାରୀ ମୁଁ ଯେ ନରର ସମାନ,
ରତି ରୂପେ ଦେବି ତାକୁ ସୁଖ,
ରାଣୀ ରୂପେ ଦେବି ମୁଁ ସମ୍ମାନ !
ମାଆ ହୋଇ ରକତରୁ କାଢ଼ି
ବଞ୍ଚାଇବି ବଂଶ ପୁଣି ତାର
କହ କେହ୍ନେ ହେ ପୁରୁଷ-ପ୍ରିୟ
ଗୃହଦାସୀ ବୋହିବ ଏ ଭାର ?
ଜ୍ଞାନେ ଗୁଣେ ହୋଇ ଗରୀୟସୀ,
କରିଲେ ମୁଁ ତବ ଦାସୀପଣ,
ଏବଠାରୁ ମହତ୍ତର ନର,
ନୋହିବ କି ବଳେ ହେ ଆପଣ ?

## ପ୍ରେମ ଓ ସିଦ୍ଧି

ଯେ ଦିନ ତୁମକୁ ନିଖିଳ-ଚିତ୍ତେ ପାଇଲି ଭଲ
ସେ ଦିନ କିଶୋରୀ, ଜୀବନ-ପୂଜାର ଲଭିଲି ଫଳ ।
ଚିତ୍ତ-କମଳ ସହସା ଫୁଟିଲା
ବଦ୍ଧ ତାମସ ତୁରିତେ ତୁଟିଲା

ସ୍ୱକଳ ଜୀବନ ଆଲୋକ କରିଲା ପ୍ରଣୟ-କର
ପ୍ରେମ ଦେଇ ସଖି, ଚିର-ସାଧନାର ଲଭିଲି ଫଳ ।

ସେ ଦିନ ହୃଦୟେ ମହାଉତ୍ସବ ନୀରବେ ହେଲା
ଭାବିଲି ଧରଣୀ ଏତେ ଦିନେ ଯାହା ଦେବାର ଦେଲା
ହୃଦୟ ବହିଲା ନୟନର ନୀରେ
ଦେଖିଲି ତପ୍ତ ସେ ନୀର-ବେଣୀରେ
ଦୁଇ ଜୀବନର ମଧୁର ମିଳନ ସହସା ହେଲା,
ଧରଣୀ ସେ ଦିନ ମୋ ହାତେ ଯାହା ସେ ଦେବାର ଦେଲା ।

ନିବିଡ଼ ପେମର ସେ ଯେ ଅନୁଭୂତି କିଶୋରୀ, ଜାଣ
ବ୍ୟକ୍ତ କରିଛି ଚିତ୍ତେ ମୋହର ତତ୍ତ୍ୱ-ଜ୍ଞାନ
ଦେବ-ଆରାଧନେ ନାହିଁ ଦରକାର
ତୋହରି ପୂଜାରେ ପୂଜା ଦେବତାର
ସାର୍ଥକତାରେ ପୂର୍ଣ୍ଣ ଆଜି ମୋ ନିଖିଳ ପ୍ରାଣ
ପ୍ରଣୟ ଦେବାରେ ଶିଖି ମୁଁ ଲଭିଛି ତତ୍ତ୍ୱ-ଜ୍ଞାନ ।

ତୁମେଇ ମୋହର ଶ୍ରେଷ୍ଠ ଦେଉଳ,—ମୋ ଅନୁଭବ
ଦେଉଳ-ପାହାଚେ ଢାଳିଦେଲେ ହେବ ମୋ ଗୌରବ
ପ୍ରଣୟ-ଲୋତକେ ନିଖିଳ ଦେଉଳ
ବୁଡ଼ାଇବି କରି ବନ୍ୟା-ବ୍ୟାକୁଳ
ସତ୍ତା ହରାଇ ତୁମ ଦେହ-ମନେ ମିଶିବି ଯବ,
କିଶୋରୀ, ଲଭିଲି ସବୁଦେଇ ଆଜି ସିଦ୍ଧି ନବ ।

## ମନୋରଥ

ଧୀରେ ଧୀରେ ପକା ପାଦ; — ପଦ ଅଳତାରେ
ଲିପ୍ତ ମୋର ମନୋରଥ — ଦୟା କର ତାରେ ।

ତୁମ୍ଭର ସର୍ବାଙ୍ଗ ଭରି, ପ୍ରତି ଲୋମମୂଳେ
କ୍ଷୁଧାତୁର ଲକ୍ଷ ଲକ୍ଷ ବାସନା ମୋ ଝୁରେ
ଅହରହ ଭିକ୍ଷା ମାଗି — ତାଙ୍କ ମୂକ ବାଣୀ
ଘେନ ଚିତ୍ତେ ଦୟା କରି;—ବେଶ କାଳେ ରାଣି

ନିବିଡେ ନ ଦେବ ନୀବି ଭିଡ଼ି ସେ ତନୁରେ,
ନ ପିନ୍ଧିବ ଅଙ୍ଗରଖା ଟାଣ କରି ଉରେ,
ନ ବାନ୍ଧିବ କେଶପାଶ ଆଣ୍ଠି ଫୁଲ ହାରେ,
ବାସନା ମୋ ଯିବେ ମରି, କାଳେ ଅତ୍ୟାଚାରେ !

ତୁମ୍ଭର ଚୌଦିଗେ ଘେରି, ଉର୍ଦ୍ଧ୍ୱେ, ତଳେ, ପାଶେ
କେନ୍ଦ୍ର କରି ପ୍ରେମ ତବ, ଅଲକ୍ଷିତେ ଭାସେ,
ମୋର କୋଟି ମନୋବୃତ୍ତି, ତେଣୁ ହେ ରୂପସୀ
ଯହିଁ ଯାଅ ନିଅ ମୋର ଚିତ୍ତ ଆକରଷି ।

## ବିନିମୟ

ସେ କୂଳର ଘାଟେ ବସି ମାଜେ ଏକାକିନୀ
ନବୀନା ରୂପସୀ ଏକ ବଳୟ କିଙ୍କିଣୀ ।
କ୍ଷଣେ ଚାହିଁ ଏଣେ ତେଣେ ପୋଛଇ ଲପନ
ଚାରୁ ଅଙ୍ଗେ ଦେଖୁଛି କା' ପ୍ରଣୟ ସ୍ୱପନ ।
ଏ କୂଳର ଘାଟେ ବସି ବକୁଳର ତଳେ
ଗୁନ୍ଥୁଛି ବକୁଳମାଳା ପ୍ରଣୟୀ ବିରଳେ;
ଉପହାରେ ଦେବ ତାରେ ଭେଟିଲେ ବିଜନେ
ମାଜୁଛି ଯେ ବାଳା ପଦ, ପୋଛୁଚି ଲପନେ ।

## ପ୍ରିୟ-ଚକ୍ଷୁ

ନେତ୍ର ଟେକ, ଟେକ ନେତ୍ର—ଅସୀମ ଆକାଶ
ସସୀମ ହୋଇଛି ତହିଁ; ମନ୍ଦ-ମୁଗ୍ଧ-ହାସ
ଚିରନ୍ତନ ଜ୍ୟୋସ୍ନା ସମ ଖେଳୁଥାଏ ତହିଁ
କା ଲାଗି ହେ ମୁଗ୍ଧ ବଧୂ, ପାରିବ କି କହି ?

ଥରେ ଥରେ ଚାହିଁ ଯେବେ ନେତ୍ର ସ୍ଥିର କରି
ଭାବେ ମୁଁ ଖୋଲିଲା ଅବା କେ ସ୍ୱର୍ଗ-ଅପସରୀ
ଇନ୍ଦ୍ରପୁରୀ-ବାତାୟନ;—ସୂର୍ଯ୍ୟ,ଚନ୍ଦ୍ର, ଗ୍ରହ
ସବୁ ଯେହ୍ନେ ଆସେ ତହିଁ, ସୁଷମା-ସଂଗ୍ରହ ।

ନିଶୀଥରେ କ୍ଳାନ୍ତ ଦେହେ, ନିଦ୍ରା ଗଲେ ଧୀରେ
କନକ-କପାଟ ପଡ଼ି ଆସେ ନେତ୍ର-ତୀରେ,
ଚାହିଁଥାଏ ପୂଜାରୀ ମୁଁ—ପ୍ଳକ୍ଷାଞ୍ଚଳ ଭରି
ଆଦରେ ବୁଲାଏ ନଖ; ସୁର-ଶର ସରି—
ଅନୁପମ ଭ୍ରୂଲତାରେ ବୁଲାଏ ଅଙ୍ଗୁଳି,
ଶେଷେ, ଓଷ୍ଠେ ସମଗ୍ରରେ ଦିଏ ମୁଁ ସଙ୍ଗୁଳି ।

## ନିତ୍ୟ-ବସନ୍ତ

ନାରୀକେଳ, ପୂର୍ଣ୍ଣକୁମ୍ଭ, ରସାଳ-ପଲ୍ଲବ
ଏ ଆଦି ଯେ ଶୁଭଦ୍ରବ୍ୟେ ଉତ୍ସବ ଆରମ୍ଭ—
ନାହିଁ ମୋର ପ୍ରୟୋଜନ । ବଦନ-ସରୋଜ
ପ୍ରିୟାର ପ୍ରଭାତ-ଧୌତ, ଚାହିଁ ରୋଜ ରୋଜ
ଆରମ୍ଭେ ମୋ ଜୀବ-ଯାତ୍ରା । ମୋ ଦୀନ କୁଟୀରେ
ପ୍ରିୟା ଲାଗି ନିତ୍ୟୋତ୍ସବ—କାଳ ବହେ ଧୀରେ ।

ମନ୍ଦ-ଗତି ପ୍ରଣୟର ଛନ୍ଦୋମୟ ଗାନେ
କର୍ମ ଯାଏ ଅହରହ ପ୍ରିୟା-ମୁଖ ଧ୍ୟାନେ ।
ଋତୁ ପରେ ଋତୁ ଯାଏ ମୋ ଦୀନ କୁଟୀରେ
କିନ୍ତୁ ନିତ୍ୟ ମଧୁମାସ; ବଧୂଦେହ ତୀରେ
ମଳୟ ଆଶ୍ରୟ ମାଗି ରଚିଛି ଉଦ୍ୟାନ
ପ୍ରିୟା ରୂପ-ସୈକତରେ; କୋକିଳର ଗାନ
ରହିଛି ପ୍ରିୟାର କଣ୍ଠେ, ବାସନ୍ତୀ ସୁମନ
ପ୍ରିୟାର ନିଖିଳ ଅଙ୍ଗେ ରହିଛି ଆଚ୍ଛନ୍ନ ।

## ପ୍ରଥମ ଓ ପ୍ରଧାନ

ଯା' ପାଇଁ ମୋର ହୃଦୟରକ୍ତ
ବହିଲା ହୋଇ ନୟନ ଲୁହ,
ତାହାରେ ଆଉ ଭୁଲିବି ଏହି
ଜୀବନ ପରେ କେସନେ କୁହ ?

ସକଳ ତମେ, ପ୍ରଧାନ ତମେ,
ପ୍ରିୟା ଗୋ ତମେ ଚିରନ୍ତନୀ,
ଜୀବନ-ପଥ-ଅନ୍ଧକାରେ
ତମେ ଗୋ ମୋର କାନ୍ତମଣି ।

## ଅପେକ୍ଷା

ଶେଷ ହେଲା ଜ୍ୟୋତ୍ସ୍ନା ରାତ୍ରି ବିଦଗ୍ଧ ମୁଁ କବି
ସୁନ୍ଦର, ତୁମରି ପଥ ରହିଛି ଅନାଇ,
ତନ୍ଦ୍ରାହୀନ, ସାରା ରାତ୍ରି ବ୍ୟଥା ଅନୁଭବି
ରଚୁଛି ସଙ୍ଗୀତ ମୋର ଚିତ୍ତ-ବୋଧ ପାଇଁ ।

ନିଃଶେଷ ତାମ୍ବୁଳ ପାତ୍ର, ଶୀତଳ ଶୟନ
ଶର୍ବରୀ-ଶୀକର-ଶୀତ-ସମୀର ପରଶେ
ମ୍ଲାନ ଏ ପ୍ରଦୀପ-ରେଖା; ମୁକ୍ତ ବାତାୟନ
ଦେଖାଏ ମଳିନ ଇନ୍ଦୁ ପାଣ୍ଡୁର ନଭସେ ।

ଶେଷ ହେଲା ଚାନ୍ଦ ରାତି, ଶେଷ ଥର ଚାହିଁ
ଗବାକ୍ଷେ ସେ ବୃକ୍ଷଛାୟା ଅନ୍ଧାରିତ ପଥେ,
ଚଳିବି ସଂସାରେ ମୋର ଅନପେକ୍ଷା ପାଇଁ
କ୍ଷୁଦ୍ର ଅଭିମାନ ଭରି ବୁକୁର ରକତେ ।

ସାରା ରାତି ଗଲା ବହି, ହାୟ ସୁଚତୁରୀ,
କମ୍ପିଲାନି ତୋ ଚରଣପାତେ ମୋର ପୁରୀ ।

## କରଞ୍ଜିୟା*

ମନେ କି ରଖିଛ ମୋତେ ଅୟି ଦୂରଭୂମି
କଂକରିଳ କରଞ୍ଜିୟା ? ତବ ପ୍ରାନ୍ତ ଚୁମି
ବହୁଥିବ ସେ ତଟିନୀ ପ୍ରସ୍ତର-ନୟନା,
ମୁଖରି ତୋ ବନଭାଗ ଆୟତ-ନୟନା
ପାଣ ସୀମନ୍ତିନୀ, ମାରି କଦମ୍ବ-କୋରକ
କାକ-କୃଷ୍ଣ କବରୀରେ, କୁଞ୍ଚିତ-ଅଳକ

ଆହୁରି କୁଞ୍ଜିତ କରି ମଧୁଚକ୍ର-ରସେ,
ନଚାଇ ନୂପୁରଯୁଗ୍ମ ଗମନ ରଭସେ,
ଯାଉଥିବେ ତବ ପଥେ ବନବନାନ୍ତରେ
ରସାଳ ସଙ୍ଗୀତ ଗାଇ । ଚକ୍ରବାଳ ପରେ
ବିଶାଳ ଶାଲ୍ମଳୀ ଗିରି, ମାରକତ-ଶିରୀ,
ତୁଙ୍ଗିମାରେ ନୀଳକାନ୍ତ ବ୍ୟୋମପଟ ଚିରି
ହୋଇଥିବ ଉଭା, ମୌନେ, ଦୃପ୍ତ ଗରିମାରେ
ତବ ମୁଖେ ନେତ୍ର ରଖି । ସେ ଦୃଷ୍ଟି ସଞ୍ଚାରେ
ନୀରବ ବେପଥୁଭରେ ତବ ଚୂତବନ
କମ୍ପୁଥିବ ଥରେ ଥରେ । ସେ କାଳେ ସ୍ମରଣ
ଅୟି ଭୂମି, ହେବ କି ତୋ ଚିତ୍ତ ଗହନରେ
ସେ ଦିନ ଅତିଥି ତବ, ଏକ ତରୁଣରେ ?

ତବ ରାଜପଥେ ଲୋକ ପଦଚିହ୍ନ ପରି
ଚିତ୍ତୁ ତବ, ସ୍ମୃତି ତାର ଯାଇନି ପାଶୋରି
ଅୟି ଭୂମି ? ତବ ସ୍ମୃତି କିନ୍ତୁ ଚିତ୍ତେ ତା'ର
ଶାଶ୍ୱତ ବସନ୍ତ ଋତୁ କରଇ ସଞ୍ଚାର ।
ଦୁର୍ଦ୍ଦିନ ତାମସ ତଳେ ଚିତ୍ତ-ବିନୋଦିନୀ,
ଜାଣିନ କି ଏଇ ମୋର କୁଟୀର ସଙ୍ଗିନୀ—
କିଶୋରୀର ମନୋହର ପଦ-କୋକନଦ,
ତବ ପଥେ ଢାଳିଥିଲା ଅମୂଲ୍ୟ ସମ୍ପଦ
କୋମଳ ବୟସେ ତା'ର ? ତେଣୁ କରଞ୍ଜିଆ,
ସ୍ମୃତି ତୋର ମଳୟରେ ଭରେ ତା'ର ହିଆ
ସର୍ବଋତୁ ସମାଗମେ ।
ଆଜି ଏ ସନ୍ଧ୍ୟାରେ
ଚାହିଁଛି ମୁଁ ଶାଲ୍ମଳୀର ଶୁଦ୍ଧ ନୀଳିମାରେ
ଭଞ୍ଜ ରାଜଧାନୀ ପ୍ରାନ୍ତୁ । ସ୍ମୃତି ଅତୀତର
ଭାସିଉଠେ ଅତର୍କିତେ । ସ୍ରୋତ ଜୀବନର
ଉଜାଣି ବହନ୍ତା ଯଦି, କିଶୋରୀ କିଶୋର
ହୋଇ ପୁଣି ହୁଅନ୍ତୁ ଗୋ ଯାତ୍ରୀ ପଥେ ତୋ'ର ।

[*ମୟୂରଭଞ୍ଜର ଗୋଟିଏ ପ୍ରସିଦ୍ଧ ଗ୍ରାମ । ଲେଖକ ଏହିଠାରେ କିଛିଦିନ ଅବସ୍ଥାନ କରିଥିଲା ।]

## କଥୟନ୍ତୀ

ଅଷ୍ଟମୀର ଚନ୍ଦ୍ର ଯାଏ ଅସ୍ତାଚଳ ତଳେ
କର ମୋ ନିବିଡେ ଭିଡେଁ ସୁନ୍ଦରୀ, ତୋ ଗଳେ ।

ଦିବା ଅବସାନ ପରେ ଶୁଭ୍ର ଶଯ୍ୟା ପାତି,
ଶୁଆଇଣ ମତେ ତହିଁ, ନିବେଶି କପାଳେ
ସେ କୋମଳ କରସ୍ପର୍ଶ—କହ ସାରା ରାତି
କି କଥା ଢାଳୁ ଗୋ ଥିଲ ଚୁମ୍ବନ ସମ୍ଭାରେ ?

ଅବସନ୍ନ ପୁରୁଷ ମୁଁ ଥିଲି ନିଦ୍ରାଗତ
ସ୍ୱପ୍ନ ସମ ବାଣୀ ତବ ଲାଗୁଥିଲା ପ୍ରାଣେ,
ଗାଢ଼ ତବ ଶେଷାଶ୍ଳେଷେ ନିଦ୍ରା ମୋର ହତ,
ବ୍ୟଥିତ ହୃଦୟ ମୋର ସ୍ୱପ୍ନ ଅବସାନେ ।

ଶଶୀ ଯାଏ ଅସ୍ତାଚଳେ ଶେଷ ଏ ଯାମିନୀ
ହେ ପ୍ରିୟେ, ନ ଯାଉ ବ୍ୟର୍ଥ — ଶେଷ ଯାମ ଥାଉଁ
ଆଉ ଥରେ କହ କଥା ହେ ବରକାମିନୀ,
ଶୁଣେ ମୁଁ ହୃଦୟ ତବ, ରଜନୀ ନ ପାହୁଁ ।

## ବିଦେଶ ଯାତ୍ରା

ଆସିଲେ ଯିବାକୁ କିପାଁ ଏତେ ତରତର
ମୋ ସଙ୍ଗ କି ଲାଗୁ ନାହିଁ ଆଉ ସୁଖକର ?
ଆଉ ଅଛି ଅଧଘଣ୍ଟେ ରେଳର ଟାଇମି,
ଆସ ବସ ଖଟ ପରେ, ଅସ୍ଥିର ହୁଅନି ।
ସବୁ ମୁଁ ସଜାଡ଼ି ଅଛି ଦାନ୍ତକାଠି ସହ,—
ଟଏଲେଟ୍ କେଶେ ଅଛି; ମନେକରି ଥୟ,
ସକାଳୁ ମୁଁହଁଟି ଧୋଇ କିଛି ଜଳଖିଆ
ଖାଇନେବ—ଦେଇଅଛି ତାହାର ପୁଡ଼ିଆ
ଗୁଞ୍ଜି ବାକ୍ସେ ଯଥାସ୍ଥାନେ । ଯାତ୍ରା ତାହା ପରେ
ହେଉଥାଉ ଯେତେବେଳେ ଧୀରେ, ବିଳମ୍ବରେ ।

ଖର୍ଚ୍ଚ ସବୁ ଲେଖୁଥିବ, ଜଗିବ ଟାକରେ,
ସମାଜେ ଦରିଦ୍ର ଆମେ, ଏ ସବୁ ନଜରେ
ନ ଆଣିଲେ ନ ଚଳଇ; ତମେ ଭୋଳାନାଥ
କେତେ ଦିନ ଥିବ ଆଉ ? ପାତିବାର ହାତ
ତମେ ପର ପାଖେ ଦେଖି କେତେ ସମ୍ଭାଳିବି,
କେମନ୍ତେ ବା ସାଙ୍ଗ ମେଳେ ନିଜେ ଠିଆହେବି ?
ଧୋବାଖାତା, ଆଉ ଯେତେ ଖାତା ହିସାବର
ସବୁ ମୁଁ ଆସିଛି ରଖି; ଖରଚପତର
ପାହୁଲା ପର୍ଯ୍ୟନ୍ତ ସବୁ ଟିପିରଖୁଥିବ,
କେବେ ଆଉ ନିଜ କଥା ଆପଣେ ବୁଝିବ ?
'ବାପା'ଙ୍କୁ ଛାଡ଼ିବନାହିଁ ପୁଅ କହୁଥିଲା,
ଚାହିଁ ଚାହିଁ, ହସି, କାନ୍ଦି ନିଦେଇପଡ଼ିଲା ।
ଉଠି ଯଦି ସମ୍ମୁଖରେ ଛୋଟ ତାର କରେ
ଆଗୁଳି ତୁମକୁ ନାହିଁ ଛାଡ଼ନ୍ତା ବାଟରେ
ଯାଇକି ପାରନ୍ତ ସତେ ଭାଙ୍ଗି ତା ବନ୍ଧନ ?
ଆରଥର ପରି ଆଉ ନ କରିବ ଧନ,
ବରାବର ଦେବ ଚିଠି । ତମ ଚିଠି ପାଇଁ
ପ୍ରତିଦିନ ଅସ୍ଥିରରେ ରହିଥେ ଅନାଇଁ,
ଶୀତ-ବୃକ୍ଷ ମଳୟକୁ ପ୍ରତୀକ୍ଷିଲାପରି;
ଜାଣି,ବ୍ୟବହାର କର ନଜାଣିଲା ପରି !
ପହଁଚିତ ଜଣାଇବ ସାଙ୍ଗେ ସାଙ୍ଗେ ମତେ,
ତା'ଛଡ଼ା ଲେଖିବ ପ୍ରତି ଦୁଇଦିନ ଗତେ—
ଦି'ଧାଡ଼ିଆ ଚିଠି ନୁହେଁ—ଲମ୍ବା ଚିଠି ଚାହେଁ
ମନେରଖ କି ଆଶାରେ ଜଣେ ଚାହିଁଥାଏ ।
ଗାଡ଼ି ବେଳ ହେଲପରା—କଟୁ ତିରସ୍କାର
କରି ପଦେ ଅପରାଧ କରିଛି ଅପାର;
କ୍ଷମା ଦିଅ ପ୍ରିୟ ମତେ । ଯାହା କହେଁ, କରେଁ,
ତମେ ଜାଣ, ତମେ ମୋର ସମଗ୍ର ଅନ୍ତରେ ।

—

## ସର୍ବମୟ

ସେ ଦିନ ସେ ଯେ, ନିରେଖି ଥିଲା, ଚାହିଁ
ମୋର ଏ ଦୁଇ ନୟନେ
ଜିଜ୍ଞାସିଲି, ''କାମ କି କିଛି ନାହିଁ ?
ଚଳ ଗୋ ନିଜ ଶୟନେ ।''
କହିଲା ହସି, ''ଦେଖୁଛି ନିଜ ମୁଖ
ତବ ସେ ଆଖି ମୁକୁରେ,
ଆଖିରେ ଥାନ ଅଛି ବୋଲି ମୋ ସୁଖ
ନାହିଁ ବା ଥାଏ ବୁକୁରେ ।''
ବିଚ୍ଛେଦରେ ବିଦେଶେ ଆଜି ବସି
ଦେଖୁଛି ତାର ଲୋଚନ,
ଆକାଶେ, ଭୂମେ, ନକ୍ଷତ୍ରରେ ମିଶି
ଭାଷୁଛି ସେହି ବଚନ ।

## ରାଗ

କହ ତ ପ୍ରିୟେ ଓଷ୍ଠ-ପୁଟ
ରକ୍ତ ଏଡ଼େ କିପରି ହେଲା ?
ମୁଁ ଜାଣେ ମୋର ହୃଦୟ-ରାଗ,
ତାହାରେ ଏହି ବର୍ଣ୍ଣ ଦେଲା ।
ତୁମ୍ଭେ କି କେବଳ ଦୁଇ
ଚେତନା ହୀନ ଓଷ୍ଠ ଲାଗେ ?
ନାହିଁ ଗୋ ସଖି, କାଢ଼ି ସେ ନିଏ
ବକ୍ଷୁ ନିଖିଳ ଅନୁରାଗେ ।

## ହତସ୍ୱପ୍ନାର ପତ୍ର

ଦିନ ଥିଲା ଯେବେ ତୁମ ପତ୍ର ପାଇବାରେ,
ତୁମକୁ ଦେବାରେ ଭାଷା, ମୋ କ୍ଷୁଦ୍ର ସଂସାରେ
ଥିଲା ପ୍ରିୟତମ ସୁଖ । ମନେପଡ଼େ ନିକି

ତମ୍ଭେ ମଧ୍ୟ ରହିଥାଅ କେସନେ ପ୍ରତୀକ୍ଷି,
ମୋ-ହାତର କୁଳିଖିତ ପତ୍ର ଫାଳେ ପାଇଁ,
ଭୋକିଲା ରହଇ ଯଥା ଭୋଜନେ ଅନାଇ !
ମନେକର, ଇଭିତରେ ଗଲା କେତେ କାଳ
ଦୁହେଁ ଦୁଃଖେ ଦୂରେ ଦୂରେ ବିରହ-ବିହାର
କଲେ ମୌନ ଅଭିମାନେ; କୁଶଳ ଜିଜ୍ଞାସି
ଦୁହେଁ ନାହିଁ ଦେଲୁ ପତ୍ର ଅହଂକାରେ ଭାସି ।
ସେଦିନ ପ୍ରଣୟୀ-ଯୁଗ୍ମ ପ୍ରୀତି-ଜରଜର
ଆଜି ଶୁଷ୍କ, ପରସ୍ପରେ ନିସ୍ପୃହ-ଅନ୍ତର ।
ଶୁଖି ଶୁଖି କିନ୍ତୁ ଶେଷେ ଫାଟିବା ଆଗରୁ
ତୁମକୁ ଶୁଣାଇଯାଏ ମୋ ବ୍ୟଥା ଅନ୍ତରୁ ।
ସେ ଲାଗି ଏ ଶେଷ ପତ୍ର । ସେ ଘରେ ଶୟାନ
ସୁଖେ ତମେ; ଲେଖୁଛି ମୁଁ ନିଷ୍ପୀଡ଼ିତ-ପ୍ରାଣ;
ମୋ ଆଖିରେ ନିଦ ନାହିଁ, ଅଶ୍ରୁ ମଧ୍ୟ ନାହିଁ
ପୋଛି ଚୁମ୍ବୁଥିଲା ଯାହା ତୁହାଇ ତୁହାଇ ।

ପିଲେ ମୋର ଶୋଇଛନ୍ତି—ଶେଷ ଶାନ୍ତି ମମ,
ତାଙ୍କ ଯୋଗୁଁ ପାଏଁ ହେଲେ ଜନନୀ-ସମ୍ଭ୍ରମ ।
କି ଆଉ ଲେଖିବି ସତେ ?—ସକଳ ସ୍ୱପନ
ଭାଙ୍ଗିଲ ତ ! ଖାଲି କରେ ଗୋଟିଏ ପ୍ରଶନ—
କିଶୋର ବୟସେ ତମେ ବକ୍ଷେ ଘେନି ମତେ,
କହିଥିଲ ଭଲପାଅ ପ୍ରତି ଚୁମ୍ବ ଅନ୍ତେ;
ସେ କି ଖାଲି ଚାଟୁ କଥା, ଭୁଲାଇବା ପାଇଁ
କିଶୋରୀରେ ? ତହିଁ ତବ ପ୍ରାଣ ଥିଲା ନାହିଁ ?

କିନ୍ତୁ ଲଘୁ ଆମୋଦର ସେ ଛଳନା-ବାଣୀ
କି ଗଭୀର ରେଖା ସବୁ ଦେଇଅଛି ଟାଣି
ସେ ଦିନୁ ଏ ବାଳିକାର ଅନ୍ତର ନିଭୃତେ,
ବିଳାସୀ ପୁରୁଷ ତମେ ଜାଣ କି କିଞ୍ଚିତେ ?
ଜାଣିଥିଲେ କିହେ ପ୍ରିୟ ସେଦିନର ସେହି
ଚିତ୍ତର ପରମ ସ୍ୱପ୍ନ, ଅନ୍ତରର ସ୍ନେହୀ,
ମରମର ସ୍ନେହ ଧାରା, ଶରୀରର ଲତା
ଉପେକ୍ଷିତ ଅନାଦରେ ଭୂତଳେ ଲୋଟନ୍ତା ?

ଯେ ସ୍ନେହ-ସାମ୍ରାଜ୍ୟେ ଗରବିଣୀ ଅଧୀଶ୍ୱରୀ
ହେବାର ସ୍ୱପ୍ନରେ ଚିତ୍ତ ଯାଉଥିଲା ଥରି,
ତାହାରି ଅଜ୍ଞାତ କୋଣେ ଶୁଷ୍କଲତା ପରି
ପଡ଼ିଥାଁତି ମୁଁ କି ଖାଲି ଅତୀତ ସୁମରି !

କିଶୋର ବୟସେ ଦିନେ ଦେହ, ମନ, ପ୍ରାଣ
ଭକ୍ତିଭରେ କରି ବିଭୁ ନାମ ଉଚ୍ଚାରଣ,
କଲି ଯା ଉତ୍ସର୍ଗ ତବ କରେ ଆଶାନ୍ୱିତା,
ତା ଫଳ କି ଏଇ ପ୍ରିୟ ? ଏ ହୀନ ଦୀନତା ?
ତବ ବିନୁ ଆନ ବନ୍ଧୁ ଜାଣି ନାହିଁ ମନ,
ତମଠୁ ଶୁଣିଲି ଯେତେ ନିଷ୍ଠୁର ବଚନ !
ତମ-ଯୋଗ୍ୟ ନୁହେ ଯଦି ଘେନିଲ କିପାଁଇ,
ପିଇଲ ମୋ ଗଣ୍ଡ, ମୋର ମିଥ୍ୟା-ସ୍ତୁତି ଗାଇ ?
ବିଳାସେ ରସାଳ ଖାଇ ଫିଙ୍ଗା ବୀଜ ପରି
କିଶୋରୀ ହୋଇଛି ଆଜି ଅପଗତ-ଶିରୀ,
ଶରୀର-ସ୍ତାବକ ପୁଂସ ତେଣୁ କି ଉପେକ୍ଷା,
ଆତ୍ମାର ଏକାନ୍ତ ପୂଜା ନକଲ ଅପେକ୍ଷା ?
ତବ ପାଶେ ଆନ କକ୍ଷେ ବିନିଦ୍ର ଯାମିନୀ
ଅଶ୍ରୁସିକ୍ତ ଉପାଧାନେ ଏ ହତଭାଗିନୀ
କାଟେ ଦିନ ଦିନ ଧରି, ଜାଣି ଜାଣନାହିଁ
ମୋ ପାଇଁକି ହିୟା ଦେଲ ପାଷାଣରେ ଛାଇ ?
ବିଧାତା ମୋ କୋଳେ ଯାହା ଥୋଇଛି ଖେଳନା,
ଜୀବନ ଧରିଛି କରି ତାଙ୍କରି ମାଜଣା ।
ତମ ଗୃହ ବୁଝିଥାନ୍ତେ ଦାସୀ, ନଉକର
ମୁଁ ବି ପାରିଥାନ୍ତି ଜନ୍ମି ଜାରଜ କୁମର ।
ତୁମଠାରେ କଲି କିପାଁ ଆତ୍ମ-ସମର୍ପଣ,
ତା ଗୌରବ ବୁଝିଲନି, ଏଡ଼େ ମୂର୍ଖ କ'ଣ ?
ଯା ହେବାର ହେଲା ଯାହା ଥିଲା ଏ କପାଳେ
ଭୋଗିଲି, କି ଲାଭ ସ୍ମରି ତାହା ବାରେ ବାରେ !
ଜନନୀ, ଗୃହିଣୀ ସିନା, ପ୍ରିୟା ନୁହେଁ ଆଉ,
ବୁଝକି ନାରୀର ଏହା କେତେ ବଡ଼ ଦାଉ ?

—

## କ୍ଷମାକର

କ୍ଷମାକର ସଖି, କ୍ଷମାକର,
ଝୁଁଟି ପଡ଼ିଥିବା ସାଥୀକି ସେନେହେ
ତୋଳିଧର । ଘୋଷା ।
ଚାଲିଲେ ତ ପଥ, ପାଦ ଖସେ ଜାଣ
ମୁଞ୍ଚ ସଖୀ ଏ କୋପନ ଅଭିମାନ,
ପ୍ରଣୟ ପରଶେ ପଙ୍କ ପୋଛିଦେଇ
ଏ ଦେହକୁ ତୁମେ ଯୋଗ୍ୟ କର ।
ଝୁଟିବା ତ ନୁହେଁ ପଦାଘାତ ପଥେ,
ଖସିଗଲି ବୋଲି ଭୁଲିନିରେ ତତେ
ନଉକାରେ ଯଦି କଣାଥାଏ, ତାର–
ବୁଡ଼ିବା କି ଦୋଷ ସମୁଦ୍ରର ?
ଫେରି ମୁଁ ଆସିଛି ତୋର ପାଖେ
ଲୋତକ, ସରମ ଆଖେ ଆଖେ
ନ ନେଲେ ଏ ଦୀନ ଠିଆହେବ ଯାଇ
କେଉଁ କୋଣେ କହ ଏ ବିଶ୍ୱର ?

## ମରମେ ତୁମର

ମରମେ ତୁମର ଥାନ ଦେଇ ସଖି,
ସରମେ ମୋ ଆଡ଼େ ଚାହୁଁଥାଅ,
ପରମ ପୀରତି ସୁରଭି କୁସୁମ
ବେଳେ ବେଳେ କରେ ଦେଉଥାଅ ।
ଗହନ ଭୁବନ ପଥେ ଚାଲି ଚାଲି
ସରମ ଜଂଜାଳେ ହେଉଥିଲେ ଘାଲି
ସମ୍ମୁଖରେ ଆସି, କୁଶଳ ଜିଜ୍ଞାସି
ଓଠ ଧରି ସ୍ନେହେ ହସିଯାଅ ।
ଚଇତି ଜୋଛନା ସଂଗେ ବାତାୟନେ
ପାହାଁତି ଶିଶିର ଶୀତଳ ଶୟନେ
ବାହୁଲତା ତବ ଗୁଡାଇ ମୋ ଗଳେ
ସାଇତିବା ସ୍ମୃତି ପରି ଥାଅ ।
ଜନମେ ଜନମେ ଯହିଁ ଥାଏ ମୁହିଁ
ସ୍ନେହର ଚନ୍ଦନ କପାଳରେ ଲିହି
ଦରିଦ୍ର କୁଟୀରେ ଏବ ପରି ମତେ
ରାଜ-ଅଧିରାଜ କରୁଥାଅ ।

—

# ଧରାବତରଣ

ପରିଣୟ-ପୀଠ ପରେ ଚାରି-ଚକ୍ଷୁ-ବିସ୍ମିତ-ମିଳନ,
ପ୍ରଥମ ଯୌବନେ ସେ ଯେ ଘେନି ସ୍ୱପ୍ନ-ରସୋଚ୍ଛଳ ମନ,
ଆଜି ସଖି ମନେପଡେ; ଲାଜେ ଲାଜେ ଟେକି ଉତ୍ତରୀୟ
କିଶୋରୀ-ନୟନ ଦେଇ ଚାହିଁଥିଲ ଦେଖିବାକୁ ପ୍ରିୟ ।୧।

ଆଜି ସଖି ପଡ଼େ ମନେ ଜୀବନର ଶେଷ ଧାପେ ଏଇ,
ଜୀବନର ଅନୁଭୂତି, ଜୀବନର ଯାହା ଦିଆଦେଇ,
ସ୍ମୃତିର ଭଣ୍ଡାରେ ବାଛେ ମହାର୍ଘ ସେ କେଉଁ ଅନୁଭବ
ଯା ପାଇଁ ଇଛି ମୁଁ ପାରେ ପୁଣି ଏହି ଧରାରେ ସମ୍ଭବ ।୨।

ଆଜି ସଖି, ପଡ଼େ ମନେ ଜୀବନର ନାନା ଅଭିଜ୍ଞତା,
ନାନ ଭ୍ରାନ୍ତି, ନାନା ଅଶ୍ରୁ, କ୍ଷୁଦ୍ର ନେଇ କେତେ ତିକ୍ତ କଥା,
ଜୀବନ-ସଂଗ୍ରାମେ ଯେତେ ରକ୍ତ-କ୍ଷୟ, ଯେତେ ପରାଜୟ
ସବୁ ସଖି, ପଡ଼େ ମନେ, ଚିତ୍ତ ଆଜି ଖାଲି ସ୍ମୃତିମୟ ।୩।

ବିଚାରଇ କିନ୍ତୁ ସଖି, ଯଉବନେ ପ୍ରଣୟ-ମୟୀରେ
ସେ-ଆଦ୍ୟ-ଚାହିଁବା-ପାଇଁ ଆସିଥିଲି ଯେପରି ମହୀରେ,
ସବୁ ଏ ଜଞ୍ଜାଳ ବରି ନେଇଥିଲି ଜୀବନ-କ୍ଷେତ୍ରର
ମଧୁ ଭୋଗିବାକୁ ଦୁଇ ରସୋଚ୍ଛଳ କିଶୋରୀ-ନେତ୍ରର ।୪।

ଉଚ୍ଛଳ ଜୀବନ ଘେନି ଯୌବନର ବାସନ୍ତୀ ଦୁଆରେ
ଜୀବନର ଦୋସରକୁ ଭେଟିବାକୁ କମ୍ପିତ ହିୟାରେ,
ଜୀବନର ସାର୍ଥକତା ଦେଖିବାକୁ ତାହାରି ନୟନେ
ହେ ସଖି, ଆସୁଛି ମୁଁ କି ବାରମ୍ବାର ଏ ମର୍ତ୍ତ୍ୟ ଅୟନେ ? ।୫।

ଧନ, ମାନ, ପରିବାର, ଜୀବନର-ଆହବେ-ବିଜୟ,
ସବୁ ଆଜି ସ୍ମୃତିତଳେ ହୋଇଯାଏ ଧୀରେ ଧୀରେ ଲୟ,
ସବୁ ଯାଇ ରହିଯାଏ କେବଳ ସେ କେମନ୍ତେ କେଜାଣି
ମୁଗ୍‌ଧା ଏକ କିଶୋରୀର ଲାଜ-ପ୍ରେମ-ମଧୁର ଚାହାଣି ।୬।

ନିଷ୍ପାପ ସେ, ସ୍ୱପ୍ନମୟ, ରସମୟ, ବିମଳ ଦି'ଆଖି,
ପାଇବାକୁ ସେ ଦୁଇର ପରିପୂର୍ଣ୍ଣ ଆତ୍ମ-ସମର୍ପଣ
ହେ ସଖି, କରୁଛି ମୁଁ କି ଜନ୍ମେ ଜନ୍ମେ ଧରାବତରଣ ! ।୭।

---

# କୋଣାର୍କ

## କୋଣାର୍କ

ହେ କୋଣାର୍କ ବିଗତ-ଯୌବନା
ମୌନ-ଦୁଃଖେ ସୈକତ-ଶୟନା !
ତୋର ଏହି ଜୀର୍ଣ୍ଣ ଦେହେ ଅଦ୍ୟାପି ଗୋ ବିମୁଗ୍ଧ ନୟନେ
ଚାହେଁ ବିଶ୍ୱ, କରୁଣାରେ ତେଜି ଅଶ୍ରୁ ତୋ ଦୁଃଖ-ଶୟନେ ।
ଜଗତର ଶିଳ୍ପୀ-କବି ରୂପ-ରାଗ ଦେଖି ତୋହଠାରେ
ଆଶ୍ଳେଷ ଇଚ୍ଛଇ ତୋର ବୃଦ୍ଧ ଦେହେ, ଶୋଭା ପିପାସାରେ ।
ଅଙ୍ଗେ ଅଙ୍ଗେ ଚୁମ୍ବିବାକୁ ନିରବଧି କରଇ ଭାବନା
ତୋହରେ ଗୋ ଗତ-ଯଉବନା ।୧।

ଅନିନ୍ଦିତେ, ହେ ବେଳା-ଶୋଭନେ,
ଯେବେ ତୁମ୍ଭେ ଉଠିଲ ଗଗନେ
ଭେଦିଣ ସହସା ନଦୀ-ନୀଳ-ବେଣୀ ସ୍ୱର୍ଣ୍ଣ-ସଇକତ
କ୍ଷୀରୋଦ ପ୍ରଶାନ୍ତ ଗର୍ଭୁ ବିଶ୍ୱରାମା ବିଷ୍ଣୁ-ପତ୍ନୀବତ
ଅତର୍କିତ ଫିଟିଥିବ ଏ ଦେଶର ଅୟୁତ ଲୋଚନ
କୋଟି ହସ୍ତ ବଦ୍ଧହୋଇ କରିଥିବ ତୁମ୍ଭରି ବନ୍ଦନ—
''ଜୟ ସ୍ୱର୍ଗନିବାସିନୀ ଅବତର୍ଣ୍ଣା ମର୍ତ୍ତ୍ୟ ବିଭୂଷଣେ
ରୁକ୍ଷ ବିଶ୍ୱେ ଶୋଭା ବିତରଣେ ! ।୨।

ବାରଶତ କବି କଳ୍ପନାରେ
ଜଗତର ବୁଦ୍ଧି ଅଜଣାରେ
ଅଜ୍ଞାତ ରହସ୍ୟମୟ ଶଇଶବ ଯାପିତ ତୋହରି
ସେ ଦିନ ଚକିତ ଦୃଷ୍ଟି ବିଶ୍ୱର ଗୋ ପଡ଼ିଲା ତୋ'ପରି
ଯୌବନ-ଲାବଣ୍ୟ-ଲୀଳା ଖେଳୁଅଛି ଅଙ୍ଗେ ଅଙ୍ଗେ ତବ
ଫୁଟିଉଠେ ଦେହେ ଦେହେ ସୁଲଳିତ ଅଙ୍ଗ-ସଉଷ୍ଠବ ।
ମନ୍ତ୍ର ଶିଖି ଆସିଥିଲ ମନ-ଜୟେ ମନର ସେ ପାରେ
ବାରଶତ କବି କଳ୍ପନାରେ ।୩।

ସହସା ହୋଇଲା ବିମଳିନ
ନଭେ ନଭେ ହୋଇଲା ବିଲୀନ
ଅଗଣିତ ତାରକାର ଦିବ୍ୟ ଜ୍ୟୋତି ରଜତଧବଳ,
ଲାଜେ ଲାଜେ ବ୍ୟୋମପଟେ ଲୁଚିଗଲେ ଶୀତାଂଶୁ ଶୀତଳ,
ଦୂର ନଗମାଳା ହେଲେ ଭକ୍ତି-ଭୟେ ଚକିତ-ପୁଲକ
ପଦ-ଚୁମ୍ବୀ ମହାସିନ୍ଧୁ ଗାଏ ସ୍ତବ, ଲହରୀ ଅଳକ—
"ହେ ଚାରୁଭୈରବକୀର୍ତ୍ତି ମନୁଷ୍ୟର, ମଣ୍ଡ ମୋ ପୁଳିନ
ଧନ୍ୟ ହୁଏ ତୋହରେ ସେବିଣ ।" ।୪।
ପୌର୍ଣ୍ଣମାସୀ ଶୁଭ୍ର ହାସ୍ୟ ତଳେ
ଧବଳିତ ସମୁଦ୍ର-ଲହରେ
ତାଳେ ତାଳେ ଲାସ୍ୟେ ମାତି ଜଳଦେବୀ ଗାଇଲେ ତୋ କଥା
ଓଷଧୀଶ ଜ୍ୟୋତ୍ସ୍ନାପୁରେ ସିକ୍ତ କଲେ ତୋ' ତରୁଣ ମଥା,
ତୋର ମୌନ କଟାକ୍ଷରେ ବ୍ୟୋମଚାରୀ ମାର୍ଗେ ହୋଇ ମୂଢ଼
ଅବତରି, କର୍ଣ୍ଣେ କର୍ଣ୍ଣେ କହିଗଲେ ବାରତା ନିଗୂଢ଼ ।
ଅପ୍‌ସରୀ ବନ୍ଦିଲେ ତୋତେ ସ୍ୱର୍ଗୁଁ ଆସି କୌମୁଦୀକଲ୍ଲୋଳେ
ପାରିଜାତ ପୁଷ୍ପ ଉପହାରେ ।୫।
ଜୀବନର କେତେ ଲୀଳାଖେଳା
ଅଙ୍ଗେ ତୁହି ଧରିଲୁ ଛବିଳା,
ଶିଖିଲା ତୋହଠୁଁ ରାଜା ଶତ୍ରୁ ମୁଖେ ଯୁଦ୍ଧ ଅଭିଯାନ,
ପାତ୍ର ମନ୍ତ୍ରୀ ରାଜା ପାଶେ କରିବାର ଯୁକ୍ତ ମନ୍ତ୍ରଦାନ ।
ପ୍ରେମିକ ପ୍ରେମିକା ଆସି ତୋହଠାରୁ ଶିଖିଲେ ଆଶ୍ଳେଷ
ବୀର ପୁଣି ଯୁଦ୍ଧଭୂମେ ଅରି ସହ କୌଶଳ ବିଶେଷ
ବେତ୍ରହସ୍ତ ଅବଧାନେ ଚାଟଶାଳେ ଶାସିବାର ପିଲା
ହେ ପାଷାଣି ! ତୋଠାରୁ ଶିଖିଲା ।।୬।
ବିଶ୍ୱ ଯେତେ ବିକାଶ ରୂପର
ଯେତେ ରୂପ-ବିଳାସ ଚିତ୍ତର
ପ୍ରକୃତିର ଅଙ୍ଗେ ଅଙ୍ଗେ ସୁଷମାର ଯେତେକ ପ୍ରକଟ
ମାନବର ମନେ ମନେ ସୁଷମାର ଯେତେକ ସଂଘଟ
ତୋତେହିଁ ପାଷାଣ କବି, ଅତି ସ୍ନେହେ ନିବେଦିଲେ ବସି
ଅନନ୍ତ କବିତାଧାରା ନିହିଲେ ସେ ତୋ ଦେହ ପରଶି ।
ପ୍ରସ୍ତରେ ପ୍ରସ୍ତରେ ତୋର ସୁନିହିତ କବିତା ସଂହାର,
ହେ ପାଷାଣ-କବିତା-ଝଙ୍କାର ! ।୭।

ସଉଧ କୁଟୀର ଶତ
ଉପହାର ପୁଷ୍ପହାର ବତ
ତୋତେ ଘେରି ତୁଙ୍ଗ ଶିର ସର୍ବେ ଗର୍ବେ ଟେକିଲେ କ୍ଷଣକେ
ବିଶାଳ ନଗରୀ, ସିନ୍ଧୁ-ଭାଲଟୀକା ହସିଲା ପୁଲକେ ।
ଦିଗ୍‌ବିଦିଗୁଁ ସିନ୍ଧୁ ଡେଇଁ ଭକ୍ତି ଭରେ ନୁଆଁଇଣ ପାଲ
ଆସିଲେ ବହିତ୍ରପନ୍ତି ପୂଜି ତୋତେ ଅଙ୍କ ହେଲା ଆଲୋକିତ,
କକ୍ଷ ତୋର ଜ୍ୟୋତିରେ ଚକିତ । ।୮।
ରାଜା ତେଜି ପ୍ରାସାଦ-ବିଭବ
ତୁଳିତଛ ସୁକ୍ଷ୍ମ-ଅନୁଭବ,
ଜାନୁପାତି ତୋର ମୁଖେ ଚାହିଁ ଚାହିଁ କଟାଇଲେ ଦିନ,
ସନ୍ୟାସୀ ତୋ ପଦତଳେ ତପ କରି ତନୁ କଲେ କ୍ଷୀଣ,
ଦେଶୁ ଦେଶୁ ସମାଗତା ନାରୀ, ପଦ କିଙ୍କିଣୀ-କଂପନେ
କଲେ ମୁଖରିତ ଦିନେ ବକ୍ଷ ତୋର, ଲାକ୍ଷାରସ ବର୍ଣ୍ଣେ
ରଂଜିଲେ ମଧୁରେ କରି ଭୂମି ତୋର ଶୋଭାର ଉତ୍ସବ
ଲଜ୍ଜା ଦେଇ ପୁଷ୍ପ ବଇଭବ । ।୯।
କ୍ରୁଦ୍ଧ ହେଲା କୀର୍ତ୍ତି-କୀଟ କାଳ
କ୍ରମେ ହେଲା ପ୍ରକୃତି କରାଳ,
ଗଉରବ-ଅସହିଷ୍ଣୁ ବୁଲାଇଲେ ନୟନ ରକ୍ତିମ
ସୁକୋମଳ ଗ୍ରୀବା ତୋର ତ୍ରସ୍ତ ଭୟେ ହୋଇଲା ବଙ୍କିମ,
ଯାଦୁକରୀ ହାସ୍ୟ ତୋର ସେ ନିଷ୍ଠୁର କରୁଣାର କଣ
ନପାରିଲା ଉପୁଜାଇ; ଚୂର୍ଣ୍ଣ କଲେ କ୍ରୂର-ପ୍ରହରଣ ।
ବିଶ୍ୱ ଦେଖେ ଆଜି ମାତ୍ର ସେ ଶୋଭାର ଖଣ୍ଡିତ କଂକାଳ
ଲାବଣ୍ୟର ନଷ୍ଟ ଅସ୍ଥିମାଳ । ।୧୦।
ତେବେ ହେଁ ସେ ଅସ୍ଥି ଭେଦି
ତରୁଣର ଜ୍ୟୋତି ପଡ଼େ ଭାଜି,
ପକ୍ୱକେଶେ ଜୀର୍ଣ୍ଣବେଶେ ତେବେ ହେ ଗୋ ଯୌବନର ବିଭା
ଫୁଟିଉଠେ, ସାୟନ୍ତନ ଘନ ପରେ ଅସ୍ତରାଗ କିବା ।
ବିମୁଗ୍ଧ ସଂସାର ତୋର ପାଦତଳେ ଅଦ୍ୟାପି ସୁନ୍ଦରି ?
ସମ ଦୁଃଖେ କାନ୍ଦିଥାଏ, ବ୍ୟାକୁଳିତ, ଆପଣାର ପରି ।
ଆୟୁଷ କଲ୍ୟାଣ ପାଇଁ ଲଭେ ବିଶ୍ୱ ସୁଆଶିଷରାଜି
ତେବେ ହେଁ ତୋ' ଅସ୍ଥିରାଜି ଆଜି । ।୧୧।

# କୋଣାର୍କର ଲାସ୍ୟଲୀଳା

## ସ୍ପନ୍ଦନ

**ଜ୍ୟୋସ୍ନା—**

ହେ ପାଷାଣି, କିବା ଜାଣି ଅଛ ଲାଜ-ବସନା,
ତବ ସଖୀ ଆସିଲି ଯେ ଜ୍ୟୋସ୍ନା ମୁଁ ଜ୍ୟୋସ୍ନା ।
ନିରଜନ ଶୂନ୍‌ଶାନ୍ କେହି ନାହିଁ କୁଆଡ଼େ,
ମୂକ ନାରୀ ଆସଭାରି, ଉଲ୍ଲାସ ହିୟାରେ ।
ସଂଗିନୀ ରଂଗିନୀ ଚିର ମୁହିଁ ତମର,
ଏକ ମୋର ନିଶୀଥରେ ଖୋଲ ତମ ଗୁମର ।
ଜନମରୁ ରମ୍ଭୋରୁ ସଂଗିନୀ ମୁଁ ତବ,
କପୋଳରେ ତବ ଢାଳେ ଚୁମ୍ବନ-ବିଭବ ।
ଦୁହିଁଙ୍କର ଜନମର ଥାନ ରୂପ-ସାଗର,
ତେଣୁ ଚିର ସୋଦରୀର ବଂଧନ ଆମର ।
ମୂକ ଆମେ ଲୋକ ଜାଣେ ଭାଷା ନାହିଁ ମୁଖରେ,
ମିଥ୍ୟା ତା, ବର୍ତ୍ତିକା ଜଳେ ଆମ ବୁକରେ ।
ଆସ ଆସ ଶିଳା-ବାସ ତେଜି ଆଲୋ ଅଳସୀ,
ଖଣ୍ଡନ ବନ୍ଧନ କର, ବେଳା ବିଳସି ।

**ପ୍ରଥମ ବିଗ୍ରହ—**

କେ ଅଛ ଲୋ ଖୋଲ ଖୋଲ ଓଢ଼ଣା ସରମର,
ଜୋଛନା ଯେ ଡାକେ ଆସି ଦୁଆରେ ମରମର ।
ପୂର୍‌ନିମା ଜହ୍ନମା ଛୁଇଁ ଦେଉଁ ନରମେ,
ଚାଉଁକିନି ଚମକିଲି, କୁଡ଼ା ଖସେ ଚରମେ ।
ଧୀରେ ଧୀରେ ମୋ ଆଖିରେ ମେଲାଇଲି ବେଳାରେ
ଜନତାର ସଂଚାର ନ ଦେଖିଲି କେଆଡ଼େ ।
ତେଣୁ ସଖି ଦିଏ ଡାକ— ଜୋଛନାରେ ଖେଳିବା,
ଉଠ, ଉଠ, କିପାଁ ମଠ ? ନାଟପୀଠେ ଚଳିବା ।
ଉଠ ସଖି ଲାଜ ରଖି, ଚରଣ ସଂଚାଳ ଗୋ,
ମୁରଲୀରେ କରେଁ ଧୀର ମରମ ସଂଚାର ଗୋ ।
ଅପଘନ— ଛନ୍ଦରେ ବନ୍ଦନା ରଚନା,
କରି, ଦେବେ ବନ୍ଦିବା ଆମେ ଚାରୁ-ଲୋଚନା ।

| | | |
|---|---|---|
| ବାଣୀ ଫୁଟୁ | ମୋ ବେଣୁର | ପାଷାଣର ବକ୍ଷେ |
| ତନୁଲତା | ଉଠୁ ଦୋଳି | ରୂପ-ହୋମ ଲକ୍ଷ୍ୟେ । |

**ଦ୍ୱିତୀୟ ବିଗ୍ରହ—**

| | | |
|---|---|---|
| ସହି କି ଲୋ, | ଡାକ ତୋର | ବଁଚାଇଲା ମତେ ଲୋ, |
| କି ଅସଜ | ଏ ମୁରଜ | ଧରି କଟୀ ତଟେ ଲୋ । |
| କିଏ ସେ ଲୋ | ବଲ ବଲ | କରି ଆଜି ଚାହିଁଲା, |
| ଧୀରେ ମୋର | ବକ୍ଷର | ବୃନ୍ତରେ ଛୁଇଁଲା । |
| କେଶ ପାଶେ | ଆଉଁସିଲା, | ଲସାଇଲା ମରମ, |
| ଗଣ୍ଡରେ | ଚିପି କରେ | ଜନ୍ମାଇ ଘରମ । |
| ସେ ସରମେ | ମନେ ମନେ | ମରିଗଲି ସଖିରେ, |
| ଅଛି ଦେଖି | ପାଖ ସଖୀ | ସବୁ କଥା ଆଖିରେ । |
| ଜୋଛନାରେ | ଥରଥରେ | କୋଳେ ମୋର ମୂରଜ, |
| ରହି ରହି | ଗୁମୁରଇ | ସ୍ୱନ୍ଦାଇ ଉରଜ । |
| ମୃଦଙ୍ଗ— | ଅଙ୍ଗେ ମୋ | ପ୍ରାବୃଟ ମେଘ ଗୋ, |
| ଆଶ୍ରିଛି | ଦେବତାର | ତୋଷେ, ଥିର-ବେଗ ଗୋ । |
| ଆସ ଆସ | ଅର୍କର | ଆଲୋକ ଅପ୍‌ସରୀଏ, |
| ମୋ ମାଦଳ | ତାଳେ ତାଳେ | ନାଚ ବେଳା ଭରି, ଏ । |

**ତୃତୀୟ ବିଗ୍ରହ—**

| | | |
|---|---|---|
| କା' ବଚନ | କଂକଣ | ଧ୍ୱନି କାହା କରର |
| ଶୁଭେ ତେଣୁ ? | କିପାଁ ରେଣୁ | ଥରେ ପୀଠ-ତଳର ! |
| ଡାକି ବୁଝେଁ— | "କାହା ଭୁଜେ | କଂକଣ ବାଜେ ଲୋ, |
| ଜୋଛନାରେ | ମଦ ଭାରେ | ଛାଡ଼ିଲା କେ ଲାଜେ ଲୋ ?" |

**ପ୍ରଥମ ବିଗ୍ରହ—**

| | | |
|---|---|---|
| ଆମେ ସହି | ଶ୍ୟାମା, ମୁହିଁ | ଆସ ଏଣିକି, |
| ଆଣ ଡାକି | ବାକି ସଖୀ | ବାଣୀ ଆଉ ରାଣୀକି । |
| କୁସୁମାକୁ | ଆସିବାକୁ | ଡାକ ଦେ ଲୋ । ଉତଳ, |
| ଜୋଛନାର | ସଂଚାର | ପାଣି କରେ ପଥର । |
| ତାହାଁକର | ପାଷାଣର | ଦେହ କିକି ଥରେ ଲୋ, |
| ଆଣିଲା କେ | ଯାଁକ ଲାଖେ | ନୀରସା ଏ ଥଳେ ଲୋ ? |
| ଡାକିଆଣ | ଆଖି-ବାଣ | ଛାଡିବେ ଏ ବେଳାରେ, |
| ଦିନ-ଯାକ | ରହି ମୂକ | ସଢ଼ିବା କି ହେଳାରେ ? |

ନିଶୀଥିନୀ କିଂକିଣୀ- ନାଦେ ହେଉ ମୁଖର,
ବେଳାଭୂମି, ପରଣମି ଚୁମିବ ଶ୍ରୀ ପଦର ।

**ତୃତୀୟ ବିଗ୍ରହ—**

ଜାଗ୍ରତ ମୁଁ ଯେ ସଖି ବିନା ଡାକେ । ଥରେ, ଯେ
ଜୋଛନାର ଚୁମ୍ବନେ,- ଅଜ୍ଞାତ ଡରେ ଯେ ।
ହେଲା ବେଳ ଚଂଚଳ ଆରମ୍ଭ ବରଣ,
ତାଳ ପାଇଁ ଅସ୍ଥିର ମୋର ଦୁଇ ଚରଣ ।
ଆସ ନଟୀ ସଂଘଟି ସୁଷମାର ଆରତି,
ଶୂନ୍ୟ ଏ ବେଳା କର ସୃଜନରେ ଭରତି ।

**ଚତୁର୍ଥ ବିଗ୍ରହ—**

ମଲା ମଲା, ପାଖେ ଥିଲା ଲୋକ ମତେ ପୁଛନା,
ଦୂର ଜନେ କି କାରଣେ ଏତେ ସମ-ଶୋଚନା ।
ଚାଲ ସଖି ଆଖି ଆଖି ମିଳାଇବା ସକଳେ,
ଦିନ-ଯାକ ରହି ମୂକ ଦେହ ଜଡ଼ ବିକଳେ ।
ଚନ୍ଦ୍ରର କାନ୍ତ ଏ କର, ଛୁଇଁ ଦେହରେ,
ବନ୍ଧନ— ଭଂଜନ ଘଟାଏ କି ସ୍ନେହରେ ।
ଆଜି ସଖି ଦେଖିନ କି ବହୁ ଆଖି ନିରେଖି,
ଚାହିଁବାର ବାର ବାର ଛୁଇଁବାର କି ଦେଖି ?
ସେ ପରଶେ ଲାଜବଶେ ହୋଇଥିଲି ଜଡ଼ ଲୋ,
ବକ୍ଷ, ଅ— ଲକ୍ଷ୍ୟରେ ଭୟ ହେଲା ବଡ଼ ଲୋ ।
ଏବେ ଚାଲ ଜ୍ୟୋତ୍ସ୍ନାର ସାଥେ ରାସ ରଚିବା,
ନିଶୀଥରେ ନଭ ତଳେ ପ୍ରାଣ ଭରି ନାଚିବା ।
ଆସ ଯେତେ ସଂଗିନୀ ଆନନ୍ଦରଂଗା,
ବାରଶତ ଶିଳ୍ପୀର କଳ୍ପନା-ଗଂଗା ।
ସବିତାର କବିତାର ପ୍ରସ୍ତର-ସ୍ୱପ୍ନ,
ଦେବତାର ଚାରି ପାଶେ ବିଶ୍ୱର ରତ୍ନ ।
ପ୍ରସ୍ତର— କବି ଚିତ୍ତୁଁ ନଟୀଏ ଉତ୍ତୀର୍ଣ୍ଣା,
ଦେବତାର ତୋଷେ ଚିର ଲଳିତ, ଉଦ୍‌ବିଗ୍ନା ।
ନାଚି ନାଚି ଯୁଗ ଯୁଗ କ୍ଳାନ୍ତି ତ ନାହିଁ ରେ,
ଏ ଜୀବନ ନିବେଦିତ ଦେବତାର ପାଇଁରେ ।
ଆନନ୍ଦ- ଦାତ୍ରୀରେ ଲାବଣ୍ୟ-ଗାତ୍ରୀ,
ବନ୍ଦିବା ଦେବତାରେ ପୁଣି ଆଜ ରାତ୍ରି ।

## ଉଦ୍‌ଯୋଗ

କ୍ଷଣକର ପାଷାଣୀୟ
ପାଷାଣର ପୀଠରେ
ବଜାଇଲେ ନୂପୁର;
ମୃଦୁ ମୃଦୁ ହସ ମୁଖେ;
ଅଳସ ତ ଛାଡ଼ିନି,
ରସାଣିତ ବପୁର ।
ଅପର ଅପର ଦେହେ
ଦେହ ଢାଳି ଅଳସେ
ଚଳାଇଲେ ଚରଣ,
ସହସା ସେ ନିରଜନ
ମନ୍ଦିର ଧ୍ୱନିଲା
ଚଳ-ପଦ-ଭୂଷଣ ।
ଜୋଛନା-ନୀରବ-ବାଣୀ
ଲୁଚକାଳି ଖେଳଇ
ପାଷାଣୀଁକ ଅଙ୍ଗେ,
ସେ ପରଶେ ମୂକ, ଜଡ଼
ଶିଳା ଉଠେ ଚମକି
ଜୀବନ୍ତ ରଙ୍ଗେ ।
ଲୀଳାମୟ ହେଲା ଶିଳା
ଶତ ଶିଳା-କୁଞ୍ଜେ,
ବିକଶିଲା ଜୀବନ;
କୁନ୍ଦିତ ବିଗ୍ରହେ
ସ୍ପନ୍ଦିତେ ଜାଗିଲେ,
ଫିଟାଇଲେ ନୟନ ।
ସ୍ୱନେ ଘନ ରଣଝଣ
ପାଷାଣର ଭୂଷଣ,
ଦୋଳେ ଅବତଂସ,
ସଖୀ ଗଳେ କର ଥୋଇ
ଆଡ଼ ଆଖେ ଅନାଇ
ପରଖଁତି ପରଶ ।

କୁଞ୍ଜରଗତି ଶତ
କ୍ରମେ ହେଲେ କୁଞ୍ଜ
ଧୀରେ ଧୀରେ ବାହାରେ,
ଅଞ୍ଜଳିରେ କା' ଧୂପ,
ବୀଣା କାର ଉରଜେ
ମୃରଜ ବା କାହାର ।
ଶୁଭେ କଥା ତୁନୀ ତୁନୀ
''କାହିଁ ଗଲେ ଆଉ ଗୋ,
ଶ୍ୟାମା କେଉଁ ଉହାଡ଼େ ?
ନାଟପୀଠେ ଯିବା ଚାଲ,
ନାଟ ତାଳେ ନକଲେ
ମନ ନାହିଁ କୁଆଡେ ।''
ଆନ ବୋଲେ ''ପ୍ରିୟ ଚିର
ଧରିଛନ୍ତି ବାହୁରେ,
ଅଙ୍ଗ ମୋ ଅଳସ,
ପଦ ମୋର ଖଲ ଖଲ
ନାଚିବାରେ ହୁଏ ଲୋ
କାଖେ ଧରି କଳସ ।''
ଆନ କହେ ''କେତେ କାଳ
ଦୀପ ଖାଲି ଧରିବି
ରହି ଏକ ଥାନରେ,
ନରକରେ ପଡ଼ି ସବୁ
ଶିଳ୍ପୀ, ଯେ ନ ଦେଲା
ରସ ମୋର ପ୍ରାଣରେ ।''
''ପାଖେ ମୋର କୁଞ୍ଜରେ
ଦେଖେ ନିତି ତରୁଣ,
ଚୁମଇ ତରୁଣୀରେ,
ଭାଗ୍ୟେ ମୋ ନାହିଁ ତାହା !
କି ଭିନ୍ନ ଜନମି
ଦୁହେଁ ଏକ ଖଣ୍ଡିରେ ।''

ଆନ ବୋଲେ ''ତୁମେ ଯାଅ,
ନାଟ କର ସହିଲୋ
ନାଚି ମୁଁ ତ ଅଥିର,
ନିତ୍ୟ ମୁଁ ନାଟ କରେ
କ୍ଷୀଣ ହେଲା ଚରଣ
ବକ୍ଷ ମୋ ଶିଥିଳ ।''

ଆନ ବୋଲେ ''ସାର୍ଥକ
ଜୀବନ ମୋ ସଜନୀ
ବୀଣା ମୁଁ ଯେ ବଜାଏ
ମୁଁ ତ ଶୁଣେ, ଶୁଣେ ପ୍ରିୟ,
ଶୁଣେ ପୁଣି ଦେବତା,
ମରମ ମୋ ହଜାଏ ।''

ଆନ ବୋଲେ ''ଦେଖ ସଖି,
ରସିକ ସେ ଶିଳ୍ପୀ
ପ୍ରିୟ ଶୁକେ ଉରଜେ
ଲଗାଇ ଦେଇଛି, ଶୁକ
ପାନ କରେ ବକ୍ଷ
ସୃଜି ମଧୁ-ଦରଜେ ।''

ଆନ ବୋଲେ, ''ଯୁଗ ଯୁଗ
ସଖୀ ମୋର ଯତନେ
ବାଁଧୁ ଅଛି କବରୀ,
ଧରି ଅଛି ଯୁଗ ଯୁଗ
ଦରପଣ ମୁଖକୁ
ଆଉ ଏକ ନାଗରୀ ।''

ଆନ କହେ, ''ଶିଳ୍ପୀ ସେ
କରିଅଛି ପୃଥୁଳ
କେତେ; ସଖି, କୁଡ଼ାରେ,
ପୀନ ପୁନ ବକ୍ଷ ଲୋ
କ୍ଷୀଣ କଟି ବହିବ
କେସନେ ଏ ଭାରାରେ ।''

ଆନ କହେ ''ଚରଣରେ
ପିଂଧିଥିଲି ମଲ ଯା'
ଛିଡ଼ିଲାଣି ଥାନକେ,
ଯତନରେ ପଦ ଧରି
ପରମ ସୋହାଗରେ
ପିଁଧାଇବ ଆନ କେ ।''
ଆନ ବୋଲେ ''କା'ର, କା'ର
ଯୌବନ କିଛି ବା
ଅଙ୍ଗରୁ ଖସଇ,
କଦମ୍ବ ତଳେ ଠିଆ
ତନ୍ୱୀର ବପୁରେ
ବୟସ ନପଶଇ ।''
କେ ବୋଲଇ ''ଏ କି ମଜା
ମୂକ ହେବା ଦିବସେ,
ଚେଇଁବା ରଜନୀରେ,
କେ ଜାଣଇ ଅଛି ପ୍ରାଣ
ପାଷାଣ ଏ ଅଙ୍ଗେ
ପାଷାଣ ଧମନୀରେ ।''
''କେତେ ଶତ ଯୁଗ ଗଲା
କେହି ତ ନଜାଣିଲେ;
ଜଣା ଖାଲି ଆମରେ,
ଭଲ କଥା,– ଜଣାଗଲେ
ରଖିବେ କି ଆମକୁ
ନରେ ରୂପ-ପ୍ରେମରେ ?
''ଜାଣିଲେ ଫିଟାଇ ଶିଳା
ଦଳି ଦେବେ ନାହିଁକି
ବର୍ବର ତୃଷାରେ
ଭଲ, ଆମେ ଅଜ୍ଞାତେ
ରୂପ ରଖି ପାଇଛୁ ,
ପାଷାଣର ଭାଷାରେ ।

''ମନେଅଛି ସେ ଦିନ କି
ବହୁ ଯୁଗ ତଳେ ଲୋ
ସନ୍ଧ୍ୟାର ଆଲୋକେ
ଶିଳ୍ପୀ ଯେ ଦିନ ମତେ
ଗଢ଼ି ସାରି ଯତନେ
ନିରେଖିଲା ପୁଲକେ ।
''ଚାହୁଁ ଥାଏ, ଥୋଉଥାଏ,
ନାହିଁ ପାରେ ଛାଡ଼ି ସେ
ମାଜିଦିଏ ଲପନ,
ସଖାମେଳେ ଫେରୁଥାଏ
ଚାହୁଁଥାଏ ପଛକୁ
ମତେ,— ତା'ର ସ୍ୱପନ ।
''କି କାଳ ସେ ଗଲା କାହିଁ
କୋଳାହଳ, ଜନତା,
ଅହରହ ମୁଖର,
ଯାଇଛି ତା'ଭଲ;— ସଦା
ଆଖିତଳେ ରହିବା
ନିକି ଦୁଖ ରୂପର ?''
''ଚାଲ, ଚାଲ ବୋଲେ ଆନ,
ଜୋଛନା ଯେ ବଢ଼ିଲା,
ଅଥୟ ଲୋ ପରାଣ
କେତେ ଘଡ଼ି ମୁକ୍ତିରେ
ମାଟି କରି ଦେବା କି ?
ଚାଲ, ଚାଲ, ମୋ' ରାଣ ।

## ନୃତ୍ୟ

ନାଟ-ମନ୍ଦିରେ ମନ୍ଦ୍ର ମୂରଜ ଧ୍ୱନଇ
ଶତ ଶତ ଶିଳା ପଦଥରେ, ନାଟ- ପ୍ରଣୟୀ ।
ବଂଶୀ, ମୂରଜ, ବୀଣା, କରତାଳ, କାହାଳୀ,
ଖଞ୍ଜଣୀ, ମନ ରଞ୍ଜିଣୀ ଅବା କାହାରି ।

ବଜାଇଲେ, ଚିତ୍ତ ହଜାଇ ଯେତେ ସେ କାମିନୀ,
ପୂର୍ଣ୍ଣ ହୋଇଲା, ଶୂନ୍ୟ ଜୋଛନା- ଯାମିନୀ ।
ଶୂନ୍ୟ ବିଜନ ମନ୍ଦିର ଧୀରେ ଜିଗିଁଲା,
ତପ୍ତ ରୁଧିର ପାଷାଣେ ଯେସନ ବହିଲା ।
ପୀବରବକ୍ଷା କ୍ଷୀଣମଧ୍ୟମା କାମିନୀ,
ସୁତ୍ତଳ ଜଘନ ଚାଲିଲେ ଯେହ୍ନେ ଦାମିନୀ ।
ପୃଥୁଳ ଜୁଡ଼ାର କୁସୁମର ଭାର ଖସିଲା,
ଥରା ଉରଜରୁ ମାଳା, କାଂଚଲା ଲସିଲା ।
ବର୍ତ୍ତୁଳ ମୁଖ ସ୍ନିଗ୍ଧ ଅଂଶେ ଯୁବତୀ,
ରଖି ଧୀରେ ଧୀରେ ନୃତ୍ୟେ ରଚିଲେ ଆରତି ।
ଦୋଳଇ କର୍ଣ୍ଣ- ଦୋଳକ, ଖେଳଇ ଚିକୁର,
ଅତୁଳ-ଚରଣ- ରୁଣିତ-ନୂପୁର ଆକୁଳ ।
ଅଧରେ ନ ଧରେ ସ୍ମିତ ରେଖା, ଆଖି ଝଲକେ,
ବର ଭୁଜ ଖର ଚଳଇ ପଲକେ ପଲକେ ।
ବନ୍ଧନ ହୀନ ଆନନ୍ଦ ବଢୁଁ ତୁରିତେ,
ଗାଇଲେ ସକଳେ ଛନ୍ଦେ, ଆପଣା ଚରିତେ ।
''ଅପସ୍ୱରୀ ଆମେ ପୁଷ୍ପ-କୋମଳ- ଧରମା,
ପାଷାଣ-ବାହାର, ଭିତରେ ରମ୍ୟ- ମରମା ।
କଳ୍ପଲୋକରୁ ଆମେ ରମ୍ଭୋରୁ ଧରାରେ,
ବିଗ୍ରହ ନେଲୁ ଅବତରି, ଟାଣ ଶିଳାରେ ।
ଖାଲି ସହସ୍ର ଶିଳ୍ପର ଆରା- ଧନାରେ,
ଘନୀଭୂତ ଆମେ ତାଙ୍କରି ଅର- ଚନାରେ ।
ସେ ନାହାଁତି ଆଜି ନାହାଁତି ଦେବତା ଦେଉଳେ,
ନ ଆସଁତି ନିତି ଦରଶନେ ଏଥି ପୌରେ ।
ଗଲେ ରାଜା, ରାଣୀ, ଲୁଚିଗଲା ରାଜ- ବିଭବ,
ସମ ସମୟର କିଛି ନାହିଁ; କହି କି ହେବ ।
ଆମେ ଅଛୁ ଖାଲି ବାଲି ପ୍ରାନ୍ତରେ ଅଂଗେ,
ଧରି ଚିରକାଳ ଚିର ନବରୂପ ରଂଗେ ।
ଅମର ଯେ ଆମେ ମାନସ ଲୋକର ସୃଜନା,
ସ୍ଥୂଳ ଧରଣୀର ମୃତ୍ୟୁ ଆମରେ ଅଜଣା ।
ଯୁଗ ଯୁଗ ଧରି ବିଗ୍ରହେ, ତେଣୁ ରୂପରେ;

ଆମର ଏ ଲୀଳା କଠିନ ଏ ଶିଳା- ସ୍ତୂପରେ ।
ଜଗତ ଜାଣଇ ମୂକ ଆମେ ଟାଣ ପଥର,
ଅଜ୍ଞ ଜାଣିବେ କାହୁଁ ଭାଷା, ରୂପ- ପାଠର ?
ସଂଗିନୀ ଆମ ଚନ୍ଦ୍ରିକା ସିନା ନୀରବ,
ତା ବୋଲି କି ନାହିଁ ତା'ର ସମ୍ଭୋଗ- ଗରବ ?
କୁସୁମେ କୁସୁମେ ଚୁମି ସେ ଥରାଏ ଯାମିନୀ,
ଥରାଏ ଲକ୍ଷ ପ୍ରଣୟ ଆକୁଳ କାମିନୀ ।
କୁମୁଦ ସଂଗେ ନିତ୍ୟ ତା'ର ଯା ପୀରତି,
ଜୀବନ୍ତ ନିକି ମଉନ ବୋଲି ସେ ଆରତି ?
ଆମେ ସେହିପରି ଶିଳାଲୀଳା ତଳେ ଜୀବନ
ଲୁଚାଇ ମୁଗ୍‌ଧ କରୁଛୁ ଏ ସାରା ଭୁବନ ।
ମର ମନିଷର ଯା' ଅମର, ତହୁଁ ଜନମ,
ଛୁଇଁ ନାହିଁ ପାରେ ଆମରେ ତେଣୁ ଗୋ ମରଣ ।
ମର ସେ ଶିଳ୍ପୀ ଚଳିଲେ, ମରଣ ବାଟରେ,
ଅ-ମର ସୁଷମା ରଖିଗଲେ ଆମ ପାଖରେ ।
ଯୁଗ ଯୁଗ ଧରି ଜୀବନ୍ତ ତେଣୁ ପାଷାଣ,
ରୁକ୍ଷ ବେଳାରେ ଉଡ଼ାଇ ରୂପର ନିଶାଣ ।
ଜ୍ୟୋସ୍ନାରେ ଆମେ ଲୁଚକାଳି ଖେଳୁ ସକଳେ,
ନୀରବ, ବିଜନ ଏ ବେଳାପ୍ରାନ୍ତ ପଥରେ ।
ହେଲା ରାସଲୀଳା ବେଳୁ ବେଳ ଅତି ମର,
ରୂପର ନିବିଡ଼ ସେ ଲୀଳା ଦେଖିକି ମର୍ତ୍ତ୍ୟ ।
କବି ଲେଖନୀରେ ଶିଳ୍ପୀ ତୂଳୀରେ ଯାହାର,
ଯୁଗେ ଯୁଗେ ହୁଏ ରହସ୍ୟମୟ ବିହାର ।
ସେହି ରୂପମୟୀ ନିଖିଳ ସୃଜନ- ବାସିନୀ,
ମଳୟ-ବାହନା, କୁସୁମ-ଜ୍ୟୋସ୍ନା- ହାସିନୀ ।
ସୂର୍ଯ୍ୟ-ତାରକା- ଭୂଷଣା, ଅଭ୍ର- ଚିକୁରା,
ଦୂର୍ବା-ଚରଣା, ଅନନ୍ତ-ଦିଗ- ଦୁକୂଳା ।
ସେ ରୂପ-ଲକ୍ଷ୍ମୀ ପାଷାଣରେ ଘେନି ଶରୀର
ଶୂନ୍ୟ ସେ ପୀଠ ଚଳ-ରୂପେ କଲେ ଅଧୀର ।
ଚିଁତି ସେ ନଟନ- ଲୀଳାରେ, କବିର ମାନସ,
ସ୍ତବ୍‌ଧ ଚକିତ, ବିହ୍ୱଳ, ରସ- ଅବଶ ।

—

## ଶିଳ୍ପୀ-ବନ୍ଦନା

ବନ୍ଦେ ବାରଶତ ଶିଳ୍ପୀ
ଇତିହାସ ନାହିଁ ତବ,
ପଛେ କିଛି ରଖି ନାହଁ
ଶିଳାର ବିରାଟ କାବ୍ୟ,
ପ୍ରାଣହୀନ ଶିଳା ପରେ
କି ବଧାଇ ଥିଲ ପାଇ
ତୁମେ ନାହଁ, ନାହିଁ ରାଜା,
ଦେଶ, କାଳ, ନାମ, ଧାମ,
ଅଛି ମାତ୍ର ଶିଳାସ୍ତୂପ
ଉତ୍ତପ୍ତ ଏ ମରୁପ୍ରାନ୍ତେ
ଖେଳୁଥିଲେ ଧୀରେ ଧୀରେ
ସେହି ମାତ୍ର ବଁଚିଅଛି,
ଦରିଦ୍ର କୁଟୀରେ ବସି
କେମନ୍ତେ କଳ୍ପିଲ ମନେ
ରାଜାର ଭୃତ୍ୟତା, ନିଜ
ହେ ସହସ୍ର କବି, ତବ
କେମନ୍ତେ ତୋଳିଲ ସତେ ?
ପାଷାଣର ଏ କବିତା,
ତୁମରେ ଭୁଲିଛି ଜାତି
ଦୀନ ତବ ଇତିହାସୁ
ବଁଚିଥିବ ସାଧାରଣ
କ୍ଷତି କିସ ନାହିଁ ଯଦି
କିନ୍ତୁ ଦୀନ ଜୀବନରେ
ସେହି ତବ ଶ୍ରେଷ୍ଠ ଗାଥା

ନାମହୀନ, ଧାମହୀନ ପ୍ରାଣୀ,
ତବ ଲାଗି ମୂକ କାଳ-ବାଣୀ ।
ଯାଇଅଛ ଥାପି ମାତ୍ର ଏଇ
ଏ କୋଣାର୍କ, ତବ-କୃତି-ଦେହୀ ।
ସବୁ ଦେଇ ଢାଳି ଜୀବନର,
ମହାରାଜା ହସ୍ତରୁ ତୁମର ?
ପୁରସ୍କାର ଯାଇଛି ସଙ୍ଗତେ,
କିଛି ତବ ନାହିଁ ଏ ଜଗତେ ।
ଯାହା ଅଂଗେ ବାରବର୍ଷ ଧରି,
ଶ୍ରମଝାଳେ ମାନସୀ-ସୁନ୍ଦରୀ,
ଶ୍ରମାମୋଦେ ଲଭି ପୁରସ୍କାର;
କାଳ-ଦନ୍ତେ କରିଣ ଧିକ୍କାର ।
ଚୀର ପିଁ ଧି କବି ବାରଶତ,
ଅପୂର୍ବ ଏ ରୂପ ଶତ ଶତ ?
ଦୀନତାର ବହୁ ଉର୍ଦ୍ଧ୍ୱେ ଭାସି,
କଳ୍ପ-ସରୁ ଏ କମଳରାଶି
ଶିଳା ଦେହେ ଦେଲ ତାହା ଲେଖି
ମୁଗ୍ଧ ବିଶ୍ୱ ପଢ଼େ ଦେଖି ଦେଖି ।
ସେଥିରେ ତ କ୍ଷତି କିଛି ନାହିଁ,
ଏ କବିତା ବଡ଼ ନିକି ଭାଇ ?
ସହସ୍ରଂକ ପରି ତ ଜୀବନ,
ସେହି ଘର, ସଂସାର ବର୍ଣ୍ଣନ !
ମନ-ଲୋକୁଁ କଲ ଯା ଚୟନ,
ସ୍ୱପ୍ନର ଏ ମହାରୂପାୟନ ।

## ମୁମୂର୍ଷୁ କୋଣାର୍କ

ଅଶ୍ରୁସିକ୍ତ ନେତ୍ର ତଳେ କୋଟି ପ୍ରେମିକର
ତିଳେ ତିଳେ ମରୁଅଛ ସୁନ୍ଦର କୋଣାର୍କ,
ନିୟୁତର ଦୀର୍ଘଶ୍ୱାସେ, ସହସ୍ରର ମୌନ ହାହାକାରେ
ହେ ସୁନ୍ଦରି ! ତୁମ ଲାଗି ଉଠେ ବିଶ୍ୱଚିତ୍ତେ
ସକରୁଣ ଅଶ୍ରୁତ ବିଳାପ ।

ନଷ୍ଟ ଭାଗ୍ୟେ ଯୌବନର ଛାୟା ମାତ୍ର ଘେନି,
ନିଖିଳ ଧରାରେ ତମେ ରଖିଥିଲ ମୁଗ୍ଧ ସଚକିତ,
ହେ ଅମ୍ଳାନକାନ୍ତିମତି, ହେ ଚିର ସୁନ୍ଦରି,
ଚିରପାଇଁ ଧରା ତେଜି, ନାହିଁ ରଖି ଚିହ୍ନ ମାତ୍ର ତବ;
ତମେ କି ଆପଣା ଲୋକେ ଯିବ ଚାଲି, ପ୍ରୟାଣରେ ତବ,
ରୁକ୍ଷଧରା ରୁକ୍ଷତର କରି ?

ଧୀରେ ଧୀରେ ତନୁ ତବ ଅୟି ସୁତନୁକେ
ଆଖି ଆଗେ ମିଶିଯାଏ ପଂଚ ପ୍ରକୃତିରେ
ନଭ, ବାୟୁ, ଆଲୋକ, ମୃତ୍ତିକା,
ପ୍ରତ୍ୟେକେ ନିଅନ୍ତି ଲୁଟି ପ୍ରତିଟି ତୋ ମଧୁର ସୌଷ୍ଠବ,
ସିନ୍ଧୁ ତା'ର ଲବଣ-ଚୁମ୍ବନେ
ବିଜନ ଏ ଶାନ୍ତ ରେଣୁବନେ
ଉଜ୍ଜ୍ୱଳ କପୋଳ ତୋର କରୁଅଛି ଅହରହ ଫିକା ।

(୨)

ହେ ଉର୍ବଶୀ ବାରଶତ କବି-କଳ୍ପନାର,
ସୃଜିଥିଲେ ତତେ ଯେହୁ ତିଳେ ତିଳେ ତିଳୋତ୍ତମା କରି,
କଳ୍ପ-ଲୋକ-ଶ୍ରେଷ୍ଠ ଉପାଦାନେ,
ସୁକୁମାର, ସୁମଂଜୁଳ, ସୁଗଠିତ, ସୁମୂର୍ତ୍ତ ସୁଷମା,
ଉଷ୍ଣରକ୍ତ ଭରିଦେଇ ତଳେ ତଳେ ରୁକ୍ଷ ପଥରର
ପେଲବ-ତରୁଣୀତନୁ-ଉଚ୍ଚାଟନ ଭରି ସର୍ବ ସ୍ଥାନେ ।

ହେ ମାନସି ! ବାରଶତ କବି ହୃଦୟର,
ତବ ସ୍ପର୍ଶେ ଏହିଠାରେ ପ୍ରାଣହୀନ କଠିନ ପାଷାଣ
ହସିଥିଲା; ବାଦ୍ୟରଙ୍ଗେ କରୁଥିଲା ଗାନ,
ନୃତ୍ୟଛନ୍ଦେ କରୁଥିଲା ଥର ଥର ସହସ୍ର ହୃଦୟ,
କଟାକ୍ଷରେ ନିଖିଳରେ କରି ଆକର୍ଷଣ,
କରିଥିଲା ପ୍ରିୟବକ୍ଷେ ସର୍ବଦତ୍ତ ଆଲିଙ୍ଗନ ଦାନ ।

ତମ ଲାଗି କବିଜନେ ଭରିଥିଲେ ବିଜନ ଏ ଭୂମି
କୋଟିଜନ ସମାଗମେ, ଦେବ, ଦେବୀ, ନାଗ, ଗନ୍ଧର୍ବରେ,
ଅହରହ ଆୟୋଜିତ ହେ ସୁନ୍ଦରି, ତବ ଆରାଧନା,
ତୁମଲାଗି ଚତୁରଂଗବଳ ସଦା ସଶସ୍ତ୍ର ସଜ୍ଜିତ,
ତୁମ ଲାଗି ଦିବା ରାତ୍ର ଚତୁର୍ଦ୍ଦିଗେ ନୃତ୍ୟ, ବାଦ୍ୟ, ଗୀତ,
ବିଜୟୀ ସମ୍ରାଟ କରେ ତବ ପଦ ପ୍ରାନ୍ତେ ଉପାସନା ।

(୩)

ସବୁ ଏ କି ଯିବ ମିଶି ଶୂନ୍ୟେ ଶୂନ୍ୟେ ସୁଖସ୍ୱପ୍ନ ସମ,
ତବ-ନାମ-ମାତ୍ର-ଶେଷ ହେବ ଦିନେ ଅଭାଗ୍ୟ ଏ ମାଟି,
ଶୂନ୍ୟବେଳା ହେବ ଶୂନ୍ୟତମ ।

କାହିଁ ଆଉ ଦେଖିବୁ ଗୋ ନିଜ ସ୍ୱପ୍ନ ହେବା ରୂପାୟିତ,
ପରମ ମୂହୂର୍ତ୍ତ ସବୁ ଏ ଜୀବନେ ଭୋଗ, ଆନନ୍ଦର
କାହିଁ ଦେଖା ଯିବ ଆଉ ରସଘନ, ପୂର୍ଣ୍ଣ, ସନାତନ ?

ନାମ ମାତ୍ର ଅବଶେଷ ! ଶେଷେ ଖାଲି ହେବ କିମ୍ବଦନ୍ତୀ,
ହେ ବିଶ୍ୱ ସୁନ୍ଦରୀ ତମେ, ପୁଣି ଯିବ ଫେରି ସ୍ୱପ୍ନଲୋକେ
ଯେଉଁଠାରୁ ହୋଇଲ ଉଦ୍ଭବ,
ରହିବ ସ୍ମୃତିରେ ଖାଲି ଏ ଧରାର— ସ୍ୱର୍ଲୋକର ସୁନ୍ଦରୀଙ୍କ ପରି—
ପୁଣି ହେବ କଳ୍ପନାର, ବାସନାର, ତୀବ୍ର ପିପାସାର
ବସ୍ତୁ ତମେ;— ବାସ୍ତବରେ କିନ୍ତୁ ଅସମ୍ଭବ !

ହେ ସ୍ୱପ୍ନ-ସୁନ୍ଦରୀ ତମେ ନିଖିଳ ଜାତିର,
ହେ ପରମ ରୂପ-କଳ୍ପ-ଲୋକର-କବିତା,
କବି-ଜନ ତପସ୍ୟାରେ ପୁଣି ତମେ ନ ଦେବ କି ଧରା ?
ପୁଣି କି ଆଗାମୀ କାଳେ ନ ଉଠିବ ନବ ଅପଘନେ
ମାନବର ସୁଖ-ସ୍ୱପ୍ନ, ଆନନ୍ଦରେ ପୁଂଜୀଭୂତ କରି,
ଏକଠାବେ ମେଲିଦେଇ ମାନବର ଅନ୍ତର-ପସରା ?

ଯୁଗେ ଯୁଗେ ନଆସ କି ହେ ଶିଳ୍ପସୁନ୍ଦରି,
କବି-ଜନ ତପସ୍ୟାର, ବୀରାଭିଳାଷର
ବର ରୂପେ ?
ଆଜି ତମେ ନିଅ ଯା ବିଦାୟ
ଅଭିମାନ ସେ କି ଆର୍ଯ୍ୟେ, ଏ ମାଟିରେ ବୀର ନାହିଁ ଆଉ,
ଯେ କି ଯୋଗ୍ୟ ତବ ପଦେ ଦେବାଲାଗି ଗୌରବର ଭେଟି,
ତବ ରୂପ ପୂଜାପାଇଁ କବି ମଧ୍ୟ ନାହାଁନ୍ତି ବା, ହାୟ !

ଯାଅ ତେବେ, ମନସ୍ୱିନୀ, ବିଶ୍ୱଜନ ରୂପାୟିତ ସ୍ୱପ୍ନ,
ଏଇ କ୍ଷୁଦ୍ର ଅନ୍ତରର ପରମ ମାନସୀ ।
ଆଣିପାରେ ଭାବନାରେ, କେବେ କିଗୋ, ମୋ ତପ ସାଧନେ,
ଧରାଦେବ, ହେ ଉର୍ବଶି, କୃଚ୍ଛ୍ର ବ୍ରତ ଜନ୍ମଜନ୍ମାନ୍ତରେ ?
କିବା କ୍ଲେଶ, ଯଦି ତାହା ପାରେ ସମ୍ଭବାଇ
ତମପରି ପରମ ସୃଜନେ !

—

# ବାପୁ-ତର୍ପଣ

## ବାପୁଜୀ

(୧)

ମସ୍ତକେ ମୋର ନିତ୍ୟ ପଡୁ ହେ
ବାପୁଜୀ, ତମର ଚରଣ-ଧୂଳି,
ଧନ୍ୟ ହେବ ଏ କ୍ଳିନ୍ନ ଅଙ୍ଗ,
ପୁଣ୍ୟେ ଯିବ ମୋ ପରାଣ ପୂରି ।
ଦେହ ଖାଲି ଯାର ସତ୍ୟ, ପୁଣ୍ୟ,
କରୁଣା, ମୈତ୍ରୀ ସାଧନା ବହେ,
ତା'ର ପଦରେଣୁ କେବଳ ପଥର
ହୀନ ମୃତ୍ତିକା ନୁହେଁ ତ ନୁହେଁ ।
ସେ ରେଣୁ ପରଶେ ବକ୍ଷେ ମୋହର
ସତ୍ୟ-କୁସୁମ ଉଠିବ ଫୁଟି,
ଯୁଗଯୁଗାନ୍ତ ଭ୍ରାନ୍ତି ଚିନ୍ତୁ
ମୋହର, ପଲକେ ଯିବ ହେ ତୁଟି ।
ଇତିହାସେ ଯେହୁ ଜୈତ୍ର କେତନ
ଉଡ଼ାଇଲେ ନର-ରକ୍ତ ଢାଳି,
ଆଜି ଅହିଂସ ତମର ବିଜୟେ
ହୃଦୟ ତାଙ୍କ ହୋଇବ ଘାରି ।
ତମ-ରଣଭୂମେ ନାହିଁ ଉଠେ କାହିଁ
କ୍ରନ୍ଦନ କୋଟି ଅବଳା ମୁଖେ,
ତଥାପି ହେ ବୀର ସମର ଜିଣିଛ,
ମୈତ୍ରୀ ଫୁଟାଇ ବଇରି-ବୁକେ ।
ବାର ବାର କରି ଜିଣିଲ ଯୁଦ୍ଧ,
ହାରିଲେ ସକଳ ଶତ୍ରୁ ତବ,
ନିରୀହ କ୍ଷୁଦ୍ର ତପସ୍ୱୀ ହେ,
ଇତିହାସେ ପରା ଏ ଅଭିନବ ।

(୨)

ଦେଶେଦେଶେ ଯେତେ ଲାଂଛିତ ପଦ-
ଦଳିତ, ମଳିନ, ଅପମାନିତ,
ତମ ଯୋଗୁଁ ବହୁ ଯୁଗ ପରେ ହେଲା
ମାନ ତାଂକର ଉତ୍ତୋଳିତ ।
ଆପଣା ଆଲୋକେ ଆଲୋକିତ ଆଜି
ଥିଲେ ଯେହୁ ଚିର ଅନ୍ଧକାରେ,
ଯୁଗ ଯୁଗ ଭୀତ୍ ବୁକେ ଦେଲ ତମେ
ସାହସ, ରୋଧନେ ଅତ୍ୟାଚାରେ ।
ନରଦେହ ହୀନ ମୃତ୍ତିକା ନୁହେଁ,
ନାରାୟଣ ତା'ର ଜୀବନ-ରସ,
ମହା-ଚେତନର ଅଂଶ ସେ ଏକ,
ବିକାଶ ପାଇଁ କି ଶରୀର-ବଶ ।
ଖୋଲିଲେ କପାଟ ଉଠିବେ ଦେବତା,
ପରାଣ ଉଠିବ ପୁଣ୍ୟେ ପୂରି,
ଅ-ମୃତି ସେହୁ, ଚିହ୍ନି ନିଜରେ
ନ ଡରିବ କା'ର କମାଣ ଗୁଳି ।
ଏ ତତ୍ତ୍ୱ ଆଜି ଜଗତେ ବାପୁଜୀ,
ଶିଖାଇଲ ପୁଣି ନୂତନ କରି,
ନତ ଦଳିତର ଅନ୍ତରେ ଆଜି,
ନୂତନ ଜୀବନ ଉଠଇ ଥରି ।

(୩)

ଯେ କଥା ଶୁଣାଅ ପୟଗମ୍ବର,
ସେ ଯେ ସନାତନ ନିତ୍ୟ ବାଣୀ,
ମହାକାଳ ଭାଲେ ମାନବ ପାଇଁକି,
ବିଧାତା ରଖିଛି ସେ ବାଣୀ ହାଣି ।
ଧରା-ମାଟି ଲୋଭେ ନର ଭୁଲିଯାଏ
ନିତ୍ୟ କାଳର ସତ୍ୟ କଥା,
ଯୁଗେ ଯୁଗେ ତେଣୁ ବୁଦ୍ଧ, ରସୁଲ୍
ଆସି ଓଠ ଧରି ଉଠାଏ ମଥା ।
ବୁଦ୍ଧ, ଖ୍ରୀଷ୍ଟ, କୃଷ୍ଣ, ନିମାଇ
ଯୁଗେ ଯୁଗେ ଦେଲେ ଯାଚି ଯେ ଦାନ,

ସେଇ ବିତରଣ ପାଇଁ ତ ହେ ଯୋଗି,
ତମ ଜୀବନର ଏ ଅଭିଯାନ ।
ମୁକ୍ତ ପୁରୁଷ ବଦ୍ଧ ପାଇଁକି
ଲୁହା କାରାଗାରେ ବନ୍ଦୀ ହେଲ,
ଲାଞ୍ଛିତ ପାଇଁ କୋମଳ ଅଙ୍ଗେ
ହସି ହସି ପଦ-ଆଘାତ ନେଲ ।
ସତ୍ୟ ଯେ କହେ ମୂର୍ଖେ ତାହାରେ
କ୍ରୁଶରେ ଚଢ଼ାଇ ମାରିବେ ଢେଲା,
ନୂତନ-ଖ୍ରୀଷ୍ଟ ିରେ ବାର କରି
ତମର ଜୀବନେ ତାଇ ତ ହେଲା ।
ବ୍ରାହ୍ମଣ ତମେ, ଉପବୀତ ତବ
ଅୟୁତ ପ୍ରାଣର ଗହନ ବ୍ୟଥା,
ପୁରୁଷୋତ୍ତମ, ଜୀବନ ତମର
ବିରାଟ ଜାତିର ମରମ-କଥା ।
ଜୀବନ ପୋଡ଼ିଲ ବତି ପରି ଋଷି,
ନେବାକୁ ଆମର ଅନ୍ଧକାର,
କଠୋର ତପସେ ଜୀବନ କ୍ଷୟିଛ,
ଦେବାକୁ ଧରାରେ ଗଙ୍ଗା-ଧାର ।
ଆଜି ଭଗୀରଥ, ତପସ୍ୟା ତବ
ଏତେ ଦିନ ପରେ ଧରିଛି ଫଳ,
ପୂତ ଉର୍ବର ହେଉଅଛି ମାଟି
ଯହିଁ ଛୁଏଁ ତବ ଜୀବନ-ଜଳ ।
ମସ୍ତକେ ମୋର ପଡୁହେ ବାପୁଜୀ,
ତମର ଚରଣ-ସଲିଳ-କଣ,
ଧନ୍ୟ ହେବ ଏ କ୍ଲିନ୍ନ ଅଙ୍ଗ,
ପୁଣ୍ୟ ହୋଇବ ପରାଣ, ମନ ।

## ଗାନ୍ଧିଜୀ

ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ,
ଅହରହ ସେ ଗୋ ଭାବୁଥାଏ ପରପାଇଁ ।
ଦୁଇ ହାତେ ଏକ କରିଲା ସେ ଆଜି ବ୍ରାହ୍ମଣ, ପାରିଆ,

ନିଷ୍ପାପ ତା'ର ଶୋଣିତ-ବିନ୍ଦୁ, ଅହିଂସ ତା'ର ହିୟା ।
ଅଞ୍ଜଳି ଭରି ବିଷ ପାନକଲା, ଧରାର ଦଳିତ ପାଇଁ,
ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ ।

କ୍ଷୀଣ ଜୀବ ସେ ତ ଡରିଲା ନାହିଁ ସେ
କମାଣେ କି କଟୁଆଳେ,
ଶତ୍ରୁରେ ଦିଏ ନିଜ ସନ୍ଧାନ
ହସି ପଶେ କାରାଗାରେ ।
ନିଜ ତପେ କରେ ଶତ-ଶତ-ଯୁଗ
ଅନ୍ୟାୟ ଧରାଶାୟୀ;
ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ ।

ଆସିଛି ସେ ଆଜି ହିଂସା, ରକ୍ତ
କରୁଣାରେ ଦେବ ଧୋଇ,
ପର ପାଇଁ ଯେତେ ଜଞ୍ଜାଳ ନିଜ
ମସ୍ତକେ ନେବ ବୋହି ।
ପରର ମୁକ୍ତି ପାଇଁ ସନ୍ନ୍ୟାସୀ,
ସୁଖ ତା ଜୀବନେ କାହିଁ ?
ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ ।

ଦେବତା-ଆତ୍ମା ବହେ ସେ ତାହାର
କ୍ଷୀଣ ମାଟି ଅବୟବେ,
ପଦ୍ମ-ବିକାଶ ତେଣୁ ସିନା ତା'ର
ଚଲା-ପଥେ ସମ୍ଭବେ ?
ବୁଦ୍ଧ, ଖ୍ରୀଷ୍ଟ ଏକା ସେ କହିଲା
ପତିତଙ୍କୁ କଲା ଭାଇ
ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ ।

ଯେ ପଥେ ଯାଏ ସେ, ସେ ପଥେ କରଇ
କରୁଣା-କୁସୁମ ବୃଷ୍ଟି
ବ୍ୟଭିଚାର, ପାପ, ଅନାଚାରୁଁ ସେ ଗୋ
କରେ ସତ୍ୟର ସୃଷ୍ଟି ।
ସମାଜରେ ନୂଆ କଳେବର ଦିଏ,
ତୁଳନା ତାହାର କାହିଁ ?
ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ ।

ଶିଶୁ, ନର, ନାରୀ ପାଗଳ ତା ପାଇଁ
କାରାଗାର ନେଲେ ବରି,
ରୁକ୍ଷ ପଥରେ, କରିଲେ ଯାତ୍ରା
ଖଦଡ଼ ପରିହରି ।
କମାଣେ ଭେଟିଲେ ବିଭୀଷିକା ଯାର
ଥିଲା କଟୁଆଳ ଛାଇ,
ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ ।

ଯାହା ସେ କରଇ କରେ ନିବେଦନ
ଭଗବାନ-ପାଦତଳେ,
ମଥା ଖାଲି ନତ ହୋଇ ଆସେ ତା'ର
ଗଭୀର ନମସ୍କାରେ ।
ଧନ୍ୟ ତେଣୁ ଏ କବିର ଲେଖନୀ
ମହିମା ତାହାର ଗାଇ,
ସତ୍ୟ ସେ ପୂଜେ, ଶତ୍ରୁ ତାହାର ନାହିଁ ।

## ନାପିତୁଣୀର ଗାନ୍ଧିପୂଜା

[ ଇଂରାଜୀ 'ହରିଜନ' ପତ୍ରିକାରୁ କଥା ସଂଗୃହୀତ ]

( ୧ )

ଆସିବେ ମହାତ୍ମା ଗାନ୍ଧି ପତିତ ଉଦ୍ଧାରେ
ଶୁଣେ ଗ୍ରାମ-ନାପିତୁଣୀ, ତା ଗ୍ରାମତୋଟାରେ ।
ବାନ୍ଧୁଛନ୍ତି ସ୍ୱେଚ୍ଛାସେବୀ ତାଳପତ୍ର-ବାସ,
ଲାଗିଅଛି ଜନତାର ଦ୍ରୁତ ଯାଆ-ଆସ ।
ଦେଖୁଛନ୍ତି ନବ ଲୀଳା ଗ୍ରାମ ନରନାରୀ
ହେଉଛନ୍ତି କୁହାକୁହି ପଚରାପଚରି-
କି ଦେବେ ଗାନ୍ଧିରେ ଭେଟି; ଦରିଦ୍ର ସକଳେ-
ହେଲେ କି ଦେବତା-ଦେଖା ହେବ ରିକ୍ତ-କରେ ?
ରିକ୍ତ-ହସ୍ତେ କରିବାକୁ ରାଜ-ଦରଶନ,
ଦରିଦ୍ର ହେଲେ ହେଁ, ତାଙ୍କ ମାନୁ ନାହିଁ ମନ ।

ଦୀନୁଁ ଦୀନ ନାପିତୁଣୀ ଭାବେ ମନେ ମନେ
"ମୁଁ କିସ ବନ୍ଦିବି ନେଇ ? କିଛି ହେଲେ ଆନେ
ଦେଇ ଅର୍ଜିବେ ସେ ପୁଣ୍ୟ ଚରଣ ଯୁଗଳ
ମୋର ତ ସେ ଲାଗି ନାହିଁ କିଛି ହିଁ ସମ୍ବଳ !
ତେବେ କି ଏ ପୁଣ୍ୟ-ଦଣ୍ଡ ଯିବ ଖାଲି ଖାଲି ?
ଦ୍ୱାରେ ମୋ ବାରୁଣୀ-ବୁଡ଼; ପାତକ ପଖାଳି
ପାରିବିନି ପାତକିନୀ ? ପତିତ-ପାବନ,
ହେ ଦେବତା, ହେ ମହାତ୍ମା, ହେ ଗାନ୍ଧି-ରାଜନ,
କୋଟି କୋଟି ନରନାରୀ ନମନ୍ତି ପୟରେ,
ଦରିଦ୍ର ମୁଁ, ନାହିଁ ବୋଲି ଧନ ମୋହ କରେ
ପାରିବିନି ବନ୍ଦି ତବ ପରମ ଚରଣ;
ପାଇବିନି କିଛି ତବ ପୁଣ୍ୟ-ବିତରଣ ?
ଜୀବନେ କରିନି ପୁଣ୍ୟ, ନିରକ୍ଷରା ନାରୀ,
ଆଜି ଏ ବୟସେ, ମାଥେ ବହି ପାପ ଭାରି
ଭାବଇ କରିଲେ ହେଲେ ତୋର ପଦାର୍ଚ୍ଚନ
ହୁଅନ୍ତ ବା କିଛି ହେଲେ ଧର୍ମ ଅରଜନ !"

(୨)

ପ୍ରଭାତିଲା ବିଭାବରୀ, ପଡ଼ିଲା ଚହଳ
ଗ୍ରାମ-ଉପବନେ ଯହିଁ ଗାନ୍ଧି, ଗାନ୍ଧି ଦଳ
ହେଲେ ଆସି ଉପଗତ । ପଡ଼ିଲା ବିଚାର—
ନାପିତ ନାହିଁ ଏ ଗ୍ରାମେ ? ହୋଇବେ ସଂସ୍କାର
ମହାତ୍ମା ଏ ପ୍ରଭାତରେ !— ସ୍ୱେଚ୍ଛାସେବୀଗଣ
ଧାଇଁଲେ ତୁରିତେ ଗ୍ରାମେ କରି ଅନ୍ୱେଷଣ ।
ଫେରିଲେ ଯେବେ ସେ ପରେ, ପୂର୍ବ ନାପିତୁଣୀ
ପଛେ ତାଙ୍କ— ଆଖି ଭୂମେ, ମୁଖେ ନାହିଁ ବାଣୀ ।
ସୁସଜ୍ଜିତା ଓଡ଼ିଆଣୀ ଆୟ-ଅଳଙ୍କାରେ,
ଭଂଜୀୟ ନାୟିକା ଯେହ୍ନେ ଚଳେ ଅଭିସାରେ !
ସ୍ତବ୍ଧ ସର୍ବ ସଭାଜନେ, ଗାନ୍ଧି ସ୍ମିତେ ହସେ
ନାପିତୁଣୀ ଆଗମନେ, କୌତୁକ-ରଭସେ ।
ଭାଷନ୍ତି ମହାତ୍ମା ହସି 'ଆଚ୍ଛା ତ ଏକଥା ।'

ନାପିତୁଣୀ ଖୁର ଘଷେ କିନ୍ତୁ ପୋତି ମଥା
ଏକଯୋଗେ ଏକମନେ, ଧୀରେ ଦେଇ ଜଳ,
ମହାତ୍ମା ସହିତେ ସ୍ତବ୍ଧ ସର୍ବ ସଭାସ୍ଥଳ ।
କ୍ରମେ ସେ ପରଖି ଖୁର, ମୁଣ୍ଡେ ଥାପି କର
ନିରକ୍ଷରା ଓଡିଆଣୀ କରିଲା ଉଜ୍ଜ୍ୱଳ,
ପତିତ-ପାବନ ମହା-ମାନବ ଗାନ୍ଧିରେ
ମସ୍ତକେ ବୁଲାଇ ଅସ୍ତ୍ର; ହସ୍ତ ଦେଇ ଧୀରେ
ଦୁଇ ଗଣ୍ଡେ, ଚିବୁକରେ, ପରମ ଆଦରେ
ଆଣିଲା ବୁଲାଇ ଖୁର । ଚରଣ ଯୁଗଳେ
ନମି ପୁଣି ନଖପନ୍ତି କରିଲା ନିର୍ମଳ
ଅତି ଯତ୍ନେ ଦେଇ ତା'ର ସମଗ୍ର କୌଶଳ ।
ପଚାରନ୍ତେ ଗାନ୍ଧି ତା'ରେ ''ପିନ୍ଧିଛ ଜନନି !
ଏ ଯେଉଁ ଭୂଷଣ-ଭାର କି ଲାଭ କହନି-
ହୁଅଇ ଏଥିରେ ତବ !''– ଭାଷଇ ଗଦ୍‌ଗଦ
ନାପିତୁଣୀ ସ୍ନିଗ୍ଧ-କଣ୍ଠେ, ''ମୋହର ସଂପଦ
କାହିଁଛି ହେ ମହାଭାଗ, ପାଇବି ଭୂଷଣ ?
ଏ ସବୁ ଆଣିଛି ମାଗି, ତୁମରେ ଦର୍ଶନ
କରିବି ବୋଲି ମୁଁ ଆଜି । ବିନା ଭୂଷଣରେ
କେମନ୍ତେ ଆସନ୍ତି ଦେଖି ଦେବତା ତୁମରେ ?''
ତା'ପରେ ତା କରେ ଯେବେ ଗୁଞ୍ଜିଲେ ତା ମୂଲ
ଗାନ୍ଧିଙ୍କର ପାର୍ଶ୍ୱଜନେ; ତୁରିତେ ତା ଠୁଳ
କରି ଧୀରେ ମହାତ୍ମାର ଚରଣ-କମଳେ
ଜୀବନର ପୁଣ୍ୟ ଘେନି ନାପିତୁଣୀ ଚଳେ ।

## ମହାଯାତ୍ରା

ଦେଖ ମୃତ୍ୟୁ, ଭୋଗ ଅପମାନ,
ତୁମରି ରଚିତ-ପଥେ ଚାଲେ ପରା ଏଇ
ଜୀବନର ମହା ଅଭିଯାନ !
ମୈତ୍ରୀ-ସର୍ଶେ ପାପକୁ ଯେ ଦେଲା ବାରମ୍ବାର
ଶୁଦ୍ଧ ଅବତାର,

ଅତ୍ୟାଚାର ବଜ୍ର-ବକ୍ଷେ କଲା ଯେହୁ କରୁଣା-କୋମଳ,
ନିଜେ କରି ଯାତନା- ଜର୍ଜର,
ଶତ୍ରୁର କଲ୍ୟାଣ ପାଇଁ ଅନ୍ତରରୁ ବିତରି ଆଶିଷ,
ଅମୃତ ହୋଇଛି ଆଜି ତାହାରିଠି ମରଣର ବିଷ;
ଦେଖ ମୃତ୍ୟୁ; ଭୋଗ ପରାଜୟ
ମୃତ୍ୟୁରାଜ୍ୟେ, ମୃତ୍ୟୁପଥେ
ଯାଏ ଏହି ମହା ମୃତ୍ୟୁଞ୍ଜୟ !

କିଏସେ ସେ ?
ମରଣର ଦେଶେ,
ଯାଏ ଏହି ପଲ୍ଲୀ-ପଥେ, ଯହିଁ ବହୁ ସମ୍ରାଟର ଦଳ
ଆସିଲେ ଓ ଗଲେ ଚଳି, ନ ଗଡ଼ାଇ କାହା ଚକ୍ଷୁଁ ଜଳ,
କିଏ ଏହି ସେହି ପଥେ, ଯାହାଲାଗି ମୁକୁଟ, ହାତୁଡ଼ି,
ଶାସକ, ଶାସିତ, ଦୀନ, ଧନବନ୍ତ, ଶିଶୁ, ବୁଢ଼ାବୁଢ଼ୀ
ଜାତି-ଧର୍ମ-ନିର୍ବିଶେଷେ ନେତ୍ରୁ ଗୁନ୍ଥି ଅଶ୍ରୁ-ମୁକ୍ତାମାଳା
କୋଟି କୋଟି ନରନାରୀ ଭେଟୁଛନ୍ତି ତାକୁ ପଥ-ସାରା ?

କିଏସେ ସେ, ଯା'ଲାଗି ଏ ମରଣ ମୁହୂର୍ତ୍ତେ
ଦେଶ ଦେଶାନ୍ତର-ବ୍ୟାପୀ ନଭେ ନିଖିଳ ଏ ମର୍ତ୍ତ୍ୟେ
ଉଠେ ମୂଢ଼ ହାହାକାର,
ଉଠେ ପୁଣି ଜୟଜୟକାର,
ମେରୁରୁ ମେରୁକୁ ବ୍ୟାପୀ, ପୀତ, କୃଷ୍ଣ, ଲୋହିତ, ଗଉର
ସକଳ ମାନବ କଣ୍ଠୁ ଉଠେ ଧ୍ୱନି ବିକଳ ମଧୁର—
''ମରି ନାହିଁ, ମରି ନାହିଁ ପାର,
ଗାନ୍ଧିଜୀ, ସାକ୍ଷ୍ୟ ଯେ ଦିଏ, ଏଇ ଆମ କୋଟି ଅଶ୍ରୁଧାର !''

ନଥିଲା ତାହାର ଘର, ନଥିଲାରେ କିଛି ହିଁ ସଞ୍ଚୟ,
ସେଥିଲା ଅମ୍ବର ତଳେ ଖାଲି ଏକ ପ୍ରବାହ ଚିନ୍ମୟ,
ପଶୁକୁ ବିଲୋପ କରି ପରାଣେ ତାହାର
ନରତ୍ୱର ଶ୍ରେଷ୍ଠ ଯାହା ଘେନିଥିଲା ଶୁଦ୍ଧ ଅବତାର
ତେଣୁ ତା'ର ଚିତ୍ତେ,
ନରର ମରମ ବ୍ୟଥା ବାଜୁଥାଇ କରୁଣ ଇଙ୍ଗିତେ ।

ସେହି ସେ ବ୍ୟଥାର ଘାତେ ଦେଲା ସେ ଯେ ସୁଖେ ଜଳାଞ୍ଜଳି,
ତପୋମୟ ପଥ ନେଲା ବରି
ଦୁଃଖୀ, ନିଷ୍ପେଷିତ ଯେହୁ, ଅଜ୍ଞ, ପଙ୍ଗୁ ଅତ୍ୟାଚାର-କ୍ଲିଷ୍ଟ,
ତାଙ୍କରି ସେବାହିଁ ହେଲା ତା' ଜୀବନ-ଇଷ୍ଟ ।
ସେହି ଯାଏ ଦିଲ୍ଲୀ ପଥେ ପଥେ,
କୋଟି କୋଟି ନୟନର ଅଶ୍ରୁ-ମୁକ୍ତା ଖସେ ତାର ରଥେ ।

ଯେ ଦିନ ଧରାର ଦ୍ୱାରେ ଦେଖାଦେଲେ କ୍ଷୀଣ ଏ ସନ୍ନ୍ୟାସୀ,
ସେ ଦିନ ଶ୍ୱେତାଙ୍ଗ ଦର୍ପେ, ଧନେ, ମାନେ ତ୍ରସ୍ତ ବିଶ୍ୱବାସୀ ।
ଯନ୍ତ୍ର-ଅଧିକାରୀ,
ୟୁରୋପ, ଡାକଇ ବିଶ୍ୱେ ସଦର୍ପେ ଧିକ୍କାରି—
''ମୁହିଁ ଏ ଧରାର ରାଜା, ଅନ୍ୟ ସର୍ବେ ଦାସତ୍ୱ-ଭାଜନ;
ପ୍ରାପ୍ୟ ମୋର ଏ ଅଭିବାଦନ,
ବିଦ୍ରୋହ କରିବ ଯେହୁ ତାଙ୍କ ଭାଗ୍ୟେ ଚାବୁକ ଧର୍ଷଣ ।''

ଯନ୍ତ୍ର-ବିଭୀଷିକାମୟ, ଧନବନ୍ତ ୟୁରୋପୀ ଦୈତ୍ୟର
ଏ ଗର୍ବ ଦର୍ବର,
ମୁଖପୋତି ସହୁଥିଲେ ହୀନୀକୃତ କୋଟି କୋଟି ନର ।
ଭାଷିଲେ ସନ୍ନ୍ୟାସୀ—
''ଦଳିତ ଦୁର୍ବଳ ଯେତେ ଅସ୍ତ୍ରହୀନ ଭାଇ ବିଶ୍ୱବାସୀ,
ଭୟ ଛାଡ଼,
ମନୁ ଭୟ ଛାଡ଼,
ଅନ୍ୟାୟକୁ ମାନ ନାହିଁ, ସେହି ଆମ ବଡ଼ ଅଧିକାର ।

ଅନ୍ୟାୟ, ଅସତ୍ୟ ତଡ଼ି ଧର୍ମର ପ୍ରତିଷ୍ଠା—
ଯଦି ଆମ ନିଷ୍ଠା,
ଆସ ଭାଇ, ଦେଖା ଛାତି ଅତ୍ୟାଚାରୀ ଚାବୁକ, ବୁଲେଟେ
ଶାନ୍ତ ହେବ ବର୍ବରତା ହିଂସାର ଆଖେଟେ,
ପଶୁରୁ ଉଠିବେ ନାରାୟଣ,
ଦ୍ରବୀଭୂତ ବକ୍ଷେ ଶତ୍ରୁ ଦେବ ଆସି ଭ୍ରାତୃ-ଆଲିଙ୍ଗନ ।
ତହିଁ ହେବ ପଶୁ-ପରାଜୟ,
ପ୍ରତିଷ୍ଠିତ ସ୍ୱର୍ଗ ରାଜ୍ୟ ଧରାପରେ ହେବ ନିଃସଂଶୟ ।''

ଆଶାର ମଳୟ,
ଭୟ-ବିଜଡ଼ିତ କୋଟି ଚିତ୍ତେ କଲା ଆଲୋଡ଼ନମୟ ।

ପ୍ରଥମେ ଆସିଲେ ଦ୍ୱିଧା-ଆଶଙ୍କିତ ଚରଣେ ଅଳପେ
ନବୀନ ସଂକଳ୍ପେ,
ତା'ପରେ ଆସିଲେ ବହୁ, ଉତ୍ସାହରେ ଉଜ୍ଜ୍ୱଳ ନୟନ,
ଆତ୍ମାର ପ୍ରଚ୍ଛନ୍ନରସେ ପରିପୁଷ୍ଟ ପୂର୍ବ-ରୁଗ୍ଣ ମନ,
ସନ୍ନ୍ୟାସୀର ଚୁମ୍ବକ ପରଶେ,
କୁବେର-ସମ୍ପଦ ତେଜି ଅକୁଣ୍ଠିତେ କାରାଗାରେ ପଶେ ।
କୋମଳାଙ୍ଗ ବାଳକ ବାଳିକା,
ଧାଇଁଲେ ସହସ୍ର ସଂଖ୍ୟେ ନାଇବାକୁ ବୀରତ୍ୱର ଟୀକା ।
କୁଳବାଳା ଆସିଲେ ଅନ୍ଧାରୁ
ଏକକ୍ଷଣେ ଯୁଗ-ଯୁଗ-ଭୟ-ଲାଜ ଖସେ ତାଙ୍କ ଭାଲୁଁ ।
ଆସେ ଛାତ୍ର, ଆସଇ କୃଷାଣ,
ଆସେ ଖ୍ରୀଷ୍ଟୀ, ହିନ୍ଦୁ, ବୌଦ୍ଧ, ଜୈନ, ମୁସଲମାନ ।

ଅୟୁତ ଅୟୁତ ଏହି ଅସ୍ତ୍ରହୀନ ନିର୍ବଳ ଜନତା—
ଅର୍ଦ୍ଧନଗ୍ନ, ରିକ୍ତ ଯୋଗୀ କଢ଼ାଉଛି ପନ୍ଥା
ସମ୍ମୁଖରେ ଠିଆ ତାଙ୍କ ସାମ୍ରାଜ୍ୟର ଦୃପ୍ତ ବୀଭତ୍ସତା ।
ତଥାପି ଅକୁତୋଭୟ ଡାକିଲେ ସକଳେ—
"ଗୁଳିଚୋଟେ, ବେତ୍ରାଘାତେ ସତ୍ୟ ନାହିଁ ମରେ ।
ଜୟ ଗାନ୍ଧି ଜୟ !
ଆତ୍ମବଳେ ବଳଯୁକ୍ତ, ଦଳିତର ଆସିଛି ସମୟ ।"

ବିରାଟ ସାମ୍ରାଜ୍ୟ, ବଳ-ଦୃପ୍ତ
ନିରକ୍ତ ଏ ଯୁଦ୍ଧେ ହାରି ଧରାପୃଷ୍ଠୁ ହେଲା ଅବଲୁପ୍ତ ।
ଇତିହାସେ ଶୁଣା ଯା ନଥିଲା,
ଘଟାଇଲେ ଚୀରଧାରୀ, ନିଃସମ୍ବଳ କ୍ଷୀଣାଙ୍ଗ, ସନ୍ନ୍ୟାସୀ,
ଆତ୍ମବଳେ ବିଶ୍ୱାସ ଆସିଲା ।
ସେହି ଯାଏ, ସେହି ଯାଦୁକର
ମରଣର ସ୍ୱର୍ଣ୍ଣରଥେ, ଜୀବନକୁ କରି ଅନୁଚର ।

ମୃତ୍ୟୁ ତମେ ଗଲ ହାରି, ଭୁଲ୍ କଲ ପରା,
ଦେଖ ଦେଖ, ଦେଶେ ଦେଶେ ମୃତ ପ୍ରତି ବିଶ୍ୱ ଅନୁରକ୍ତି
ଜୀବନରୁ କେଡ଼େ ବଳିଗଲା !

ଥିଲେ ଯାହା ଖାଲି 'ବର୍ତ୍ତମାନେ'
ଏବେ ହେଲେ ସମାସୀନ ତିନି କାଳ ବ୍ୟାପି,
ଧରଣୀର ଅନ୍ତସ୍ଥଳେ, ଧ୍ୟାନେ ।
ନର ଥିଲେ ହୋଇଲେ ଦେବତା,
ଚିରନ୍ତନ ହେଲା ଏବେ ବିଶ୍ୱ-ମର୍ମେ ତାଙ୍କ ଲାଗି ବ୍ୟଥା ।

ଯହିଁ ପାପ, ଯହିଁ ଅତ୍ୟାଚାର,
ଗାନ୍ଧି-ନାମ ଦୀପ-ଶିଖା ସମ
ଘୁଞ୍ଚାଇବ ଭବୁଁ ଅନ୍ଧକାର ।

ଖାଲି ଏକ ଭୟ ମନେ ଆସେ
କେଜାଣି ବା ଚେଲାଦଳ ପୂରା ଢାଙ୍କି ଦେହ ଗାନ୍ଧି ବାସେ,
କରିବେ ଅଗାନ୍ଧି-କର୍ମ କାଳେ ଅକୁଣ୍ଠିତେ,
ନିଜ କ୍ଷୁଦ୍ର ହିତେ;
ସେହି କାଳେ ହେ ମରଣ ହେବ ତବ ଜୟ ବାରମ୍ବାର;
ଗାନ୍ଧିର ପ୍ରକୃତ ହତ୍ୟା,
ଯହିଁ ପାପ, ହିଂସା, ଅତ୍ୟାଚାର,
ଯହିଁ ଆବର୍ଜନା, ଯହିଁ ଷଡ଼ଯନ୍ତ୍ର, ନୀଚ ଅବିଚାର ।

## ନାହାନ୍ତି ଗାନ୍ଧିଜୀ

ବାପୁଜୀ, ଆରାମ ଜାଣିତ ନଥିଲ, ଜୀବନ ତମକୁ ଦେଇନି କିଛି;
ନିଜର କଷଣେ ଅଗଣ ଜୀବନେ କଲ୍ୟାଣ- ବୀଜ ଯାଇଛ ବିଂଚି ।
କେତେ ଟୋପା ଯାହା ବକେୟା ରକ୍ତ ରହିଥିଲା ଦେହେ ବଂଚିବା ପାଇଁ,
ପାବନ ସେ ଟିକେ ନିଜର ମୁକ୍ତି ପାଇଁକି ମରଣ ହେଲା ଆଶାୟୀ ।
ମରଣର ହାତେ ପାବନ-ଶୋଣିତ-ଧାରା ଦେଲ ଢାଳି ଅକୁଣ୍ଠିତ,
ତବ ଶୋଣିତର ମନ୍ଦାରମାଳା ବହି ହୁଏ କାଳ ରୋମାଞ୍ଚିତ ।୧।

ମନ୍ତ୍ରେ ଯେପରି ଜାଗ୍ରତ କଲ ସୁପ୍ତ ବିରାଟ ଭାରତବର୍ଷ,
ମୁମୂର୍ଷୁ ସବୁ ଗର୍ଜି ଉଠିଲେ ଲଭି ସନ୍ନ୍ୟାସୀ ତମର ସ୍ପର୍ଶ ।
କବାଟ ଫିଟାଇ ପୁରବାଳାଗଣ ଆସିଲେ ହାରେମ୍-ଅନ୍ଧକାରୁ
''ଭୟ ନାହିଁ, ଏଇ ଗଲା ବନ୍ଧନ''— ବାଣୀ ଉଠେ କୋଟି ଭୟାଳୁଠାରୁ ।

ଯାଦୁକର ଏକ ଜୀବନେ କରିଲ ବହୁ ଶତାବ୍ଦୀ ପୁଞ୍ଜୀଭୂତ,
ଗନ୍ଧବଣିକ * ବିନା ପୁଞ୍ଜିରେ ଇତିହାସ ସାଥେ ଜିଣିଲ ଦ୍ୟୂତ ।୨।

ତମର ବାପୁଜୀ, ମରଣ କି ଅଛି, ଶରୀର ସିନା ସେ ହୋଇଛି ନଷ୍ଟ,
ମାନବ-ସ୍ମରଣେ କାଳ-ଶେଷଯାଏଁ ରହିଲ ଯେ ତମେ ଅତି ଜୀବନ୍ତ ।
ମୃତ୍ୟୁ ନିକାଲି ଜୀବନ ରୋପିଛ ଧରାର ଅଗଣ ବକ୍ଷ ପରେ
କେତେ ପାପ-ମଳ କେତେ ଜୀବନରୁ ଧୋଇଗଲା ତମ ସ୍ପର୍ଶେ ଖରେ ।
ହେ ପାପ-ନାଶନ, ପତିତ-ପାବନ, ମୃତ୍ୟୁଞ୍ଜୟୀ ଜୀବନ-ଦାୟୀ,
'ମୃତ୍ୟୁ' ବୋଲିଣ ତମ ଇତିହାସେ ଇତର ବ୍ୟାପାର ପାରେ କି ଥାଇ ? ।୩।

ଧରାର ଦୁରିତ ଦୂରେ ନେବା ପାଇଁ କରିଲ ଜୀବନପାତ ଯେପରି
ମେଘ, ରବି ପରି ତୁମକୁ ଧରାର ନେଇଥିଲୁ ଏକ ଅଂଶ ଧରି ।
ତେଣୁ ହେ ବାପୁଜୀ, 'ତମେ ନାହଁ' ଏହା ସହଜେ ପ୍ରତୀତି ନୋହୁଛି ଆଜି,
ତଥାପି ନୟନୁ ଝରିପଡ଼େ ଲୁହ, ଅଯୁତ ହୃଦୟ ପଡ଼ଇ ଭାଜି ।
ଆମର ନୟନୁ ଲୁହ ପୋଛିବାକୁ ଜୀବନେ ଜାଳିଲ ପ୍ରଦୀପବତ
ଆମରି ଲୋତକେ ତେଣୁ ସିଞ୍ଚିତ ହେଉଅଛି ତବ ଯାତ୍ରା-ପଥ । ୪ ।

[* ବାପୁଜୀ ଗନ୍ଧବଣିକ କୁଳରେ ଜନ୍ମହୋଇଥିଲେ । ଗନ୍ଧବଣିକ (ଓଡ଼ିଆରେ ପୁଟୁଳି ବଣିଆ )ମାନେ ବଂଶାନୁକ୍ରମେ ବ୍ୟବସାୟୀ । ବାପୁଜୀ ରାଜନୀତିର ବ୍ୟବସାୟରେ ନିଜକୁ ଅନେକ ସମୟରେ ଥଟ୍ଟାରେ କହୁଥାନ୍ତି– ''ହଁ, ମୁଁ ଜଣେ ବଣିଆ ।'']

# ନିର୍ମମ ଭଗବାନ

କୂଳରେ ବୋଇତ ଲାଗିଥିଲା ସତ, କଟି ତ ଯାଇନି ଝଡ଼,
ଚଉପାଶୁ ନାନା ବିଭୀଷିକା ନାବ-ଯାତ୍ରୀକି କରେ ଜଡ଼ ।
ଏଇବେଳେ ପୁଣି ନେଲ ଅପସାରି ଆମ ପ୍ରିୟ କପ୍ତାନ,
　　କି ଇଚ୍ଛା ତବ,
　　　　କି ଇଚ୍ଛା ତବ,
　　　　　　କି ଇଚ୍ଛା ଭଗବାନ ?

ତେତ୍ରିଶ କୋଟି ଯାତ୍ରୀ ବୋଇତେ ତାହାକୁଇ ଥିଲୁ ଚାହିଁ,
ଏପରି କୁଶଳୀ ଚାଳକ ଏ ଧରା-ଇତିହାସେ ଥିଲା ନାହିଁ;
ତମ, ଦୁର୍ଦ୍ଦିନ ମନ୍ତ୍ରେ ଯେପରି ଧୀରେ କଲା ଅବସାନ

ଜାଣନି କି ତାହା,
ଜାଣନି କି ତାହା,
ଜାଣନି କି ଭଗବାନ ?

ବର୍ତ୍ତିକା ପରି ପୋଡ଼ି ପୋଡ଼ି ନିଜେ ଆଲୋକିଲା ଆମ ପଥ,
ତା' ପରଶେ ଟେଙ୍ଗି ଉଠିଲେ ରୁଗ୍‌ଣ, ମୁମୂର୍ଷୁ ପ୍ରତିହତ,
ଭୀତ ନରନାରୀ ଦେଖାଇଲେ ଛାତି ଲଢ଼ିବାକୁ ଅବିଧାନ,
ଜାଣିଛ ତ ତାହା
ଜାଣିଛ ତ ତାହା,
ଜାଣିଛ ତ ଭଗବାନ ?

ନିରହଂକାର ସନ୍ନ୍ୟାସୀ ତାର ନିଜତ୍ୱ ଥିଲା ନାହିଁ,
ପ୍ରତିହିଁ କଥାରେ, ପ୍ରତିପଦେ ସେ ତ ତବ ପଦେ ନମୁଥାଇ,
ତବ ନିର୍ଭର-ତପର କି ହେଲା କରୁଣ ଏ ସମାଧାନ ?
ଇଚ୍ଛା ତମର ପୂର୍ଣ୍ଣ ହେଉ ହେ,
ପୂର୍ଣ୍ଣ ହେଉ ହେ, ନିର୍ମମ ଭଗବାନ ।

## ପ୍ରାଣର ବାପୁଜୀ

ତମ ନେଇ ଯେତେ ଯୁକ୍ତିତର୍କ
ସବୁ ଆଜି ଅବସାନ;
ପ୍ରାଣର ବାପୁଜୀ,
ଆଜି ପ୍ରାଣେ ଖାଲି,
ଅଶ୍ରୁ ଓ ସମ୍ମାନ ।
ଜୀବନେ ତମକୁ ଲଘୁ ବିଚାରିଛୁଁ
ସବୁଥିରେ ଅଛୁଁ ଫାଙ୍କି,
ତବ ଉପଦେଶ ଦଳିଛୁଁ ଚରଣେ
ଉତ୍ତରୀ ତବ ଢାଙ୍କି ।
ଆଉ ନାହିଁ, ଆଉ ନାହିଁ,
ଏଥର ଜୀଇଁବା, ଜୀଇଁବା କେବଳ
ବାପୁଜୀ, ତମରି ପାଇଁ ।

ପଳ ପଳ କରି ଆମରି ପାଇଁକି
ଶରୀର, ରକ୍ତ ଦେଲ,
ଦେଖି ହିଁ ଆଖିରେ ପାଷଣ୍ଡ ଆମେ
ଭାବୁଥାଉଁ ସବୁ ଗେଲ ।
ତୁମରେ ଦେଇନୁ କିଛି
ସରମେ ବାପୁଜୀ, ଆମରି ଆତ୍ମା
ଆମକୁ କରଇ ଛି ଛି ।
ଫାଁକି ଦେଇ ଯାହା ଗଲ ଚାଲି, କୋଟି-
ହୃଦୟ ଦେଇଛ ଦଳି,
ସବୁ ଅନୁତାପ, ସବୁ ଅପରାଧ,
ଲୋତକେ ପଡୁଛି ଗଳି ।
ନର ନୁହଁ ଆଉ, ହୋଇଅଛ ନାରାୟଣ,
ଏକ ଥିଲ, ଆଜି ବିଶ୍ୱ ବ୍ୟାପିଲ
ହେ ସତ୍ୟ- ପରାୟଣ !
ବାହାରେ ଯା ଥିଲ, ମରଣେ ବାପୁଜୀ
ଅନ୍ତର ଗଲ ମାଡ଼ି,
ତୁମେ ହିଁ ଆମର ବିବେକ ଏଥର,
ଦୁର୍ଗମେ ପ୍ରତିହାରୀ ।
ଆମେ ପୁଅଝିଏ ତବ,
ଶମଶାନୁ ତବ ଫେରୁଛୁଁ ବାପୁଜୀ, ଧରି ଏହି ଆଶ ନବ ।
ଯୁଗେ ଯୁଗେ ତମେ ହୋଇଛ ରସୁଲ୍,
*ମେସାଇୟା ଅବତାର,
ଏଥରକ ପରି ହୃଦୟଦଳନ
କରି ନାହଁ କେଉଁ ବାର ।
ସତ୍ୟ ଶିବର ହେ ମହାପୂଜାରୀ ବୀର,
ଅସତ୍ୟ ଆମେ, ଅପୂର୍ଣ୍ଣ ଆମେ,
ଲାଜେ ଅନୁତାପେ
ଦେଉଁ ଖାଲି ଆଖି-ନୀର ।

[ *ମେସାୟା– ହିବ୍ରୁଶବ୍ଦ- ଅର୍ଥ ଆଗାମୀ ତ୍ରାଣକର୍ତ୍ତା । ଯୀଶୁଖ୍ରୀଷ୍ଟଙ୍କୁ ଏହି ଭାବରେ ସମସାୟିକ ଇହୁଦୀମାନେ ପ୍ରଥମେ ମେସାୟା ବୋଲି ଭାବିଥିଲେ; କିନ୍ତୁ ସେ ବିପ୍ଳବାତ୍ମକ ଧର୍ମ ପ୍ରଚାର କରିବାରୁ, ତାଙ୍କୁ କୃଶବିଦ୍ଧ କରି ମାରିଦେଲେ । ]

# ବିଳପୁଚ୍ଛ କାହିଁ ପାଇଁ ?

ଦେଶବାସୀ ମୋର ବିଳପୁଚ୍ଛ କାହିଁପାଇଁ ?
ସେ ମରଣ ତା'ର ଯୋଗ୍ୟ ଯେ
ଏହା ଭୁଲ ନାହିଁ, ଏହା ଭୁଲ ନାହିଁ ।

ଆମ ପାଇଁ ସେ ତ ବରିନେଲା ସଦା ସରଣୀ କଣ୍ଟକିତ,
ମରଣ ତାହାର ନୁହଁତା କିପରି କରୁଣ, ରକ୍ତାୟିତ
ଜୀବନେ ଯେ ଦିନେ ଭୋଗ ନ ଖୋଜିଲା, ମରଣେ ଖୋଜିବ କିଆଁ ?
ମୂଳୁଁ ଶେଷଯାଏ ଜଳି ଜଳି ନିଜେ, ଜାଳିଗଲା ଆମ ହିଆ ।
ନ ଲିଭାଅ ତା'ରେ ଭାଇ,
ଦେଶବାସୀ ମୋର ବିଳପୁଚ୍ଛ କାହିଁ ପାଇଁ ?

ବଜ୍ରବିଦ୍ଧ ମେଘୁଁ ଜଳ ପଡ଼େ, ଦହନେ ଫୁଟଇ ସୁନା,
ତାଜ କୋଣାର୍କ ଉଠିବେ କିପରି ପାହାଡ଼ ନୋହିଲେ ଚୂନା ?
ବୈଶାଖ ତାପେ ଲୁଚିଥାଏ ପରା ହେମନ୍ତ ସୁନା ଶିଁଷା ?
ମରଣରେ ମିଶେ ରହିଥାଏ ପରା ଅମୃତ-କଣା ମିଶା ?
ଦୁଃଖ ନାହିଁ, ଦୁଃଖ ନାହିଁ;
ଦେଶବାସୀ ମୋର ବିଳପୁଚ୍ଛ କାହିଁପାଇଁ !

ସେହି ସେ ଶୋଣିତେ ପତାକାରେ ଲେଖ 'ସତ୍ୟର ନାହିଁ ଭୟ'
'ହିଂସାରେ ହୁଏ ପଶୁତ୍ୱ ଜୟୀ,— ମାନବର ପରାଜୟ ।'
ଭେଦାଭେଦ ଭୁଲ ତଳ ଓ ଉପର, ହିନ୍ଦୁ, ମୁସଲମାନ,
ଏକ ପିତା ସେହି ଭୁବନେଶ୍ୱର, ଆମେ ସବୁ ସନ୍ତାନ ।
ଏକ ମାତା, ସବୁ ଭାଇ;
ଦେଶବାସୀ ମୋର ବିଳପୁଚ୍ଛ କାହିଁ ପାଇଁ ?

ମହାଭାରତର ମହାକାଶ ତଳେ ସକଳେ ହୁଅ ହେ ଠୁଳ,
ଅମ୍ବରେ ଚାହିଁ, ହାତେ ହାତ ଧରି; ବିଦ୍ୱେଷ ଯେତେ ଭୁଲ ।
ତାହାରି ପରିରେ ଜଳ ଏକେ ଏକେ ଜନପଦ-କଲ୍ୟାଣେ,
କ୍ଷୁଦ୍ରତା ତେଜି, ଦୀନ ଜନତାର ମଙ୍ଗଳ ପୋଷ ପ୍ରାଣେ,
ହୁଅ ଅମୃତ-ପାୟୀ;
ଦେଶବାସୀ ମୋର ବିଳପୁଚ୍ଛ କାହିଁପାଇଁ ?

ଜୀବନେ ଯେ ଥିଲା ପରମ-ମୁକ୍ତ, ନିର୍ମଳ ସବୁଠାରେ
ତାପାଇଁ କିପାଇଁ ପ୍ରାର୍ଥନା କର ମନ୍ଦିର ଅନ୍ଧାରେ ?
ତା'ର ଉପାସନା-ବତି ଜାଳ ଭାଇ ଆପଣା ବକ୍ଷେ ତବ,
ତମରି କର୍ମେ ବାପୁଜୀର ହେଉ ସମ୍ଭବ ନବ ନବ,
ଗାନ୍ଧୀ ଯେ ମରି ନାହିଁ
ଦେଶବାସୀ ମୋର ବିଳପୁଛ କାହିଁପାଇଁ ?

## ଦୀପ ନିର୍ବାପିତ

ମେରୁରୁ ମେରୁକୁ ବ୍ୟାପି ତୁମ୍ଭଲାଗି କାନ୍ଦଇ ଧରଣୀ,
ହେ ଧରାର ବରପୁତ୍ର, ସତ୍ୟେ ତାକୁ କଲ ବସୁମତୀ
ବହୁଯୁଗ ପରେ ତୁମ୍ଭେ । ନେଲ ବରି କୃଚ୍ଛ୍ରର ସରଣୀ,
ହିଂସା-ମିଥ୍ୟା-ଝଡ଼ ମଧ୍ୟେ ଜାଳିବାକୁ ବିଶ୍ୱେ ଧର୍ମ-ବତି ।

ଉନ୍ମତ୍ତ ମାନବ ଜାତି ଚିତ୍କାରଇ 'ଦାବୀ' 'ଅଧିକାର'
ପଦ ଅଧିକାର ପାଇଁ ଅପକର୍ମେ ମତ୍ତ ନେତୃ-ଦଳ,
'କର୍ତ୍ତବ୍ୟ'ର କଥା କେହି ମୁଖେ ନାହିଁ କରଇ ଉଚ୍ଚାର,
ମିଥ୍ୟା ଘୃଣା, ମିଥ୍ୟା ଦମ୍ଭେ ସଢୁଛନ୍ତି କୋଟି କୋଟି ନର ।

କେବଳ ସେବାର ଦାବି ମାଗି ଏହି ପାଗଳ ଜଗତ,
ମାନବର ଶୁଭପାଇଁ ଗଲ କର୍ମ କରି ନିରାସକ୍ତ,
ଦୀନହୀନ ନିର୍ଯ୍ୟାତିତେ ଦେଇ ଆଶା ଆପଣା ମହତ୍ତ୍ୱ
ନିରସ୍ତ୍ରେ ଶିଖାଇଲ ତପୋମୟ ସଂଗ୍ରାମ- ନି-ରକ୍ତ ।

ମାନବର ଆଶାଦୀପ ନିର୍ବାପିତ ତୁମ୍ଭର ମରଣେ,
ସେହି ସେ ନୈରାଶ୍ୟ ଫୁଟେ ଧରଣୀର ବ୍ୟାକୁଳ ରୋଦନେ ।

## ଦିଅ ଛାଡ଼ି ତାରେ

ବାପୁଜୀ କରନ୍ତେ ଯାହା, ସ୍ମର ତାହା ପଣ୍ଡିତ ନେହୁରୁ,
ଛାଡ଼ିଦିଅ ସେ ଘାତକେ, ମୁକ୍ତାକାଶ ତଳେ ବସି ଝୁରୁ,
ସେ ନିର୍ବୋଧ, କଳଙ୍କିତ ମାୟାଛନ୍ନ ପାପ ଆପଣାର ।

ଅନୁତପ୍ତ ଲୁହ ପଡୁ, ନପଡୁ ତା ଶୋଣିତର ଧାର
ଏହି ସେ ମାଟିରେ, ଯାହା ପବିତ୍ରିତ ବାପୁଜୀ-ଶୋଣିତେ;
ବାପୁଜୀଙ୍କ ଆତ୍ମାକରୁ ସଇତାନ-ମୁକ୍ତ ତାର ଚିତ୍ତେ ।

ପତାକାରେ ଚାହିଁ ଥରେ । କଲେ ଯେହୁ କ୍ଷମା ମହାମନେ
ତାହାରେ କଲା ଯେ ନାଶ ପ୍ରିୟପୁତ୍ର ପଲାଶ-ଲୋଚନେ,
ଧର୍ମ-ଚକ୍ର ଲେଖାଅଛି ପରା ସେହି ଧର୍ମାଶୋକଙ୍କର,
ଦଣ୍ଡଠାରୁ ଦୟା ବଡ଼, ସ୍ମରି ତାହା, ତାରେ ମୁକ୍ତ କର ।

ଘୃଣାର ତଳେ ସେ ଜୀବ, ସେ କେବଳ କୃପାର ଭାଜନ,
ଛାଡ଼ିଦିଅ, ନ କରି କେ ତାର ଆଉ ନାମ ଉଚ୍ଚାରଣ ।
ବାପୁଜୀଙ୍କି ପାଇବା କି ଏହିପରି କୋଟି କୀଟ ନାଶି ?
ପଣ୍ଡିତ ନେହୁରୁ, ତବ କୃପା ହେଉ ତାର ଯୋଗ୍ୟ ଫାଶୀ ।

## ଭାରତ-ପୁତ୍ର

ମୁକୁଟ ମଣ୍ଡିତ ଶିର ନୁଏଁ ଯହିଁ ଦାରିଦ୍ର୍ୟ-ଚରଣେ,
ନାମ ଯହିଁ ସୁଖେ ହୁଏ ଅବଲୁପ୍ତ ପୁଣ୍ୟ ଆଚରଣେ,
ଧର୍ମ ଯହିଁ ବିରାଟରେ ମଗ୍ନ କରେ କ୍ଷୁଦ୍ର ଅହଙ୍କାର
ଭଗବାନ ଯହିଁ ସତ୍ୟ, ଜ୍ଞାନ ଆଉ ଆନନ୍ଦର ଧାର,
ଜ୍ଞାନ ଯହିଁ ଖାଲି ତାହା ଶିଖାଏ ଯା ଆତ୍ମ-ଉନ୍ନମନ,
କର୍ମ ଯହିଁ ଦିଏ ଫଳ, ନାହିଁ ରଖି ବାସନା-ବନ୍ଧନ,
ରାଷ୍ଟ୍ର ଯହିଁ ତପୋବନ, ଶାସକର ସାଧନାର ପୀଠ,
ହୀନତମ ଯହିଁ ପ୍ରଜା ନୀଚତମ କର୍ମେ ଲଭେ ଇଷ୍ଟ,
ଜନମ ଲଭିବା ଯହିଁ କଲ୍ୟାଣର ମହତ ପରୀକ୍ଷା,
ଭୋଗରେ ହିଁ ଥାଏ ଯହିଁ ସଂଯମ ଓ ସମର୍ପଣ ଦୀକ୍ଷା,
ଈଶ୍ୱର-ଚର୍ଚ୍ଚିତ ଯହିଁ ଜୀବନର ସମସ୍ତ କରମ,
ସତ୍ୟରୂପେ ସମ୍ମାନିତ ଯହିଁ ସର୍ବ ପୂଜା ଓ ଧରମ,
ବାପୁଜୀ, ସେ ଭାରତର ତୁମେ ଅଟ ଜୀବନ୍ତ ପ୍ରତୀକ—
ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଏକାଧାରେ ଶୂଦ୍ର ଓ ଯାଜ୍ଞିକ ।

—

# ଆସିବ ଫେରି ହେ ଶୀଘ୍ର !

ଅନ୍ୟାୟ, ଅସତ୍ୟ, ପାପ, ଅତ୍ୟାଚାର ହିଂସା, ବର୍ବରତା
ପୃଥିବୀରୁ ଯାଇ ନାହିଁ; ଆଲୋକ ଯେ କ୍ଷୀଣ ଅନ୍ଧକାରେ,
ସ୍ୱାର୍ଥର-ମୁଦ୍‌ଗର-ଘାତେ ସତ୍ୟ ନାହିଁ ଟେକିପାରେ ମଥା,
ବାପୁଜୀ, ତୁମେ କି ଦୂରେ ରହିପାର ଛାଡ଼ି ଏ ଧରାରେ ?
ଧନ-ଧର୍ମ-କ୍ଷତ ଅଙ୍ଗେ ବହି ଧରା ବିଳପେ ବିକଳେ,
ଜନତାରେ ତ୍ରସ୍ତ କରେ ରାଷ୍ଟ୍ର ନାମେ ସହସ୍ର ଉରଗ,
ଦଳିତ, ପତିତ ବୁକେ ଆଶାଦୀପ ନାହିଁ ଆଉ ଜଳେ,
ବାପୁଜୀ, ତୁମକୁ ବାନ୍ଧି ରଖିପାରେ କେବେ କି ସ୍ୱରଗ ?
ତମର ସ୍ୱର୍ଗ ଯେ ପିତଃ, କୋଟି ନେତ୍ରୁ ପୋଛିବା ଲୋତକ,
ଅନ୍ୟାୟ-ଦୈତ୍ୟରେ ଦେବା ନୂଆ ପ୍ରାଣ, ସ୍ପର୍ଶେ କରୁଣାର,
ରିକ୍ତ, ରୁଗ୍‌ଣ, ଘୃଣିତ ଯେ ତାଙ୍କରି ହିଁ ହୋଇବା ସେବକ,
ବାପୁଜୀ ବାଜିବ ନିକି ପ୍ରାଣେ ତବ ତାଙ୍କ ହାହାକାର ?
ଆସିବ ଫେରି ହେ ଶୀଘ୍ର, କାହିଁ ତମେ ନ ପାରିବ ରହି,
ଯେଯାଏଁ ଧରାରେ ଦୁଃଖ; ନର ନେତ୍ରୁ ଲୁହ ଯାଏ ବହି ।

# ଯେବେହେ ଆସିବ ଫେରି

ଯେବେହେ ଆସିବ ଫେରି, ଏ ଧରାରେ ଦେବ ପୁଣି ପଦ,
କୁହିତ ମାଟିରେ ପୁଣି ପ୍ରବାହିତ କରି ପୁଣ୍ୟ ନଦ,
ଧରାମୁଖୁ ପୋଛିପାଛି ନେବ ପୁଣି ଯେତେ ଦୈନ୍ୟ, ବ୍ୟାଧି,
ଯେତେ ମିଥ୍ୟା, ଯେତେ ପାପ, କୁସଂସ୍କାର, ବର୍ବରତା ଆଦି
ଅଗାଧ କରୁଣା ସ୍ପର୍ଶେ, ଆପଣାରେ କ୍ଷୟି ତିଳେ ତିଳେ,
ମାନବ ସେବାରେ କୃଚ୍ଛ୍ର ତପସ୍ୟାର ପବିତ୍ର ସଲିଳେ
ଉଜ୍ଜୀବିତ କରି ମୃତ, ଜଡ଼ୀଭୂତ, କଳୁଷିତ ନର
କୋଟି କୋଟି ସ୍ୱାର୍ଥ-ପ୍ରାଣେ ଅଙ୍କୁରାଇ ବୀଜ ପରାର୍ଥର ।
ବାପୁଜୀ, ସେକାଳେ ତବ ଭବିଷ୍ୟର ସେବା-ସ୍କନ୍ଧାବାରେ
ମୁଁ ଏକ ସୈନିକ ଥାଏଁ, କବିର ଏ ଭିକ୍ଷା ତମଠାରେ,
ତବ ସ୍ମିତ-ନିର୍ଦ୍ଦେଶରେ ସହିବାର ଘୋର ନିର୍ଯ୍ୟାତନା,
ଦୁଃସ୍ଥ, ନିଷ୍ପେଷିତ ଲାଗି ବିସର୍ଜିବା ବିଳାସ, ବାସନା
ଆତ୍ମ-ଶୁଦ୍ଧି-ଯଜ୍ଞପୀଠେ; ବଁଚିବାର ହୋଇ ନିମ୍ନତମ,
ବାପୁଜୀ, ତାଠାରୁ ନାହିଁ ଜୀବନରେ କଲ୍ୟାଣ ପରମ ।

# ଅଗଷ୍ଟ ପନ୍ଦର

(୧୯୪୮)

ଅଗଷ୍ଟ ପନ୍ଦର ଆଜି,
ଫେରାଇଛି ପୁଣି ସମ୍ବତ୍ସର
ସେହି ସେ ଦିବସ, ଯାର ପଦପାତ ଆନନ୍ଦ-ଚଞ୍ଚଳ
ଭାରତର ମୁକ୍ତି-ଛନ୍ଦେ । କପାଳରେ ତିଳକ ଯାହାର
ଭାସୂର ବିଜୟ-ଗର୍ବେ ବକ୍ଷେ ସ୍ୱପ୍ନ-ମାଳ ।
ଏଇ ତ ସେ କାଲି ପରି-ଯେବେ ତାର ଉନ୍ମତ୍ତ ନର୍ତ୍ତନେ
ଭାଙ୍ଗି ଘୃଣା-ବ୍ୟବଧାନ, ହେଲେ ବଦ୍ଧ ଦୃଢ଼ ଆଲିଙ୍ଗନେ
କୋଟି କୋଟି ପ୍ରତିବେଶୀ; ଚକ୍ରାଙ୍କିତ ପତାକାର ତଳେ
କୋଟି କୋଟି ଜନସଂଘ ଠିଆହୋଇ ମୁକ୍ତ -ମାଟି ପରେ
ଗାଇଲେ ଉଦାତ୍ତ କଣ୍ଠେ, ''ଜୟ ହିନ୍ଦ୍, ହେ ପ୍ରିୟ ଜନନୀ,
ଶୃଙ୍ଖଳ ଖସିଛି ପଦୁ, ନିଜ ଘରେ ତୁ ପୁଣି ଘରଣୀ ।
ଉଠ ମା ଆଦେଶ ଦିଅ, କୋଟି କୋଟି ଆମେ ପୁଅ ଝିଅ
ଦେବୁ ମଥା ତୋର ଲାଗି;— ଏ ପତାକା ହେଲା ପୂଜ୍ୟ, ପ୍ରିୟ ।
ଆମେ ଆଜି ଦୀନହୀନ, ନାହିଁ ବସ୍ତ୍ର, ନାହିଁ ଖାଦ୍ୟ, ବାସ,
ଚାରିଆଡୁ ନିଷ୍ପେଷିତ ନାହିଁ ଥିଲା ଚିତ୍ତେ ଆମ ଆଶ;
ଆଶାର ବର୍ତ୍ତିକା ଦେଲେ ଜାଳି କୋଟି ଭୟଭୀତ ପ୍ରାଣେ
ସେ ଆମ ବାପୁଜୀ...''
ହାୟ, ସେ ଶବ୍ଦ ଯେ ଅଶ୍ରୁ ନେତ୍ରେ ଆଣେ
ଆଜି ଏ ଉତ୍ସବ ଦିନେ ! କାହାନ୍ତି ସେ ପ୍ରାଣର ଗାନ୍ଧିଜୀ,
ଆମ ହାତେ ଥୋଇଗଲେ ଯେହୁ ଏହି ଅସମ୍ଭବ ସିଦ୍ଧି !
ଅସ୍ତ୍ରହୀନ, ଅସହାୟ, ଭୟଭୀତ ଦୀନ ଜନତାର
ବକ୍ଷରେ ଯେ କଲେ ଆଶା, ସ୍ୱପ୍ନ, ବୁଦ୍ଧି, ସଙ୍କଳ୍ପ ସଂଚାର,
ଘୃଣିତ ଯେ ଥିଲେ କାଲି, ଭୟଭୀତ ନିଜ ମାଟି ପରେ,
ସେ ଆଜି ସମ୍ରାଟ୍ ତହିଁ, ଦୃପ୍ତମଥା,— ଯା'ଙ୍କ ମନ୍ତ୍ରବଳେ;
ସର୍ବରିକ୍ତ ଯେ ସନ୍ନ୍ୟାସୀ ସାମ୍ରାଜ୍ୟର ଦର୍ପ କରି ଚୂର୍ଣ୍ଣ
ନାନା ଦାନେ ଆମ ଡାଲା ଅଯାଚିତେ କରିଗଲେ ପୂର୍ଣ୍ଣ,
ଚାଲ ସେହି ସନ୍ନ୍ୟାସୀଙ୍କ ଭାଲେ ଦେବା ଭକ୍ତିର ଚନ୍ଦନ,
ଆସ ମହା-ହିନ୍ଦୁସ୍ଥାନ ପୁଣ୍ୟପଦ କରିବା ବନ୍ଦନ ।

ହାୟ, କିନ୍ତୁ ନାହାନ୍ତି ସେ ।
କାହାନ୍ତିରେ ପ୍ରାଣର ବାପୁଜୀ ?
ପଚାର ତ ହିମାଚଳେ, ପୁଚ୍ଛ ଗଙ୍ଗା— କହିବେ ବା ବୁଝି !
ପୁଚ୍ଛ ଏ ବିରାଟ ନଭେ, ପୁଚ୍ଛ ଯାଇ ଉନ୍ମତ୍ତ ସିନ୍ଧୁରେ
ପୁଚ୍ଛ ବିନ୍ଧ୍ୟେ, ପୁଚ୍ଛ ତାପ୍ତୀ, ପୁଚ୍ଛ ପୁଣି ମହାନଦୀକୂଳେ ।
କହିବେ ସକଳେ ମିଳି ''ହିନ୍ଦୁସ୍ଥାନ, ତୁ ଯେ ଅଭିଶପ୍ତ,
ଯେ ଦେଲା ତୋ ଲାଗି ସବୁ, ତାକୁ ମାରି ପିଇଲୁ ତା ରକ୍ତ !
ପ୍ରେମର, ସ୍ୱର୍ଗର ରାଜ୍ୟ ଥାପିବାକି ଚାହୁଁ ତୋ ସ୍ଥଳୀରେ,
ତାକ ତୁ ବଧିଲୁ ବନ୍ୟ ପଶୁ ପରି ପାଷଣ୍ଡ ଗୁଳିରେ ?
ଆମେ ହେଲୁ ଧନ୍ୟ ଘେନି ପୁଣ୍ୟ ତାର ଅଙ୍ଗ-ଭସ୍ମ-ରାଶି,
ସ୍ପର୍ଶ ତାର ଜଳ, ମାଟି କରିଅଛି କଳୁଷ-ବିନାଶୀ ।
ଗାନ୍ଧିର ନିଷ୍ଠୁର ହତ୍ୟା ହୋଇନି ସେ ଥରକରେ ଶେଷ,
ତମେ ପୁଣି ପ୍ରତିଦିନ ଦିଅ ତାକୁ କୃଶ-ବିଦ୍ଧ କ୍ଲେଶ ?
ଶୁଣ ଶୁଣ ଭାରତର ନରନାରୀ ଜନସାଧାରଣ,
ମିଥ୍ୟା ଭାଇ କହ ନାହିଁ, କର ନାହିଁ କେ କା'ରେ ଶୋଷଣ,
ଯହିଁ ହିଂସା, ଯହିଁ କ୍ରୋଧ, ଯହିଁ ହୁଏ ଅନ୍ୟାୟ ଉଦୟ
ତହିଁ ତହିଁ ତତକ୍ଷଣେ ଗାନ୍ଧି-ହତ୍ୟା ହୁଏ ଭୟାବହ ।
ହେ ଭାଇ, ଦେଖ ଏ ଜଳ, ନଭ, ବାୟୁ, ମାଟି, ନଦୀ, ବନେ,
ପ୍ରକୃତିରେ ଦେଖ କେହ୍ନେ ପ୍ରଣୟରେ ବଦ୍ଧ ଆଲିଙ୍ଗନେ,
ତୁମେ କିପାଁ ସମାଜରେ ଭେଦାଭେଦ ନାନା ସୃଷ୍ଟି କର,
ଧନ, ପଦ, ଭୌଗୋଳିକ, ଆଞ୍ଚଳିକ, ଭାଷା ଓ ଧର୍ମର ?
ସ୍ମର ଭାଇ ଗାନ୍ଧିବାଣୀ— ପ୍ରେମେ ହୁଅ, ଗୋଟିଏ ମାନବ,
ପରସ୍ପରେ ନାହିଁ ଧ୍ୱଂସି, କର ସ୍ୱର୍ଗ-ରାଜ୍ୟର ଉଦ୍ଭବ ।
ବନ୍ଦ କର ବାଦ୍ୟତାନ, ବନ୍ଦ କର ଉନ୍ମତ୍ତ ଉତ୍ସବ
ଖୋଜ ଖୋଜ ହିନ୍ଦୁସ୍ଥାନ ବାପୁଜୀଙ୍କୁ ଅନ୍ତରରେ ତବ ।
ଅଶ୍ରୁହିଁ ଯଥେଷ୍ଟ ନୁହେଁ, ହାହାକାର ନୁହେଁ ସ୍ମୃତି ତାର,
ନିଜକୁ ଯେ ବଳି କଲା ଦୂରିବାକୁ ପାପ, ଅନାଚାର,
ପଚାର ନିଜକୁ ଭାଇ ଆଜି ଏହି ଅଗଷ୍ଟ ପନ୍ଦରେ
ସ୍ୱାଧୀନ-ଭାରତ ତମେ ଗଢୁଛ ତ ତାହାରି ଛନ୍ଦରେ ?

ଯଦି ନୁହେଁ; ତେବେ ମିଥ୍ୟା, ବୃଥା ଏହି ଉତ୍ସବ ଚିତ୍କାର,
ଅଗଷ୍ଟ-ପନ୍ଦର ନୁହେଁ ପୁତ୍ରଜନ୍ମ, ବିବାହ କନ୍ୟାର ।
ଏ ଯେ ଗାନ୍ଧି-ତପସ୍ୟାରୁ ଜନ୍ମ ନବ ଭାରତ-ଜାତିର,
ତା' ବନ୍ଦନା, ଗାନ୍ଧି-ହେବା; ନୁହେଁ ହେବା ଉତ୍ସବ-ଅସ୍ଥିର ।
ଶୁଣ ଶୁଣ ହିନ୍ଦୁସ୍ଥାନ, ଛାତ୍ରଛାତ୍ରୀ, ଜନସାଧାରଣ,
ଆଜି ଏ ପୁଣ୍ୟାହେ ତବ ବାପୁଜୀ କି ହୁଅନ୍ତି ସ୍ମରଣ ?
ଭାରତର ଭାଗ୍ୟଦାତା, ପ୍ରଜାପତି ମୁକ୍ତ ଭାରତର,
ହିଂସ୍ର, କ୍ଲିନ୍ନ ଧରଣୀରେ ଅବତାର ସତ୍ୟ ଓ ପ୍ରେମର;
ଯାହା ଯୋଗୁଁ ଯୁଗ ଯୁଗ ଧନ୍ୟ ହେବ ଅଗଷ୍ଟ ପନ୍ଦର
କି ଭାବରେ ତା ସ୍ମୃତିକି ସମ୍ମାନିତ କହ ଆଜି କଲ ?
ଜାଣେ କବି, ଆଜିର ଏ ମୁଖରିତ ଉତ୍ସବର ତଳେ,
କୋଟି ଗଣ୍ଡ ତିନ୍ତିଥିବ ତାଙ୍କ ଉଷ୍ମ ସ୍ମୃତି ଅଶ୍ରୁଜଳେ;
— ଅଶ୍ରୁତ ତାଙ୍କରି ପାଇଁ, କିଏ ତାଙ୍କଠାରୁ ପ୍ରିୟତର ?
ସ୍ୱାଭାବିକ ବହିଯିବା ତାଙ୍କ ଲାଗି ରକ୍ତ ହୋଇ ଜଳ—
କିନ୍ତୁ ସେ ଯଥେଷ୍ଟ ନୁହେଁ; କର୍ମଯୋଗୀ, ଅଟଳ ବାପୁଜୀ,
ତାଙ୍କର ବନ୍ଦନା ପାଇଁ ଲୋଡ଼ା ପରା ଅନ୍ୟ ପୂଜାପୂଜି ।
ସେ ପୂଜାରେ ଦ୍ରବ୍ୟ ନାହିଁ— ଦାରିଦ୍ର୍ୟ ହିଁ ସଙ୍ଗୀତ ତାହାର,
'ଭୋଗ' ତହିଁ ଆତ୍ମ-ଶୁଦ୍ଧି, ନିକାଶିବା ସର୍ବ ମିଥ୍ୟାଚାର ।
ସତ୍ୟ ତହିଁ ପୁରୋହିତ; ଅହିଂସା ତା ମନ୍ତ୍ର-ଉଚ୍ଚାରଣ,
ତା' ଆସନ ବିଶ୍ୱ-ଶୁଭେ ବରିନେବା ଆତ୍ମ-କରଷଣ ।
ଏ ପୂଜାର ଆୟୋଜନ କର ଭାଇ ଅଗଷ୍ଟ ପନ୍ଦରେ,
ସ୍ଥିର କରି ପାଳିବାକୁ ଗାନ୍ଧି-ବାଣୀ ଅନ୍ତରେ ଅନ୍ତରେ ।
ଧରା ଯେବେ ଅନ୍ଧକାର, କୁଟୀରରେ ପ୍ରଦୀପ ମାଟିର
କରେ ଅନୁକୃତି ଯେହ୍ନେ କ୍ଷୀଣଭାବେ ତପନ ଦୀପ୍ତିର,
ତମେ ଭାଇ, ସେହିପରି ଦେଖିଲେ ହେଁ ପାପ ଚାରିଆଡ଼େ,
କ୍ଷୁଦ୍ର ଗାନ୍ଧି ରହ ନିଜେ ଶକ୍ତିମତେ ଜଗି ଆପଣାରେ;
ସେହି ତବ ଶ୍ରେଷ୍ଠ ଅର୍ଘ୍ୟ ବାପୁଜୀର ଚରଣ-କମଳେ,
ପରମ ଉତ୍ସବ ସେହି ବର୍ଷେ ବର୍ଷେ ଅଗଷ୍ଟ ପନ୍ଦରେ ।

—

# ତାହାରେ ସ୍ମର ଭାଇ

କ୍ଷୁଦ୍ରଲାଭେ ଚିତ୍ତ ଯେବେ ହୁଏ ଅନ୍ଧୀଭୂତ,
କ୍ଷମତା ଆଶେ ଧର୍ମପଥୁଁ ଚରଣ ହୁଏ ଚ୍ୟୁତ,
ଶ୍ରେଷ୍ଠ ଯେବେ ଦଳିତ ହୁଏ ସାମାନ୍ୟର ପାଇଁ
ତାହାରେ ସ୍ମର ତାହାରେ ସ୍ମର, ତାହାରେ ସ୍ମର ଭାଇ !

କେତନ ତାର ଉଡ଼ାଅ ଯେହୁ ସୈନିକ ସାମନ୍ତେ,
ମଥାରେ ତାର ମାଲ୍ୟ ଦେଇ, ଦଳ ନା ତାର ମତେ !
କର ନା ପାପ କର୍ମ୍ମ ଯେତେ ପୁଣ୍ୟ ତା ନାଁ ଗାଇ,
ସ୍ମରଣ କରି ବଚନ ତାର, ପାଳନ କର ଭାଇ !

ପଶୁ କେ ସିନା ନାଶିଲା ତାର ପଙ୍କ-ମାଟି-ଘଟ,
ଭକ୍ତଠାରୁ ପାଉଛି ସେ ଯେ ଗୋଇଠା ଅବିରତ !
ଛଦ୍ମବେଶେ ଅଧିକ ତାରେ ହତ୍ୟା କର ନାହିଁ,
ସାମାନ୍ୟରେ ଆଦେଶ ତାର ପାଳନ କର ଭାଇ !

ଅସ୍ତ ସେ କି ଚିତ୍ରୁ ଆଜି ଅଗଷ୍ଟ ପନ୍ଦରେ,
ପରେଡ୍ ଆଉ ବକ୍ତୃତାରେ, ମେଳା ଉତ୍ସବରେ ?
ତାକୁଇ ଟିକେ ପ୍ରବେଶ ଦିଅ ମନର ମନ୍ଦିରେ,
ଏ ମହାଦିନର ସ୍ରଷ୍ଟା ସେହି, ପ୍ରାଣର ବାପୁଜୀରେ ।

# ସଂକଳ୍ପ

## (ଅଗଷ୍ଟ ପନ୍ଦର, ୧୯୪୯)

ପୁଣି ସେହି ଦିନ, ସେହି ଅଗଷ୍ଟ ପନ୍ଦର,
ଯେ ଦିନ ପ୍ରଭାତେ କୋଟି କରରୁ ଶୃଙ୍ଖଳ
ସହସା ପଡ଼ିଲା ଖସି; ଗ୍ଲାନି ପୁଞ୍ଜୀଭୂତ
ଅବସାନ ହେଲା ଶେଷେ । ମସ୍ତକ ଅୟୁତ
ନିମ୍ନ-ନେତ୍ର ଥିଲେ ଯେହୁ ପରପଦ ଭାରେ,
ସହସା ଚଳାଇ ନେତ୍ର ସ୍ୱାଧୀନ ସଞ୍ଚାରେ

ଚାହିଁଲେ ସେ ମୁକ୍ତ ନୀଳ ଉଦାର ଆକାଶେ,
ମୁଖେ ତାଙ୍କ ମୁକତିର ଉତ୍ସାହ ପ୍ରକାଶେ ।
ବହୁ ଶତାବ୍ଦୀର ପରେ ସେଦିନ ସକାଳେ
ଭାରତ ହୋଇଲା ଉଭା ବିଶ୍ୱଦରବାରେ
ଅଗଣିତ ଜାତି ଆଗେ ଉନ୍ନତ-ମଉଳି,
ମୁକୁଟ କିରୀଟୁଁ ତା'ର ପଡୁଅଛି ସ୍ଫୁରି
ସେହି ଶତ ମାଣିକ୍ୟର ଦୀପ୍ତି ଉର୍ଜ୍ଜସ୍ୱଳ
ଯା ଯୋଗୁଁ ବିକୀର୍ଣ୍ଣ ହେଲା ଆଲୋକ ମଙ୍ଗଳ
ଇତିହାସେ ଦେଶେ ଦେଶେ— ଅବିଦ୍ୟା ବିଦାରୀ
ନର ଦେହେ ପଶୁ ନାଶି, ସଭ୍ୟତା ସଞ୍ଚାରି ।
ସେହି ପୁଣ୍ୟ ପ୍ରଭାତରେ, ମୁକ୍ତିର ଗୌରବେ
ଅରି ମିତ୍ର ସର୍ବେ ମିଳି ମୁଖର ଉତ୍ସବେ
ଧ୍ୱନିତ କରିଲେ ଯେବେ ଆକାଶ, ଅବନୀ,
ନଗର, ପଲ୍ଲୀର ମୂକ ସହସ୍ର ସରଣୀ
ଯେବେ ମୁକ୍ତ ଉତ୍ସବର ପ୍ରମତ୍ତ ଆନନ୍ଦେ
ପ୍ରକମ୍ପିତ ଉଚ୍ଛ୍ୱାସର ତାଣ୍ଡବିତ ଛନ୍ଦେ,
ବାପୁଜୀ, ଜାତିର ଧାତା, ସେହି ମହାକ୍ଷଣେ
ନଚାହିଁ ସେ ଉତ୍ସବରେ, ମୁକ୍ତି-ମତ୍ତ ଜନେ,
ତମେ ଚାଲିଥିଲ ଧୀରେ, ଜନନେତ୍ର ଦୂରେ
ଉପେକ୍ଷିତ ସେବା ଲାଗି, ଉପେକ୍ଷି ବହୁରେ,
ଅବଜ୍ଞାତ ପଲ୍ଲୀପଥେ— କୁଟୀରୁଁ କୁଟୀରେ
ଦେଖି, ଶୁଣି ଦୁଃସ୍ଥଦୁଃଖ,-ବ୍ୟକ୍ତି ଅଶ୍ରୁନୀରେ ।
ସେହି ସେ ସନ୍ନ୍ୟାସୀ ଛବି ଅନୁକମ୍ପାମୟ
ଦରିଦ୍ର ପତିତ ବନ୍ଧୁ, ସରଳ, ଅଭୟ,
ବୁଭୁକ୍ଷୁ ବ୍ୟାକୁଳେ ଅନ୍ନ ଖୋଜିବାର ପରି
ମାନବର ସେବାବ୍ରତ ଥିଲେ ଯେ ଆଚରି
ସେହି ପିତା, ସେହି ମାତା, ସେହି ସେ ସେବକେ,
ସତ୍ୟ, ନ୍ୟାୟ, କରୁଣାର ସେ ମହାସାଧକେ,
ସାରା ହିନ୍ଦୁସ୍ଥାନ ଆଜି ଅଗଷ୍ଟ ପନ୍ଦରେ
ସେହି ବାପୁଜୀରେ ଖୋଜେ ଆକୁଳ ଅନ୍ତରେ ।

ଅବଲୁପ୍ତ ସତ ଆଜି ସାମ୍ରାଜ୍ୟ ମହାନ,
ଭୟମୁକ୍ତ ସତ ଆଜି ସାରା ହିନ୍ଦୁସ୍ଥାନ,
ଥିଲା ଯା ନିରାଶ, ଭୀତ, ଅବଜ୍ଞାତ, ଦୀନ,
ସେ ମହାଜାତିର ସତ ଆସିଛି ସୁଦିନ,
ଦମ୍ଭେ, ଗର୍ବେ, ଉତ୍ସାହରେ ତେତ୍ରିଶ କୋଟିର
ଊର୍ଦ୍ଧ୍ୱେ ଉତ୍ତୋଳିତ ଆଶାମୟ ସର୍ବଶିର,
ନିଜ ଘରେ ନିଜେ ପ୍ରଭୁ ସତ ହିନ୍ଦୁସ୍ଥାନ,
ଦେଶେ ଦେଶେ ଦୂତ ତା'ର ଲଭଇ ସମ୍ମାନ,
ସାଗରେ ସାଗରେ ତା'ର ବହିତ୍ରବାହିନୀ
ଲେଖିବାରେ ଲାଗିଲାଣି ଗୌରବ କାହାଣୀ,
ତଥାପି ନିଖିଳ ଦେଶ ଆଜି ଅନ୍ଧକାର,
ନଥିବାରୁ ଦେଶ ଦେହେ ଅଙ୍ଗୁଳି ସଞ୍ଚାର
ବାପୁଜୀର— ଶୁଭଙ୍କର, ଦୁଃଖ ପ୍ରଶମନ,
ସେ ଲଘୁ ଚରଣପାତ— କଳୁଷନାଶନ ।
ଜନତା ଉନ୍ମତ୍ତ ସତ, ଗୀତ ବାଦ୍ୟ ରୋଳ
ମୁଖରିତ କରେ ଦେଶ, ବକ୍ତୃତା କଲ୍ଲୋଳ
ଭାସିଯାଏ ଅଜସ୍ରରେ ସହସ୍ର କଣ୍ଠରୁ,
ଏଇ ବୋଧ ଆସେ କିନ୍ତୁ ଜାତି ମର୍ମସ୍ଥଳୁ,
ପ୍ରମାଦ ରହୁଛି କାହିଁ, ଫାଙ୍କି ଅଛି କାହିଁ,
ସବୁ ଆଡ଼ମ୍ବର ଅଛି, ଗାନ୍ଧି କିନ୍ତୁ ନାହିଁ ।
ଶାସିବାକୁ ଲୋକ ବହୁ, ମତ୍ତ ଅଧିକାରେ
ସେବକ ହେବାର କଥା କେହି ନ ଉଚ୍ଚାରେ ।
ବାପୁଜୀ ଯା ଦେଇଗଲେ ସମ୍ପଦ ବିପୁଳ,
ତା'ରି ଭାଗ ବାଣ୍ଟିବାରେ ସମସ୍ତେ ବ୍ୟାକୁଳ ।
ଜାତି ତେଣୁ ମର୍ମେ ମର୍ମେ ଅଗଷ୍ଟ ପନ୍ଦରେ
ଖୋଜେ ସେହି ସନ୍ନ୍ୟାସୀର ପୁଣ୍ୟ ପରଶରେ;
ଜୀବନ ବଞ୍ଚିଲେ ଯେହୁ ବିଶ୍ୱଜନ ପାଇଁ
ବିଶ୍ୱମର୍ମ ଡାକେ ''ସବୁ ଅଛି, ସେ ଯେ ନାହିଁ ।''
ଯାଇନି ସେ କାହିଁ, ଖୋଜ ଖୋଜ ହିନ୍ଦୁସ୍ଥାନ,
ଦେଖିବୁ ଅନ୍ତରେ ତୋର ଗାନ୍ଧି ବର୍ତ୍ତମାନ ।

ସେ କି କେବେ ମରିପାରେ ? ଯୁଗ ଯୁଗ ଧରି
ଆସିଛି ଯେ ସତ୍ୟ ଧାରା ମରମୁ ସଞ୍ଚରି
ଭାରତର;- କାବ୍ୟେ, ଗୀତେ, ଋଷି ତପୋବନେ
ସତୀତ୍ୱମହିମୋଜ୍ଜ୍ୱଳ ଭବନେ ଭବନେ,
ବେଦେ, ଧର୍ମେ, ଦେବାଳୟେ, ଉପନିଷଦରେ
ବ୍ରାହ୍ମଣର ମନ୍ତ୍ରଗାନେ, କ୍ଷତ୍ରିୟ ସମରେ,
ଗାନ୍ଧି ଦେହୀଭୂତ ସେହି ବାଣୀ ସନାତନ,—
ଉର୍ଦ୍ଧ୍ୱଗ, ଅମୃତ-ଭିକ୍ଷୁ, ତୃତୀୟ ଲୋଚନ ।
ସେହି ବାଣୀ ଯୁଗେ ଯୁଗେ କରିଚି ଜାଗ୍ରତ
ନରଦେହେ ସୁପ୍ତ ଯାହା ଦୈବତ, ମହତ,
କ୍ଷୟ ତଳେ ପାଇଛି ଯେ ଅକ୍ଷୟ ସନ୍ଧାନ
ଅନ୍ଧକାରେ ଗାଇଛି ଯେ ଆଲୋକର ଗାନ;
ବାପୁଜୀ କେବଳ ତା'ର ପୁନରାବିର୍ଭାବ
ପୁରୁଣା କାଗଜେ ଲେଖା ନୂତନ କିତାବ ।

ଶୁଣ ଭାଇ ଏ ଦେଶର କୋଟି ନରନାରୀ,
ଯଦି ଚାହଁ ଜୀଇଁ ରୁହ ବାପୁଜୀ ବିଚାରି,
ଶୁଣ ସେହି ଭାରତର ବାଣୀ ସନାତନ,
ଖୋଜ ମହତରେ କାଟି କ୍ଷୁଦ୍ରର ବନ୍ଧନ ।
ଏଇ କଥା ଚିତ୍ତେ ରଖ, ଯହିଁ ଅନାଚାର,
ଯହିଁ ମିଥ୍ୟା, କ୍ରୋଧ, ହିଂସା, ମୂଢ଼, ଅହଙ୍କାର,
ଯହିଁ କେହି କର ଘୃଣା ନିଜ ପଡ଼ୋଶୀରେ,
ଉଠିବାକୁ ଚାହଁ ଦେଇ ପାଦ ଆନ ଶିରେ;
ନିଜ ବଞ୍ଚିବାର ପାଇଁ ପର ଅଧିକାର
ଅନ୍ୟାୟରେ କର ଯେବେ ଯହିଁବା ସଂହାର,
ସେହି ସ୍ଥାନେ ସେହି କ୍ଷଣେ ଗାନ୍ଧି ମରେ ଭାଇ,
ଗାନ୍ଧି ଜୟ ଗାଇ ମୁଖେ, ଗାନ୍ଧି ମାର ନାହିଁ ।
ସ୍ୱାଧୀନ ଭାରତ, ପରାଧୀନ ଭାରତରୁ
ଦୁଃସ୍ଥତର ଯଦି ଆଜି, ତା'ଜନ-ସଂଘରୁ
ଉଠୁଥାଏ ଯଦି କାହିଁ ନୈରାଶ୍ୟ ନିଶ୍ୱାସ,
ହରାଉଛି ଜାତି ଯଦି ନ୍ୟାୟରେ ବିଶ୍ୱାସ,

ତା କେବଳ ଆମେ ସବୁ ପାଷଣ୍ଡର ଦଳ
ଗାନ୍ଧିରେ ମାରୁଛୁ ବୋଲି କରି କଳବଳ ।
ଆଜି ଏ ବରେଣ୍ୟ ଦିନେ ଏକ ଆନେ ଭାଇ,
ଦୋଷର ତର୍ଜ୍ଜନୀ ଟେକି କିଛି ଫଳ ନାହିଁ,
ଆତ୍ମ-ପରୀକ୍ଷାରେ ଦେଖ ଚିତ୍ର ଆପଣାର
ଦେଖିବ ସମସ୍ତେ କରୁଁ ବାପୁଜୀ-ସଂହାର ।
'ଗାନ୍ଧିଜୀ କି ଜୟ' କହି ଫଟାଉ ଆକାଶ,
ଜଣେ କେତେ ପିନ୍ଧୁ ଆମେ ଖଦଡ଼ର ବାସ,
ଅନ୍ତରରେ କିନ୍ତୁ ସର୍ବେ ସ୍ୱାର୍ଥ ଅଭିଭୂତ,
''ଆନ ପାଇଁ ପେଜ ଆଛା; ମୋର ଲୋଡ଼ା ଘୃତ ।''
ଏଇ ସ୍ୱାର୍ଥକ୍ଳିନ୍ନ କର୍ମେ, ହିଂସ୍ରକ ବ୍ୟାପାରେ
ପ୍ରତ୍ୟେକ ଜଡ଼ିତ ଯେଣୁ ଦିବସ, ନିଶାରେ
ବାପୁଜୀ ମରଇ ଭାଇ ତିଳ ତିଳ କରି
ଅଗଷ୍ଟ ପନ୍ଦରେ । ଆଜି ଦ୍ୟାବା-ପୃଥ୍ୱୀ ଭରି
ଶୁଣ ଶୁଣ ହିନ୍ଦୁସ୍ଥାନ ତାହାରି ଯନ୍ତ୍ରଣା,
ଅନ୍ତର-ଅନ୍ତର-ମୟ ତା ମର୍ମ-ବେଦନା ।
କର ତାହା ହୃଦଙ୍ଗମ ଏ ମହା ଦିବସେ
ସଙ୍କଳ୍ପ କର ରେ ଭାଇ ଅନୁତାପ ରସେ;
ହୁଅ ମନ୍ତ୍ରୀ, ହୁଅ କୃଷୀ, ଛାତ୍ର ମଜଦୁର,
ପୁଞ୍ଜିପତି, ବ୍ୟବସାୟୀ, ପୁରବାଳାକୁଳ,
ବଡ, ସାନ, ଯିଏ ଅଛ ଯହିଁ ନିଜ ସ୍ଥାନେ,
ଏ ସଂକଳ୍ପ କର ନିଜ କର୍ମେ, ମନେ, ପ୍ରାଣେ,
ଆଜିଠାରୁ ବାପୁଜୀଙ୍କି ରଖିବ ବଞ୍ଚାଇ,
ତା ପୁଣ୍ୟ ସ୍ମୃତିରେ ପଦାଘାତ ଦେବ ନାହିଁ ।
ସେ ଶ୍ରେଷ୍ଠ ଉତ୍ସବ ହେବ ଅଗଷ୍ଟ ପନ୍ଦରେ,
ଜାତିର ପିତାର ପୂଜା, ତାହାରି ମନ୍ତ୍ରରେ ।
ବାପୁଜୀ, ଧରାର ଭାବପ୍ରାଣ କବିଦଳ,
ବନ୍ଦନ୍ତି ତୁମରେ ଆଜି । ଆଶା-ଶତଦଳ
ଫୁଟାଇ ଯାଇଛ ଯେଣୁ ତାଙ୍କ ଶତ ପ୍ରାଣେ,
ଯନ୍ତ୍ରଯୁଗ ରଜନୀର ପୁଂଜୀଭୂତ ଶ୍ୟାମେ
ଯନ୍ତ୍ର-ବିକଳିତ, ହିଂସା-ହତ୍ୟା-କଳୁଷିତ

ହେଲେହେଁ ଧରିତ୍ରୀ, ନୁହେଁ ଦେବତା ବଞ୍ଚିତ ।
ତମେ ଯେ ଆସିଲ, ଗଲ ଦୃଢ଼ ଆଶା ଆଣେ,
ଆଶାହୀନ, ଅବସନ୍ନ, କବିଦଳ ପ୍ରାଣେ,—
ହେବାକୁ ଦେବତା-ପୁଣ୍ୟ-ଚରଣ ସଞ୍ଚାର
ପୂର୍ବପରି ଅଛି ଯୋଗ୍ୟ ମାଟି ଏ ଧରାର ।
ପୂର୍ବ ପରି ମାନବର ଦୁଃଖ ଦୁରିତରେ
ଈଶ୍ୱର ମିଳାଇ କାନ୍ଧ ଏଇ ମାଟି ପରେ
ପଙ୍ଗୁ, ଭଗ୍ନ ଜାନୁ ଯେହୁ ଦୁଃସ୍ଥ ଦୂରୀକୃତ,
ଅନ୍ୟାୟପୀଡ଼ିତ, ଭୀତ, ଦୁଃଖୀ ସର୍ବହୃତ,
ତାଙ୍କୁ ହିଁ ଦେବେ ସେ ପ୍ରେମ, ଦେବେ ଉଦ୍‌ବୋଧନ
ମରଣରୁ ଦେବେ ତାଙ୍କୁ ନବୀନ ଜୀବନ ।

ଧୂମାଚ୍ଛନ୍ନ ଯନ୍ତ୍ରଯୁଗେ ହେ ପୟଗମ୍ବର
ତବ ବାଣୀମୁଗ୍ଧ ଆଜି ବିଶ୍ୱ କବିଦଳ ।
ବିଶ୍ୱର ସହସ୍ର କବିଦଳେ ନ୍ୟୂନତମ,
ବାପୁଜୀ, ଚରଣେ ତବ ପ୍ରଣାମ ପରମ
ଆଜି ଏ ପୁଣ୍ୟାହେ ଏହି ଅଗଷ୍ଟ ପନ୍ଦରେ
ତବ ବାଣୀ କରୁ ସ୍ନାତ ମୋ ହୃଦକନ୍ଦରେ ।
ଭୁଲୁ ମନ୍ତ୍ରୀ, ଭୁଲୁ ପଛେ କର୍ମୀ କଂଗ୍ରେସର,
ନାହିଁ ଭୁଲେ ଯେହ୍ନେ ଅବଜ୍ଞାତ କବିଦଳ,
ସତ୍ୟ ଅହିଂସାର ବାଣୀ କୃଚ୍ଛ୍ର ସାଧନାରେ
ପ୍ରଚାରିତ କଲ ଯାହା ତବ ଅବତାରେ ।
କବିର ସଂକଳ୍ପ ଆଜି କୋଟି ଜନ ମର୍ମେ
ପ୍ରଚାରିବ ସେହି ବାଣୀ, ସେହି ପୁଣ୍ୟ ଧାମେ ।
ଜାତି ଧର୍ମ- ନିର୍ବିଶେଷେ ନିଖିଳ ଜନରେ
ଦେବ ପ୍ରେମ,— ଅହିଂସ ସେ ଥିବ ସର୍ବ ସ୍ଥଳେ ।
ନାରୀରେ ଦେଖିବ ମାତା, ଦରିଦ୍ରରେ ଭାଇ,
ତାଙ୍କ ସେବା ବିନୁ ଉଚ୍ଚତର ଲକ୍ଷ୍ୟ ନାହିଁ ।
ଦେଶ ନୁହେଁ ନଗରର ଶୁଷ୍କ ଆଡ଼ମ୍ବର,
ଚାଷୀର କୁଟୀର ଦେଶ-ମା'ର ପୀଠସ୍ଥଳ ।
ଦେଶସେବା ସେବା ସେହି ଗ୍ରାମ୍ୟ ଜନତାର
କରିବା କୁଟୀରେ ତାଙ୍କ ଆନନ୍ଦ ସଞ୍ଚାର ।

ବାପୁଜୀ, ଆଜି ଏ ପୁଣ୍ୟ ଅଗଷ୍ଟ ପନ୍ଦରେ
ଏ ସଙ୍କଳ୍ପେ ଭକ୍ତ ତବ ବର୍ଷାରମ୍ଭ କରେ ।
ଜନତାର ଉର୍ଦ୍ଧ୍ୱେ ରହି ମନ୍ତ୍ରୀ, ଦୂତଗଣ,
କରୁ ନ କରନ୍ତୁ ତବ ବଚନ ସ୍ମରଣ,
ନିମ୍ନେ ଆମେ ସେହି ନାଗରିକ ସାଧାରଣ,
ଯାଙ୍କ ପାଇଁ ଥିଲ ତମେ ପ୍ରେମ-ପ୍ରସ୍ରବଣ,
ଦେଖି ତାଙ୍କୁ ହୀନୀଭୂତ ଦୁଃଖ, ଅଜ୍ଞତାରେ,
ସେ ଆଜି ସଙ୍କଳ୍ପ କରେ ତବ ସ୍ମୃତି ଦ୍ୱାରେ;
ଆମ ଦୈନ୍ୟ ତଳେ କୋଟି ହୃଦୟେ ହୃଦୟେ
ବଞ୍ଚାଇବୁ ବାପୁଜୀଙ୍କୁ ନିଃଶଙ୍କେ, ନିର୍ଭୟେ ।
ଯହିଁ ଦୈନ୍ୟ, ଯହିଁ ଅଶ୍ରୁ, ଦୁଃଖ ଅବିଚାର,
ଜାଣୁ ଆମେ ସେହି ପ୍ରିୟ ବାପୁଜୀ-ବିହାର ।
ତେଣୁ ଆମେ ଭାରତର ବିରାଟ ଜନତା
ବାପୁଜୀ ଚରଣ ପ୍ରାନ୍ତେ ଦେଉଁ ଏହି କଥା
ଦେଶ ପାଇଁ, ସତ୍ୟ ପାଇଁ, ନ୍ୟାୟ ଧର୍ମ ପାଇଁ
ଜୀବନ ଚାଳିବୁଁ ବାପୁ-ବାଣୀ-ଅନୁଯାୟୀ ।
ଭାରତ ହୋଇବ ପୁଣି ଅଗ୍ରଣୀ ବିଶ୍ୱର
ଜଗତ ଶୁଣିବ ତା'ର ବାଣୀ ଅନଶ୍ୱର,
ଅଶୋକ-କେତନ ତଳେ ନିଖିଳ ଜଗତ
ହିଂସା ଭୁଲି ପ୍ରେମେ ହେବ ଶାସିତ, ସଂହତ ।
ବାପୁଜୀ, ହେବାକୁ ତବ ସେ ସ୍ୱପ୍ନ ସଫଳ
ଉନ୍ମାଦିତ କରୁ ସର୍ବେ ଅଗଷ୍ଟ ପନ୍ଦର ।

—

# ଅକ୍ଷତ

## ଭୂମିକା

ଏକ ସାମୟିକ ଭାବାବେଶ ଫଳରେ ଏହି ପୁସ୍ତକର ସନେଟ୍ ଗୁଡ଼ିକ ରଚିତ ହୋଇପଡ଼ିଥିଲା । ପୁସ୍ତକାକାରରେ ପ୍ରକାଶ କରିବାକୁ ଇଚ୍ଛା ହେବାରୁ ସହଧର୍ମ କେତେକ କବିତା ସେମାନଙ୍କ ସଙ୍ଗେ ଯୋଡ଼ିଦିଆଯାଇଛି । ପାଠକମାନେ, ସେଗୁଡ଼ିକୁ ଅକ୍ଷତ ସଙ୍ଗେ ଦୂର୍ବା, ବଦରୀପତ୍ର ଓ ହରିଦ୍ରାଚୂର୍ଣ୍ଣ ବୋଲି ମନେକରିପାରନ୍ତି । ଉତ୍କଳସରସ୍ୱତୀଙ୍କର ବନ୍ଦାପନା ପାଇଁ ଏହି ଦରିଦ୍ର ଲେଖକର ଘରେ ଅଧିକ କିଛି ନାହିଁ ।

ଏହି ଲେଖକ ଯତି, ଭକ୍ତ ବା ଧାର୍ମିକ ନୁହେଁ । ଧରାତଳର କୋଟି କୋଟି ପଥଯାତ୍ରୀମାନଙ୍କ ମଧ୍ୟରୁ ସେ ଏକ ସାମାନ୍ୟତମ ଯାତ୍ରୀ ମାତ୍ର । ସାଧାରଣ ସହଯାତ୍ରୀମାନଙ୍କ ପରି ତା'ର ଶରୀର ଜୀବନ ସଂଗ୍ରାମର ଅସ୍ତ୍ରକ୍ଷତରେ ବିକଳ, ତାର ଗଣ୍ଡ ଅଶ୍ରୁ-ସ୍ନାତ, ତାର ଅନ୍ତର ଅସନ୍ତୋଷ ଓ ଅଭିମାନରେ ଭରା ।

ନିଜ ଜୀବନର ଓ ସହଯାତ୍ରୀ ଜୀବଗ୍ରାମର ଦୁଃଖ ଦୁର୍ଦ୍ଦଶାର କଥା ଭାବୁଁ ଭାବୁଁ ଲେଖକ ବେଳେ ବେଳେ ଗୌତମ ବୁଦ୍ଧଙ୍କ ସଙ୍ଗେ ନିରୀଶ୍ୱର ହେଲାବେଳକୁ, ତେଣେ ରାମକୃଷ୍ଣ ପରମହଂସଙ୍କର ଈଶ୍ୱର-କୁଟୁମ୍ବିତା ଦେଖି ସ୍ତବ୍ଧ ହୁଏ । ଏ ରହସ୍ୟର ଠିକ୍ ଉତ୍ତର କିଏ ଦେବ ?

ଦୃଶ୍ୟମାନ ସୃଷ୍ଟିର ରହସ୍ୟ ଭେଦକରିବାକୁ ଚେଷ୍ଟା କରି ବହୁ ସହସ୍ର ବର୍ଷ ତଳେ ଋକ୍ ବେଦର ଋଷି ମଧ୍ୟ ପଚାରିଥିଲେ, ''ଏହି ବିରାଟ ସୃଷ୍ଟିର ତତ୍ତ୍ୱ କିଏ ଜାଣେ ? କିଏ ଠିକ୍ କରି କହିବ ? ଦେବତାମାନେ ସୃଷ୍ଟିର ପରେ ଆସିଛନ୍ତି । ତେଣୁ ଏହା କେଉଁଠୁ ଆସିଲା କିଏ କହିବ ?'' (ଋକ୍‌ବେଦ, ୧୦,୧୨୯)

ଏହି ଶାଶ୍ୱତ ପ୍ରଶ୍ନର ଉତ୍ତର ଏବଯାଏଁ ମଧ୍ୟ ମିଳିନାହିଁ ।

ବୁଦ୍ଧ ଏଥିପାଇଁ ସୃଷ୍ଟି ଓ ସ୍ରଷ୍ଟାର ତତ୍ତ୍ୱ ନେଇ ସମୟ ବୃଥା ନଷ୍ଟ ନକରି ଆତ୍ମକର୍ଷଣଦ୍ୱାରା ସଂସାର-ଦୁଃଖରୁ ନିର୍ବାଣ ଲାଭ କରିବାକୁ ଉପଦେଶ ଦେଇଥିଲେ । କିନ୍ତୁ ମନୁଷ୍ୟର ଚିତ୍ତ ସବୁବେଳେ ଏକ ଅଦୃଶ୍ୟ ଶକ୍ତି ସଙ୍ଗେ ନିଜକୁ ସମ୍ପର୍କିତ ରଖି ଏକ ପ୍ରକାର ମାନସିକ ସୁଖ ଆସ୍ୱାଦନ କରିବାକୁ ଚାହେଁ । ଫଳରେ ବୁଦ୍ଧଙ୍କର ଶିଷ୍ୟମାନେ ଦିନେ ତାଙ୍କୁଇ ଈଶ୍ୱର ରୂପେ ପୂଜା କରିବାକୁ ଲାଗିଲେ ।

ଆଗେ ତ କହିଛି — ଏ ଲେଖକ ଭକ୍ତ ବା ସାଧକ ନୁହେଁ । ସେ ଇହଜୀବନର ଦୁଃଖ ସୁଖର ଏକ ଭୋକ୍ତା ମାତ୍ର । ମନୁଷ୍ୟ ନିଜର ଅନ୍ତରର ଦୁଃଖ ସୁଖ ଅନ୍ୟ ଆଗରେ କହି ସୁଖପାଏ । ଲେଖକ ଅନ୍ୟ ଗତି ନ ଦେଖି, ଈଶ୍ୱର ନାମକ ସେହି ଶାଶ୍ୱତ ରହସ୍ୟମୟ ଅଦୃଷ୍ଟ ପୁରୁଷ ନିକଟରେ ତାହାହିଁ କରିବାକୁ ଯାଇଛି ।

—

## ଅଭିମାନ

ହେ ପିତ, ହେ ବନ୍ଧୁ, ପ୍ରିୟ, ତମର ସନ୍ନିଧି
ଲଭଇ ମୁଁ ଯଦି କେବେ, ଧରା ଦୃଶ୍ୟମାନ
ଭୁଲିଯାଏ ସଂପୂର୍ଣ୍ଣରେ । ଚିନ୍ତାର ପରିଧି
କମ୍ପିତ ଆଶିଷେ ତବ ହୁଏ ସ୍ପନ୍ଦମାନ ।

ଅଜାଣତେ ସେ ମୁହୂର୍ତ୍ତ କାହିଁ ଯାଏ ଚାଲି;
ତା'ପରେ ଫେରାଏ ଚିତ୍ତ ଇନ୍ଦ୍ରିୟ ବିଷୟେ,
ଉଡ଼ିବୁଲେଁ ଅହଂକାର-ପକ୍ଷ ମୁଁ ବିସ୍ତାରି,
'ତମେ ନାହଁ' 'ତମେ ମିଥ୍ୟା' ଚିତ୍ତ ରଟି ରହେ ।

ଅଭିମାନ ସେ ଯେ ମୋର, ନାହିଁ କି ବୁଝିବ ?
କେମନ୍ତେ ଜାଣିବି, ଏହି ଦୀନ ଅକିଂଚନ
ସତେ ତମ ମନେଥାଏ ? ଥିଲେ କି ଏ ଜୀବନ
ଅଣ୍ଡାଳି ହୁଅନ୍ତା କରି ସ୍ନେହ ଅନ୍ୱେଷଣ ?

ଶୁକ୍ତି କିନ୍ତୁ ଖୋଲା ମୋର ହୃଦ-ସିନ୍ଧୁ ତଳେ
ଅପେକ୍ଷି, କରୁଣା-ମୁକ୍ତା ପଡ଼ିବ ଗର୍ଭରେ ।

## ଅପଣ୍ୟ ପ୍ରେମ

ବହୁ ଜନ ଦେଲେ ବହୁ ପ୍ରଥମ ଜୀବନେ,
ଦେଖାଇଲେ ପ୍ରଣୟର ଗଭୀର ମମତା,
ସେ ଦାନ-ପ୍ରମତ୍ତ, ଭାବି ଧନ୍ୟ ମନେ ମନେ
ଉପହାସେ ଭୁଲିଥିଲି ପ୍ରଭୁ, ତବ ସତ୍ତା ।

କ୍ରମେ ମୁଁ ଜାଣୁଛି ଏବେ ସେ ଦାନର ତଳେ
ଥିଲା ଓତପ୍ରୋତେ ରହି ସୂକ୍ଷ୍ମ ଅହଂକାର,

ଏକ କରେ ଦେଇ ନେବା-ଆଶା ଆନ କରେ,
ମମତା-ସଂଚାର ମାତ୍ର ବନ୍ଧନ-ବିଚାର ।

କର୍ତ୍ତିତ ସେ ପକ୍ଷଯୁଗ, ସ୍ୱପ୍ନ-ବିହାୟସେ,
ଯା ଘେନି ମୁଁ ଉଡୁଥିଲି ଆନନ୍ଦେ ସେ କାଳେ
ପୀଡ଼ା ଆଜି ସର୍ବାଙ୍ଗରେ ଶୃଙ୍ଖଳ ପରଶେ,
ପୀଡ଼ିତ ମୁଁ ସେ ପ୍ରାଚୀନ ପ୍ରଣୟର ଭାରେ ।

କବି ଆତ୍ମା ଖୋଜେ ଆଜି ସେହି ସେ ପ୍ରଣୟ
ନାହିଁ ଯହିଁ ବିପଣୀର ପଣ୍ୟ ବିନିମୟ ।

## ଏକ ଓ ବହୁ

ନାନା ଧର୍ମ, ନାନା ଶାସ୍ତ୍ର, ନାନା ଦରଶନ
ପଢ଼ି ମାତ୍ର ଭାରାକ୍ରାନ୍ତ କଲି ମୋର ଶିରେ,
କସ୍ତୁରିକା ମୃଗ ସମ ଭ୍ରାନ୍ତ ଅନ୍ୱେଷଣ,
କରି ମୁଁ ଫେରିଛି ଶେଷେ ତୁମ୍ଭ ସନ୍ନିଧିରେ ।

ପଣ୍ଡିତମ୍ମନ୍ୟଙ୍କ ପରି ତର୍କେ ମୁଁ ମାତିଛି,
ତୁମେ ଅଛ, ଅବା ନାହଁ, ଦେଖ ବା ନଦେଖ
ଆମ ଦୁଃଖ ଦୈନନ୍ଦିନ; ନ ଜାଣିଲି କିଛି,—
ଜାଣିଲି ମାତ୍ରକ, ତୁମେ ଏକ ଓ ଅନେକ ।

ହେ ମହାଏକକ, ନିଜେ କରିଛ ପ୍ରକାଶ
ଅଗଣିତ ଅନେକରେ, ଫୁଲୁଁ ତାରାଯାଏ,
ନାନା ଛନ୍ଦେ, ନାନା ରୂପେ ନିତ୍ୟ ତୁମ୍ଭ ରାସ
ସୁଖ ଦୁଃଖ ଦୁଇ ତାରେ ତବ ବୀଣା ଗାଏ ।

ମୁଗ୍ଧ ହୋଇ ସୃଷ୍ଟି-କାବ୍ୟ କରୁଁ ଅଧ୍ୟୟନ,
ଫିଙ୍ଗିଲିଣି ବହୁ ଦିନୁଁ ତତ୍ତ୍ୱ-ବ୍ୟାକରଣ ।

—

# ଅଶ୍ରୁମୁକ୍ତା

ପ୍ରବାସେ ବିଜନ-ବାସେ, ନିରୋଳା ସନ୍ଧ୍ୟାରେ
ବସି ଭାବୁଁ ଖସିପଡ଼େ ନେତ୍ରୁ ଅଶ୍ରୁଧାର,
ମନ-ପକ୍ଷୀ ଡେଣା ଟେକେ, ଯିବ ଦେଖି ତାରେ
ଚାହିଁଛି ଯେ ସାଜି ସୁଖ-ନୀଡ଼ ଗୋଟି ତାର ।

ଥିଲେ ପାଶେ ହୁଏ ତିକ୍ତ କଳହେ ଜୀବନ,
ପରସ୍ପରେ ଅଭିଯୋଗୀ 'ନିଷ୍ଠୁର' 'ନିର୍ମମ',
ସେହି ହେଲେ ଛଡ଼ାଛଡ଼ି, ବିଧୁର ଏ ମନ
ରୋଦେ ଅପହୃତ-କ୍ରୀଡ଼ନକ-ଶିଶୁ ସମ ।

ପଣ୍ଡିତେ କହିବେ ଏହା 'ମାୟା' ବୋଲି ସିନା,
ତମ ଶାସ୍ତ୍ରେ ଭିନ୍ନ ଅର୍ଥ ହେବ ଅନ୍ତର୍ଯ୍ୟାମି,
ଏ ଜଗତେ ଅଶ୍ରୁ କାହିଁ ତମ ସ୍ପର୍ଶ ବିନା ?
ବିରହର ସ୍ରଷ୍ଟା ତମେ, ବେଦନାର ସ୍ୱାମୀ ।

ପ୍ରିୟଜନେ ସଁପିବାକୁ ଯୋଗ୍ୟ ଉପହାର,
ଦେଇ ନା କି ଦୀନହସ୍ତେ ଅଶ୍ରୁ-ମୋତି -ହାର ?

# ଅନଭିଲକ୍ଷିତ

ଅଯାଚିତେ ଅଛ ଦେଇ ବହୁ; ଯାତ୍ରାପଥେ
ପ୍ରଥମରେ ଭାବୁଥିଲି ଭାର, ସେ ସମସ୍ତେ ।
ସେକାଳେ, କଳ୍ପନା-ମତ୍ତ, ସାରା ବିହାୟସ
ଉଡ଼ି ବୁଲିବାକୁ ଖାଲି ଉଦ୍‌ଗ୍ରୀବ ମାନସ ।

ପୃଥିବୀର ଏ ମାଟିଟା ଲାଗୁଥିଲା ହେୟ,
ଅଜ୍ଞାତ ବା ଅର୍ଦ୍ଧଜ୍ଞାତ ଦିଶୁଥିଲା ଶ୍ରେୟ ।
ଯାଉଥିଲି ଭୁଲି କିନ୍ତୁ ନିଜର କ୍ଷୁଦ୍ରତା,
ଚଟକ ଈଗଲ ସମ କିପରି ଉଡ଼ନ୍ତା ?

ତୁମେ କିନ୍ତୁ ଅନ୍ତର୍ଯ୍ୟାମୀ, ଜନନୀର ପରି
ଆଗୁଁ ମୋହପାଇଁ ସାଇତିଲ ଯତ୍ନ କରି,

ଦେଲ ଅଯାଚିତେ ଯାହା ଅନଭିଳଷିତ,
ସେହି ଆଜି ଦରିଦ୍ରର ପ୍ରିୟତମ ବିତ୍ତ ।

ସେଥିରେ ଦେଖୁଛି ତବ ଦୟା ଗୁପ୍ତ-ବେଣୀ,
ତବ ସିଂହାସନେ ଆଜି ସେ ପାବଚ୍ଛ-ଶ୍ରେଣୀ ।

## ନୂତନ ପୁରାତନ

ଏହି ସେ ନଗର * ଯହିଁ କୁମାର ବୟସେ
କାଟିଲି ମୁଁ ଦୀର୍ଘକାଳ ସମବୟ ସାଥେ ।
ଏଠି ସାକ୍ଷୀ ପ୍ରତି ରେଣୁ, ମମ ଅଶ୍ରୁ, ହସେ
ମମ ପଦ ଚିହ୍ନ ଅଁକା ଏଠି ପ୍ରତି ବାଟେ ।

ଦୀର୍ଘ ବ୍ୟବଧାନ ପରେ ହଠାତ୍ ଆସିବା;
କିନ୍ତୁ ଦେଖେଁ ପରିଚିତ ଦିଶେ ଆନ ଆନ;
କେ କହେ, ''ସେ କାଳ ଚିହ୍ନା, ତାଙ୍କୁ କି ଡାକିବା''?
''ନାହିଁ ନାହିଁ, ଲୋଡ଼ା ନାହିଁ''– ବୋଲିଉଠେ ପ୍ରାଣ ।

ଯାହା ଦିନେ ଥିଲା ପାଖ, ଆଜି ସେ ସୁଦୂର;
ଅତୀତର ପ୍ରିୟ-ଜନ, ପର ପରି ଆଜି
ଆମ ସ୍ନେହ, ଶ୍ରଦ୍ଧା ଘେନି ଏ ଖେଳା ନିଷ୍ଠୁର
କିପାଁ ଖେଳ, ନାରାୟଣ, ମହାଶିଶୁ ସାଜି ?

ଧରାଇ ଦଣ୍ଡକେ ଯାହା ନେଉଛ ଛଡ଼ାଇ,
କେବଳ କି ଭାଙ୍ଗିବାକୁ କ୍ଷଣିକ ବଢ଼ାଇ ?

## କବି-ଗୌରବ

ପୁଣି ଯଦି ଆସେ କେବେ ଏହି ଧରଣୀରେ
ହେ ପରମ, ଏ ମାଗୁଣି ତବ ପଦତଳେ
ବୀଣା ପୁଣି ନିଜ ହସ୍ତେ ଦେବ ମୋ ପାଣିରେ
ସ୍ଥାନ ଏକ ଦେବ ମତେ ବିଶ୍ୱ-କବି-ଦଳେ ।

* ନଗର - ଖୋର୍ଦ୍ଧା

ତମାନ୍ଧ ମାନବ ଯେବେ କ୍ଷୁଦ୍ର ସ୍ୱାର୍ଥ ପାଇଁ
ଚଳାଇବେ ପରସ୍ପର ଗଳେ ତରବାର,
କବି ମୁଁ ମୋ ବୀଣାତାରେ ତବ ନାମ ଗାଇ,
ବିରୋଧିବି କିଞ୍ଚିତରେ ପଶୁତ୍ୱ ପ୍ରସାର ।

ମାଗେ ନା ମୁଁ ନିଜ ମୁକ୍ତି; ସନ୍ତୋଷ, ବିଳାସ,
ହେ କବି, କରାଅ ମତେ କବି ଜନ୍ମେ ଜନ୍ମେ,
ଗୀତେ ଫୁଟାଇବି ସତ୍ୟ, ଶିବର ବିକାଶ,
ଜଗାଇବି ଦେବତାରେ ମାନବ-ମରମେ ।

କବି-ହୃଦେ ବାସ ତବ, କବି ଲେଖନୀରେ
ମହିମା ତୁମ୍ଭର ସ୍ଫୁଟ ମାଟି ଧରଣୀରେ ।

## କ୍ରୁଶ-ବହନ

ତୁମେ ଯେ ସଂସାର-ଦୁଃଖେ ନିତ୍ୟ ଦଗ୍‌ଧୀଭୂତ—
ହେ ନାଥ, ଶମିବା ଲାଗି ତୁମର ଦାହନ,
କିଛି ନ ପାରିଲି କରି ଅଳ୍ପ ବା ବହୁତ,
ଦେଖି ହେଲି ତୁନୀ, ଅବା କରିଲି କ୍ରନ୍ଦନ ।

ଘାରିହୋଇ ଆପଣାର ସ୍ୱାର୍ଥ ଅହଙ୍କାରେ,
ଶୁଣିନି ବୁଭୁକ୍ଷୁ, ବ୍ୟାଧିଗ୍ରସ୍ତର ବେଦନା,
ଭାବିଲି ସେ ସବୁ ମୋର କର୍ତ୍ତବ୍ୟ ବାହାରେ
ଶମିଲା କି କେହି କେବେ ମୋର ନିର୍ଯ୍ୟାତନା ?

ତୁମରେ ଚିହ୍ନିଲାଯାକେ, ବଦ୍ଧ ଚେତନାରେ
ନିଜ ଦୁଃଖ ଛୋଟ ଛୋଟ, ଦିଶୁଥିଲା ବଡ଼,
ଆଜି ତ ସଁପିଛି ସୁଖ, ଦୁଃଖ ତୁମଠାରେ
ଦିଅ କିଛି ସ୍କନ୍ଧେ ଦୁଃଖ-ବେଦନା ତୁମର ।

ଜନ୍ମେ ଜନ୍ମେ ତୁମ୍ଭ କ୍ରୁଶ ସାନନ୍ଦେ ବହିବି,
ଯଦି ଖାଲି ଆଗେ ତବ ପଦ ଦେଖୁଥିବି ।

—

# ପାନ୍ଥ-ଗାଥା

ସମର-ବିଧ୍ୱସ୍ତ ଧରା, ଦୁଃଖମୟ କାଳ,
ତୀବ୍ରୁଁ ତୀବ୍ରତର ଆଜି ଜୀବନ-ସଂଗ୍ରାମ,
ସ୍ଥାଣୁ କରେ ମାନବରେ ବଞ୍ଚିବା-ଜଞ୍ଜାଳ,
ବେଳ କା'ର କାହିଁ, କରେ ଈଶ୍ୱରେ ପ୍ରଣାମ ? ।୧।

ବିଜୟୀ ବିଜିତ-ବିତ୍ତ ବଣ୍ଟନେ ବ୍ୟାପୃତ,
ଉଡ଼ନ୍ତି ସକଳ ଦେଶେ ମୃତ୍ୟୁର ଈଗଲ,
କେ ପଚାରେ କେ ବୁଭୁକ୍ଷୁ ଜୀବିତ ବା ମୃତ ?
ସର୍ବ ମୁଖୁ ନିଃସରଇ ବିବାଦ-ଗରଳ ।୨।

ଏଇ ତ ହୋଇଛି ଶେଷ ମରଣ-ତାଣ୍ଡବ,
ଦେଶେ ଦେଶେ ନରମେଧ ବିଭୀଷିକାମୟ,
ଦେଖିଲୁଁ ଉଠିବା କାଳୀ ମନ୍ଥି ଜୀବାର୍ଣ୍ଣବ
ମୁଖେ ତାର ମୃତ୍ୟୁମନ୍ତ୍ର, କରେ ବିଶ୍ୱ-ଭୟ ।୩।

ଦେଖିଲେ ହେଁ ବିଶ୍ୱ-ତ୍ରାସ ସେ ରକ୍ତ-ନାଟକ,
ପୁଣି ମତ୍ତ ବ୍ୟକ୍ତି, ଜାତି, ପ୍ରାଚୀନ ବିବାଦେ—
ଅନ୍ୟ ମାଥେ ପାଦ ରଖି କେ ହେବ ଶାସକ !
ଅହଂକାରେ ପୁଣି ସର୍ବେ ପଶନ୍ତି ପ୍ରମାଦେ ।୪।

ହେ ଧରା ପଥର ପାନ୍ଥ, ଠିଆ ହୁଅ ଭାଇ,
ଶୁଣ ଦଣ୍ଡେ କବି ମୁଖୁଁ ତତ୍ତ୍ୱ ଦୁଇ ପଦ,
ଯାହା କର,— ଶ୍ମଶାନୁଁ କି ପାରିବ ପଳାଇ ?
ସବୁ ଆଡ଼ମ୍ବର ତହିଁ ଜାଣ ତ ସ୍ତବଧ ।୫।

ଆସିଛ ପ୍ରବାସୀ, ଯାତ୍ରୀ ଧରା-ପାନ୍ଥଶାଳେ,
କିପାଁ ଭାବ ତୁମର ଏ ଚିରବାସ ବୋଲି,
ତେଣୁ ତ ଧରଣୀ ଜର୍ଜରିତ ତକରାଳେ,
ବୃଥା-ଶ୍ରମ-ଧୂଳି ହୁଅ ଶରୀରରେ ବୋଳି ।୬।

କି ଲ   ୍ ପରରେ ଦିଅ କ୍ରୂର ନିର୍ଯ୍ୟାତନା ?
ଯା ପାଅ ଶେଷରେ, ତାହା ବସ୍ତୁ ଅବା ଛାଇ ?
ବୁଝି ମଧ ନାହିଁକର, ଆତ୍ମ -ପ୍ରତାରଣା,
ସବୁ କାମ କର ଭାଇ, ବିଚାର ପୂରାଇ ।୭।

ସୂଚୀବିଦ୍ଧ ହେଲେ ହୁଏ ଯାତନା ତୁମ୍ଭର,
ନିଜପାଇଁ ଭଲ ଖାଦ୍ୟ, ବାସେ ତବ ଆଶ,
ସମ ଆଶା, ଅନୁଭୂତି ଅନ୍ୟ ପ୍ରାଣୀଙ୍କର
ଭୁଲିବାରୁ, ଏ ଜଗତ ହୁଏ ଦୁଃଖବାସ ।୮।

କର ଭୋଗ ଧରା-ସୁଖ; ମୁଁ ଜାଣେ ଈଶ୍ୱର
ସୃଜିଲେ ସୁନ୍ଦର ବିଶ୍ୱ ଜୀବ-ଭୋଗପାଇଁ;
ନହେଲେ କିପାଁଇ ଥାନ୍ତା ଗନ୍ଧ କୁସୁମର,
ଯୁବତୀର ନୟନରେ ଆକାଶର ଛାଇ ! ।୯।

କେ କି ଭାବେ କିନ୍ତୁ, ଏଥି ସୁଖୀ ହେବା ପାଇଁ
କେତେ ଅଳ୍ପ ଦ୍ରବ୍ୟ ଲୋଡ଼ା ! ଦୀନ ତା କୁଟୀରେ
ଲଭଇ ସେ ସୁଖ ସ୍ୱେଦ-ଜାତ ଅନ୍ନ ଖାଇ,
ନାହିଁ ପାଏ ଧନପତି ଜଗତିରେ ଥାଇ ! ।୧୦।

ସ୍ୱଶ୍ରମ-ଲବ୍‌ଧ ଅନ୍ନ, ସଖୀ ସ୍ନେହବତୀ,
ସଂଗୀତ-ସାହିତ୍ୟ-ସେବା ନୀରୋଗ ଶରୀର,
ଅଋଣୀ, ଅପରାଧୀନ, ସତ୍ୟ-ଯୁକ୍ତ-ମତି-
ଏତହୁଁ କି ବଡ଼ ଭୋଗ ଅଛି ପୃଥିବୀରେ ? ।୧୧।

ଗାଡ଼ି ଗାଡ଼ି ଶାସ୍ତ୍ର ପଢ଼ି ଶିଖିଛି ମୁଁ ଶେଷେ,
ଦୁଇ ସାର କଥା— ଜ୍ଞାନ, ପର-ଉପକାର,
ଅଜ୍ଞତା ହିଁ ଦୁଃଖ ହୋଇ ଆସେ ନାନା ବେଶେ;
ସ୍ୱାର୍ଥ ହିଁ ପ୍ରଥମ ବୀଜ ସର୍ବ ଯନ୍ତ୍ରଣାର ।୧୨।

ପ୍ରକୃତିର ଗନ୍ତାଘର ଫିଟିବ କେବଳ
ବୁଦ୍ଧି-ରସାଣିତ ନର-ଜ୍ଞାନ-କୁଞ୍ଚିକାରେ,
ସେ ଜ୍ଞାନେ କର ହେ ଧରାବାସ ସୁଖକର,
ମୂର୍ଖତା କେବଳ ହାତ ମାରିବା କପାଳେ ।୧୩।

ଜ୍ଞାନ, କର୍ମ ଏକ କରି, କଲେ ସ୍ୱାର୍ଥତ୍ୟାଗ,
ନ ମିଳନ୍ତା କିବା ଭୋଗ୍ୟ ଭାଗ୍ୟେ ସକଳର ?
କିପାଁ ଯୁଗେ ଯୁଗେ ହୋନ୍ତା ନରମେଧ ଯାଗ,
ନରରକ୍ତେ, ନର ଶବେ କୀର୍ଣ୍ଣ ଧରାତଳ ? ।୧୪।

ସତ୍ୟ ବଡ଼, ଦେଶ, ଜାତି ଶାସ୍ତ୍ର, ନେତାଠାରୁ
ସେବା ସମ ନାହିଁ ଯଜ୍ଞ, ନାହିଁ ଉପାସନା,
ନାହିଁ ଅପକର୍ମ ଜୀବେ କଷଣ ଦେବାରୁ,
ଧର୍ମ, ଦେଶ ନାମେ ଦେବା ନରେ କଦର୍ଥନା ।୧୫।

ଏ ଧରା, ମନୁଷ୍ୟ ଜାତ ଏକ ପିତାଙ୍କର
କଳା, ଗୋରା, ପୀତ, ରକ୍ତ ସର୍ବେ ଭାଇ ଭାଇ,
ସ୍ରଷ୍ଟାଙ୍କର ନଦନଦୀ, ଭୂଧର ସାଗର,
ଦେଖୁଛ କି ଅଂଶୀକୃତ କାହିଁ କାହାପାଇଁ ? ।୧୬।

ସର୍ବେ ନାରୀଗର୍ଭୁଁ 'ଜାତ, ସମାପ୍ତ ଶ୍ମଶାନେ;
ପୂର୍ବ, ପର ଜଣା ନାହିଁ, ମଧ୍ୟେ ଯେତେ କଳି,
ଚିରନ୍ତନ ଭାବି ଧରା-ଜୀବନ ଅଜ୍ଞାନେ,
ସତ୍ୟ, ସୁଖ, ଶାଶ୍ୱତକୁ ଦିଅ କିପାଁ ବଳି ? ।୧୭।

ସବୁବେଳେ ନିମ୍ନ-ଦୃଷ୍ଟି, ହେ ନର, ଅନାଅ
ବେଳେ ଊର୍ଦ୍ଧ୍ୱେ ମହାକାଶେ, ତାରକା-ଖଚିତ,
ମହାନରେ ଦେଖି ତହିଁ, କ୍ଷୁଦ୍ରତା ଛଡ଼ାଅ,
ଉଦାରେ ମିଶାଅ ନିଜ ଆତ୍ମା ସଂକୁଚିତ ।୧୮।

ତହିଁ ଧାଏଁ କୋଟି କୋଟି ସୂର୍ଯ୍ୟ-ପରିବାର
ଚିନ୍ତାତୀତ ବେଗେ ଅନ୍ତହୀନ ବିହାୟସେ,
କି ଲକ୍ଷ୍ୟେ, କେ ନାହିଁ ଜାଣେ, ଆଦେଶେ କାହାର ?
ନ ଭରିବ କା' ଚିତ୍ତ ସେ ଦୃଶ୍ୟ ଦିବ୍ୟ ରସେ ? ।୧୯।

ଅଗଣ ସେ ବିଶ୍ୱମେଳେ ଆମ ଏ ଧରଣୀ;
ହିମାଳୟ ପଦ-ଲଗ୍ନ ସର୍ଷପ ସମାନ,
ସେ ସୋରିଷ ମେଳା ଆମ ଅହଂର ବିପଣୀ,
କୀଟ ଚାହେ କୀଟଠାରୁ ଭୟ ଓ ସମ୍ମାନ ।୨୦।

ଯୁଗେ ଯୁଗେ ଯେତେ ଜ୍ଞାନୀ ବୁଦ୍ଧି-ନିଃଶ୍ରେଣୀରେ
ଗଲେ ଊର୍ଦ୍ଧ୍ୱେ କଳିବାକୁ ସୃଷ୍ଟି ଆଦି, ଅନ୍ତ,
ହେଲା ଶେଷ ତାଙ୍କ ଚେଷ୍ଟା 'ନେତି' 'ନେତି' ଗିରେ,
ଏବେ ମଧ୍ୟ ରହସ୍ୟରେ ଆବୃତ ସମସ୍ତ ।୨୧।

କିନ୍ତୁ ସେ ରହସ୍ୟ ଖୋଲେ ମୁଖୁଁ ଆବରଣ,
ଯଦି କେହି ଆଘାତଇ ତାର ବାତାୟନେ
ନିଶୀଥ-ପ୍ରେମିକ ପରି; ନିଃଶେଷେ ବର୍ଜନ
କରି, ଯାହା ଭୋଗ୍ୟ ବୋଲି ଭାବିଥାନ୍ତି ଜନେ ।୨୨।

ଦୂରେ ନାହିଁ, ନାହିଁ ସେ ଯେ ଲୁଚି ଅନ୍ତରାଳେ,
ସେ ଯେ ଉର୍ଦ୍ଧ୍ୱେ, ନିମ୍ନେ, ଆଗେ ପଛେ ପ୍ରକାଶିତ;
ବସନ୍ତେ କିଏ ସେ ନବ ଜୀବନ ସଂଚାରେ ?
କୁସୁମକୁ ବର୍ଣ୍ଣେ ଗନ୍ଧେ କରେ ବିଭୂଷିତ ।୨୩।

ଜୀବର କଲ୍ୟାଣପାଇଁ ବୀଜରୂପେ ଫାଟି
ଉଠେ ସେ ଖେଳାଇ ଶ୍ୟାମ-କେଦାରେ ଲହରୀ,
ଶସ୍ୟ ହୋଇ ଶୁଖେ ଆପେ, ଚାଷୀ ନିଏ କାଟି,
ବଞ୍ଚୁ ଆମେ ସେ ଈଶ୍ୱରେ ଉଦରରେ ଭରି ।୨୪।

ଏସନେ ସେ ଅହରହ ନିତ୍ୟ ବଞ୍ଚେ ମରେ,
ଲାଗିଅଛି ପରମ୍ପରା ସୃଜନ ଓ କ୍ଷୟ,
ସେହି ସୁଖ, ସେହି ପୁଣି ଅଶ୍ରୁହୋଇ ଝରେ,
ଅର୍ଥହୀନ ହେବ କି ଏ ମହା-ଅଭିନୟ ? ।୨୫।

ବେଦନା ବୋଲି ଯା ଦିଶେ ନେତ୍ରେ ବର୍ତ୍ତମାନ,
ସୁଖର ଅବନ୍ଧ୍ୟ ବୀଜ, ନିଶ୍ଚେ ତା ଫଳିବ
ଅନ୍ୟ କାଳେ, ଅନ୍ୟ ସ୍ଥାନେ । ଏବେ ଦମ୍ଭ, ମାନ
କେ ନ ଜାଣେ ଯଥାକାଳେ ଧୂଳିରେ ମିଶିବ ? ।୨୬।

ଅଲଂଘ୍ୟ ନିୟମ ଜାଲେ ବନ୍ଧା ସେ ଈଶ୍ୱର,
ଆପଣା ନିର୍ଘଣ୍ଟକ୍ରମେ ଆସେ ତାଙ୍କ ରଥ,
ସୁଖ, ଦୁଃଖ, ଭଙ୍ଗା, ଗଢ଼ା ଚକ୍ର ସେ ରଥର,
ବିଶ୍ୱ-ରେଣୁ ମହାକାଳ ତାଙ୍କ ରାଜପଥ ।୨୭।

ହେ ଧରାପ୍ରବାସୀ ନର, ଏ ଛୋଟ ଧରଣୀ
ଭାବି ଆଦ୍ୟ, ମଧ୍ୟ, ଶେଷ ଧରିଛ ଆଙ୍କୁଡ଼ି
ନିଜ ଜ୍ଞାନେ ମାପ କିପାଁ ସ୍ରଷ୍ଟାର କରଣି ?
ଅଗଣ ଧରଣୀ, ସ୍ରଷ୍ଟା ରଖିଛନ୍ତି ଗଢ଼ି ! ୨୮।

ନ ଦେଖିଛ ଯେ ସୁଷମା, ଶୁଣିନା ଶ୍ରବଣେ
ଯେ ସଂଗୀତ, ନ ପଢ଼ିଛ ଯେ କାବ୍ୟ ମଧୁର,
ଲୋକେ ଲୋକେ ଅଛି ତାହା ସ୍ଥୂଳୁଁ ସୂକ୍ଷ୍ମ କ୍ରମେ,
ଅଜ୍ଞତା ଭାବିବା ସବୁ ଏ ମାଟିରେ ଠୁଳ ।୨୯।

ଦେଖୁଁ ଦେଖୁଁ ଯହିଁ ପ୍ରିୟା କନକ କପୋଳ
ପଡ଼ଇ ଝାଉଁଳି, ଓଠୁ ଲାଳିତ୍ୟ ଉଭାଏ,
ଆଖି ଆଗେ ଯଉବନ ହରେ କାଳ-ଚୋର,
କବି ଯହିଁ ମାନବର ବେଦନାହିଁ ଗାଏ ।୩୦।

କି ହେତୁରେ ସେ ମୃତ୍ତିକା ଏଡ଼େ ଲୋଭନୀୟ ?
ଅକାରଣେ ନକର ହେ ଆତ୍ମ-ପ୍ରତାରଣା !
ଧରାର ଦେବାର ଯାହା ଆନନ୍ଦେ ତା ନିଅ,
ମୂଢ଼ତା, କ୍ଷଣକ ଲାଗି ହେବା ଜ୍ଞାନ-ବଣା ।୩୧।

ପଥଭ୍ରାନ୍ତ ହୁଏ ପାନ୍ଥ, ପୃଥିବୀର ଦାନେ
ମତ୍ତ ହୋଇ ଭୁଲେ ଯେବେ ସର୍ବ-ଦାନ-ମୂଳ
ସ୍ରଷ୍ଟାରେ । ନଉକା ଯଦି ଆତ୍ମ-ଅଭିମାନେ
କର୍ଣ୍ଣର ବନ୍ଧନ ଭାବେ, ହେବ କେଉଁ କୂଳ ? ।୩୨।

ଈଶ୍ୱରେ ଆମ୍ଭର ବାସ, ଖାଉଁଛୁ ଈଶ୍ୱରେ,
ଭୋଗୁଛୁଁ ଏ ଧରା ତାଙ୍କ ପ୍ରଦତ୍ତ ଇନ୍ଦ୍ରିୟେ,
ତାଳୁରୁ ତଳିପା ଯାଏ ସେହୁ ସର୍ବ ସ୍ଥଳେ,
ସେହି ଧନ, ସେହି ପ୍ରିୟା, ସେ ବିଷେ, ଅମୀୟେ ।୩୩।

କିନ୍ତୁ ସେହି ମୂର୍ଖ, ଯେହୁ ଭାବେ ସେ ଈଶ୍ୱର
ବତାଇବେ ପ୍ରତି କାମ ଗୃହ-ଗୁରୁ ପରି,
ସଂପଦ ଥୋଇବେ ଆଣି ଦୀନଜନ-କରେ,
ମଦ୍ୟପେ ତୋଷିବେ ସ୍ୱୟଂ ମଦ୍ୟ-ପାତ୍ର ଧରି ।୩୪।

ଚେଷ୍ଟା ଓ ବିକାଶ ଦୁଇ ସୃଷ୍ଟିର ନିୟମ,
ଶିଶୁ ହୁଏ ମହାବୀର, ଅଜ୍ଞାନ ପଣ୍ଡିତ,
ଦରିଦ୍ର ହୁଅଇ ପୁଣି ଧନିକ ପରମ,
ତାମସ-ଜୀବନ ହୁଏ ସତ୍ତ୍ୱ-ବିଭୂଷିତ ।୩୫।

ଗଉରବ ଆତ୍ମ-ଯତ୍ନେ ପତନ୍ତୁଁ ଉଠିବା,
ପଉରୁଷ ନୁହେଁ ହେବା ଗଢ଼ା-ମୂର୍ତ୍ତିପରି,
ସୁଖ, ନିଜ ସ୍ୱେଦେ ନିଜ ଅନ୍ନ ଅରଜିବା,
ଯିବା ନିଜ ଦୁଃଖ ନିଜ ବାହୁରେ ସନ୍ତରି ।୩୬।

ତେଣୁ ଏତେ ଭୁଲ୍-ମୟ ମାନବ-ଜୀବନ,
ଏତେ ବଙ୍କାଟଙ୍କା ନର-ବିକାଶର ପଥ,
ଯୁଗେ ଯୁଗେ, ସବା ଆଗେ ତାଙ୍କରି ଆସନ
ଆତ୍ମ-ଚେଷ୍ଟା-ଅଶ୍ୱ ବଳେ ଚାଲେ ଯାଙ୍କ ରଥ ।୩୭।

ଏକେଶ୍ୱର ଉପାସକ ମାମୁଦ-ଗଜନୀ
ଦେଖ ଭାଙ୍ଗେ ସୋମନାଥ ମନ୍ଦିର ପ୍ରାଚୀର,
ପୁରୋହିତେ ବିଳପନ୍ତି ଯେସନେ ରମଣୀ,
ମୁଣ୍ଡ କୋଡ଼ି, 'ତ୍ରାହି' କହି, ଚରଣେ ମୂର୍ତ୍ତିର ।୩୮।

ବିଧାତା କି ଏଡ଼େ ମୂର୍ଖ, ବିଜୟ-ତିଳକ
ନ ଦିଅନ୍ତେ କର୍ମ-ଦୃପ୍ତ ମୁସଲମାନରେ ?
କି ନିୟମେ ସେ ବିରାଟ-ବିଶ୍ୱର ଚାଳକ
ବିଜୟୀ କରାନ୍ତେ ଠକ ପୁରୋହିତ ଦଳେ ? ।୩୯।

ଯେ ଅଛ ଅଳସ, ଅଜ୍ଞ, ଦୁର୍ବଳ ପଥିକ,
ଉଠ ଭାଇ, ଈଶ୍ୱରକୁ ଜଗାଅ ଅନ୍ତରେ,
ମାନବର ଦେହ-ମନୁଁ କି ଅଛି ଅଧିକ ?
ତାହାରି ବିକାଶ-ବୃଦ୍ଧି କର ସ୍ତରେ ସ୍ତରେ ।୪୦।

ଜାଗ୍ରତ-ଈଶ୍ୱର ହେବେ ତୃତୀୟ-ନୟନ,
ସେ ନୟନେ ସତ୍ୟ-ମିଥ୍ୟା ପ୍ରଭେଦ ଦିଶିବ,
କର୍ମ କର, ଛାଡ଼ି ଶୁଷ୍କ ନାମ-ପାରାୟଣ,
ସର୍ବବିଧ କଲ୍ୟାଣରେ ଧରଣୀ ହସିବ ।୪୧।

କର ଭୋଗ, ଭଲ, ମନ୍ଦ ଉଭୟ ବିଚାରି,
ସଂଯମେ ଲଭଇ ଆତ୍ମା ବିମଳ ବିକାଶ,
ସ୍ଥୂଳରୁ ଦୂରେଇ ରୁଚି, ସୂକ୍ଷ୍ମରେ ପ୍ରସାରି,
ଜ୍ଞାନ-ଦୀପ ଜାଳି ଚିତ୍ତେ, ତମ କରି ନାଶ ।୪୨।

ନିଜ ମନେ ଗଢ଼ ପାଛ ! ସ୍ଥୂଳୁଁ, କ୍ଷଣିକରୁ
ଓଟାରି ନିଯୋଗ ତାକୁ ସୂକ୍ଷ୍ମ ଆନନ୍ଦରେ,
ଦେଖିବ ବିଲୋପ ହେବ ବିବାଦ ବିଶ୍ୱରୁ,
ସର୍ବ ଧର୍ମ, ଜାତି, ବ୍ୟକ୍ତି, ଏକ ସୂକ୍ଷ୍ମ-ସ୍ତରେ ।୪୩।

ସେହି ମନ ଦୃଢ଼କରି ଦୀନତ୍ୱ ଘୁଞ୍ଚାଅ,
ରୋଗ, ରାଜା, ଶାସ୍ତ୍ର, ଭାଗ୍ୟ, ପୁରୋହିତଙ୍କର
ଦାସତ୍ୱର ସୁପ୍ରାଚୀନ ଖୋଳପା ଫିଟାଅ,
ଜାଣ ନିଜେ ସତ୍ୟେ ତୁମେ ପୁତ୍ର ଈଶ୍ୱରର ।୪୪।

କେ ହିନ୍ଦୁ, ଖ୍ରୀଷ୍ଟାନ, ବୌଦ୍ଧ, କିଏ ମୁସଲମାନ,
କେ ନିରାମିଷାଶୀ କିଏ ଉପବୀତଧାରୀ,
ବିଶ୍ୱେଶ୍ୱର ଆଖେ ଏ ଯେ ପିଲା-ଖେଳମାନ,
ବୃଥା ଦ୍ୱନ୍ଦ୍ୱ କେ କାଫେର୍, ବ୍ରାହ୍ମ ବା ସାକାରୀ ।୪୫।

ଜୀବନ ସୁନ୍ଦର କର ଖଟାଇ ବିଚାର,
ଲଗାଇ ବୁଦ୍ଧି ଓ ବାହୁ ଭୋଗ ଧରଣୀରେ,
ନ ଢ଼ାଳିଲେ ଅନ୍ୟ ତମ ଯୋଗୁଁ ନେତ୍ର ଧାର,
ସବୁ ଠିକ୍, ମର ପାଛ, ସୁଖେ ଏ ମାଟିରେ ।୪୬।

ଆସ ଭାଇ, ଶ୍ୱେତ, କୃଷ୍ଣ, ଲୋହିତ, ପିଙ୍ଗଳ,
ହିନ୍ଦୁ, ବୌଦ୍ଧ, ଜୈନ, ପାର୍ସି, ଖ୍ରୀଷ୍ଟ, ମୁସଲ୍‌ମାନ,
ବିଶୁଦ୍ଧ, ସଙ୍କର-ଧରା-ପଥ-ଯାତ୍ରୀଦଳ,
ଭୁଲି ଛୋଟ ସ୍ୱାର୍ଥ, କର ଦ୍ୱନ୍ଦ୍ୱ ଅବସାନ ।୪୭।

ଖୋଲ ଭାଇ ମନୁଁ, ମୁଖୁଁ ମୁଖା ଭିନ୍ନତାର,
ପରସ୍ପରେ ଚାହିଁ ଦେଖ, ସର୍ବେ ଭାଇ ଭାଇ;
ସର୍ବେ ଆମେ ପୁତ୍ର କନ୍ୟା ଏକ ବିଧାତାର,
ଏନ୍ତୁଡ଼ି, ଶ୍ମଶାନେ ସର୍ବେ ସମାନ କି ନାହିଁ ? ।୪୮।

ସମସ୍ତେ ଈଶ୍ୱର-ପୁତ୍ର, ସମସ୍ତେ ସମାନ,
ସମସ୍ତଙ୍କ ଧରାଭୋଗେ ସମ ଅଧିକାର,
ପରମପିତାଙ୍କୁ ସେ ଯେ ତୀବ୍ର ଅପମାନ,
ଅନ୍ୟ ଯଦି ପୀଡ଼େ ତବ ଅନ୍ଧ ଅହଂକାର ।୪୯।

ପ୍ରତ୍ୟେକେ ସ୍ୱାଧୀନ, ସଭ୍ୟ—କିନ୍ତୁ ପରସ୍ପରେ
ମଧୁ-ସ୍ପର୍ଶ ରହୁ ମୈତ୍ରୀ, ସମବେଦନାର,
ସ୍ୱର୍ଗ ହେବ ପ୍ରତିଷ୍ଠିତ, ତେବେ ଧରା ପରେ,
ତା ନହେଲେ ବୃଥା ଯେତେ ରାଷ୍ଟ୍ରୀୟ ବିଚାର ।୫୦।

## ସ୍ୱର୍ଗଚ୍ୟୁତି

ଏଇ ତ ସେଦିନ ମତେ, ଗଛ, ଲତା, ଫୁଲ, ବାୟୁ
କଥା କହୁଥିଲେ ପରା !—ନିତି ନିତି ରାତି ପାହୁ,
ମନିଷର ପିଞ୍ଜରାରୁ ଖୋଲା କୋଳେ ପ୍ରକୃତିର,
ଧାଉଁଥିଲି ଦେଖିବାକୁ ମାୟାରୂପ ଧରିତ୍ରୀର ।

ଘାସମାନେ ଶିଶିରର ତରଳ ମୌକ୍ତିକ ଶୋଭା
ଦେଖି ସେବେ ଶିଶୁ ମନ ହେଉଥିଲା ଯାହା ଲୋଭା;
ଆଜି ଦେଖି ଦେଖି ଆଖେ ନାନା ଯାଦୁ ସଭ୍ୟତାର
ସେ ଆନନ୍ଦ, ଉଚ୍ଚାଟନ, ତୃପ୍ତି କାହିଁ ଏ ଆତ୍ମାର ?

କି ଦେଲ ଜୀବନ-ନାଥ, ବୟସ ବଢ଼ିତି ସାଥେ,
ସ୍ୱର୍ଗ ମୋର ନେଲ କାଢ଼ି, ଜ୍ଞାନ-ଫଳ ଦେଇ ହାତେ ।
କି ବିଶ୍ୱାସେ ଥିଲା ଚିତ୍ତେ—ଜନ୍ତୁ, ଜନେ,କାହାଣୀର
ଜୀଇ ଉଠି ଶିଶୁମନ, ନାହିଁ ରଖୁଥିଲେ ସ୍ଥିର;

ସାଧବ ପୁଅକୁ ମେଷ, କଲା ମନ୍ତ୍ରେ ମାଳିଆଣୀ;
କାନ୍ଦନ୍ତି ଅଶୋକ ବନେ ଆହା ସୀତା ଠାକୁରାଣୀ;
ସେ ଲାଗି ଯେ ସମଦୁଃଖ, ଜୀବନେ ତା ଆଉ କାହିଁ ?
ସେ ମଧୁର କଳ୍ପଲୋକ ହରାଇଲି କାହିଁପାଇଁ ?

ଦେବ-ଦେବୀ ଥିଲେ ପାଖେ, ସ୍ୱର୍ଗ ଥିଲା ମଥାପରେ,
ରସନାରେ ସତ୍ୟ ଥିଲା, କୌତୂହଳ ନୟନରେ,
କମ୍ର ଥିଲା ଅବୟବ, ଥିଲା ପ୍ରାଣ ସୁକୋମଳ,
ଜଗତ ବି ଦିଶୁଥିଲା ଆନନ୍ଦ-ମଧୁରସ୍ଥଳ ।

ସବୁ ଆଜି ବିପରୀତ, କ୍ଲିନ୍ନ, ରୁକ୍ଷ, ନିରାନନ୍ଦ,
ଜୀବନ-କବିତା କେବୁଁ ହରାଇଛି ତାର ଛନ୍ଦ ।

* ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଲିଖିତ ।

ଡାକେ ତତେ ଦଗ୍ଧ-ଚିତ୍ତ କବି, ହେ ଜୀବନ-ନାଥ,
ନିଅ କାଢ଼ି ଜୀବନୁଁ ଏ ଅଯାଚିତ ବିପତ୍‌ପାତ ।

ନିଅ ଚିତ୍ତୁଁ ତର୍କ, ଦ୍ୱନ୍ଦ୍ୱ, ନିଅ ଜ୍ଞାନ, ଗବେଷଣା,
ଭ୍ରାନ୍ତ ପରି ଏଣେତେଣେ ଘୂରି ସୁଖ-ଅନ୍ୱେଷଣା ।
ଦିଅ ପୁଣି ସେଦିନର ନିବିଡ଼ ବିଶ୍ୱାସ ପ୍ରାଣେ,
ଦେବତା ଖେଳିବେ ସାଥେ, ଭୋଗିବି ତୁମରେ ପ୍ରାଣେ ।
ମାୟାଞ୍ଜନ ଦିଅ ନେତ୍ରେ, ଶିରୀ ପୁଣି ଦିଶୁ ଧରା,
ତଥ୍ୟ ମୋର ଲୋଡ଼ା ନାହିଁ, ଯଦି ତାହା ତମ-ଛଡ଼ା ।

# ଭିଖାରୀ

ଭିଖାରୀ ଗାଉଛି ଗୀତ, ଗାଆ ରେ ଭିଖାରୀ,
ଶୁଣୁଛି ମୁଁ ବାତାୟନ ପାଶେ କାନ ପାରି ।
ଧୂଳିବିମଳିନ-ଦେହ, ଜୀର୍ଣ୍ଣ ଦେହ-ବାସ,
ଶୀର୍ଣ୍ଣ ମୁଖେ ଦାରିଦ୍ର୍ୟର ବିଶଦ ବିଳାସ,
ଦାଣ୍ଡେ ଉଭା ଧୂଳି'ପରେ, ଭୟେ ସଂକୋଚରେ
କେ କିଛି କହିବ ଭାବି ।
ତଥାପି କଣ୍ଠରେ
ମଧୁର ସଂଗୀତ ଫୁଟେ । ଗାଆ ରେ ଭିକାରୀ
ଶୁଣୁଛି ମୁଁ ବାତାୟନ ପାଶେ କାନ ପାରି ।

ଗୀତ ଶୁଣି କିନ୍ତୁ ତିକ୍ତ ହେଲେଣି ଗୃହିଣୀ;
ତିକ୍ତତର ଗୃହ-ଭୃତ୍ୟ । ଖାଇଯିବେ ଭିଣି
ପରା ଏ ଭିଖାରୀ ପଲ ! ଏକଇ ସକାଳେ,
ଏ ହେଲା ସପ୍ତମ କାଳ * ଫେରାଇ ବା କା'ରେ
ଦେବୁଁ ଗୃହସ୍ଥର ଦ୍ୱାରୁ ?
ତଥାପି ଘରଣୀ
ଦେଲେ ଶେଷେ ଭିକ୍ଷା ଢାଳି ମନେ କିବା ମଣି;
ଶୁଣିଲେଣି ଗୀତ ପୁଣି; ମିଠା ଲାଗେ କାନେ,
ଭିଖାରୀ ଦେଉଛି କିଛି ଭିଖ-ପ୍ରତିଦାନେ ।

---

*କାଳ—ଜଞ୍ଜାଳ

କ୍ଷୁଧା ପାଇ କଣ୍ଠୁ ସୁଧା ଢାଳଇ ଭିଖାରୀ,
ଦାରୁଣ ଦାରିଦ୍ର୍ୟେ ମଧ୍ୟ ନର ସୃଷ୍ଟି-କାରୀ ।
ଭିଖାରୀ ଜାଣେନା ନିଜେ କିଅବା ସେ ଗାଏ,
ତଥାପି ଲାଗଇ ଯେହ୍ନେ ମାଟି ଭାଷା ପାଏ
ନିଖିଳ ଏ ଧରଣୀର; ସଂଗୀତ ତାହାର
କର୍ଣ୍ଣେ ପଶି ହୃଦେ କରେ ଉଦାସ ସଂଚାର ।
ଏ ମର୍ତ୍ତ୍ୟେ ମାନବ ଜାତି ଶାଶ୍ୱତ ଭିଖାରୀ
ମାଗଇ ପ୍ରସାଦ କରଯୁଗଳ ପ୍ରସାରି
ଅଜ୍ଞାତ ଈଶ୍ୱର ପଦେ, ଅନ୍ତରୀକ୍ଷେ ଚାହିଁ,
ତା ବିନା ଏ ଗହନରେ ଭରସା ବା କାହିଁ ?

ସେ-ଭିଖାରୀ ଧରଣୀର ହୃଦୟର ଭାଷା
ଏ-ଭିଖାରୀ କଣ୍ଠେ ଫୁଟେ । ଦେହର ପିପାସା
ପ୍ରାଣ-ପିପାସାର ସଖୀ । ଏ ଭିଖାରି-ବାଣୀ
ପିପାସୀ ଧରଣୀ କଥା ତେଣୁ ଯେହ୍ନେ ଆଣି
ଫୁଟାଇ ସ୍ୱ-ଯାଚନାରେ । ଗାଆରେ ଭିଖାରୀ,
ତୋ ଗୀତେ ଧରଣୀ-ବ୍ୟଥା ଶୁଣେଁ କାନ ପାରି ।

## ମୋ ଧନରେ

ଗାଭୀ ଯେହ୍ନେ ହମ୍ୱାଳଇ ଦୂର ବତ୍ସା ପାଇଁ,
ବିରହୀ କପୋତ କାନ୍ଦେ କାନନ ବଥାଇ,
ହେଲାପରି ବନସ୍ପତି ରବିକରାଶାୟୀ,
ଖୋଜୁଛି ମୁଁ ତତେ କାନ୍ଦି ତୁହାଇ ତୁହାଇ,
ମୋ ଧନ ରେ !

ସହସା ହୋଇଲେ ଅନ୍ଧୀଭୂତ ଚକ୍ଷୁଷ୍ମାନ,
ଏକରାତ୍ରେ ସର୍ବସ୍ୱାନ୍ତ ହେଲେ ଧନବାନ,
ଯେ ବିକଳ ଅନୁଭୂତି ହୁଏ ସମ୍ଭାବିତ,
ତୋ ବିହୁନେ ସେହିପରି ବିକଳ ମୋ ଚିତ୍ତ,
ମୋ ଧନରେ !

ଦୋଳୁଥାଉ ବକ୍ଷସ୍ଥଳେ ସ୍ୱର୍ଣ୍ଣପଦ୍ମ ସରି,
ଦରୋଟି ବଚନେ କର୍ଣ୍ଣେ ଦେଉ ସୁଧା ଭରି,
ତୋ ହସ, ତୋ କଉତୁକ, ନୃତ୍ୟ, ଡାକହାକ
ଚିତ୍ରପରି ସ୍ମୃତିପଟେ ଜୀବନ୍ତ ବିବାକ,
ମୋ ଧନରେ !

ଦୋଳୁଥାଉ ଯେ ବକ୍ଷରେ ସ୍ୱର୍ଣ୍ଣପୁଷ୍ପ ପରି
ସେହି ବକ୍ଷେ ତୋ ଶୀତଳ ଅଙ୍ଗ-ଯଷ୍ଟି ଧରି,
ବିଳପି ବିଳପି ଶବ-ଶେଯେ ଯା ଥୋଇଲି,
ତୋ ସଙ୍ଗତେ ନିଷ୍ଠୁର ମୁଁ କିପାଇଁ ନ ଗଲି,
ମୋ ଧନରେ !

ଅଣ୍ଡାଳି ହେଉଛି ଏବେ ଘୋର-ଅନ୍ଧକାରେ,
ଅକିଞ୍ଚନ ନିଧି ହଜିଗଲା କେଉଁଠାରେ,
ଯେତେ ଗତ ହୁଏ କାଳ, ତୋ ସ୍ମୃତି ପ୍ରବଳ
ସ୍ଫୁଟତର ହୋଇ କ୍ରମେ କରୁଛି ବିକଳ,
ମୋ ଧନରେ !

ବୋଲୁଥାଏ ସଦା ତୋର ପଦ୍ମ-ମୁଖେ ଚାହିଁ,
''ଭ୍ରମରେ ଏ ଘରେ ବୋଧେ ଆସିଛୁ ପଳାଇ !
ଦରିଦ୍ର, ଅଧମ ଘରେ ତମେ କି ସମ୍ଭବ !''
ଆସି କିପାଁ ଚୂନା କଲୁ ମୋ ସ୍ନେହ-ଗରବ,
ମୋ ଧନରେ !

ପାଇ ତତେ ପିତା ବୋଲି ହେଲା ଅନୁଭବ,
ହୃଦୟେ ବାତ୍ସଲ୍ୟରସ ହୋଇଲା ଉଦ୍ଭବ;
ତୋ ବିନା ସେ ପ୍ରାଣ-ସ୍ତନ୍ୟ ଦେବିରେ କାହାକୁ,
ସ୍ଥାଣୁ ହୋଇ ଚାହୁଁଛି ମୁଁ ଏ ଶୂନ୍ୟ ଧରାକୁ,
ମୋ ଧନରେ !

କାହିଁ ଅଛୁ ଅନ୍ତରୀକ୍ଷେ, ଜଳେ ବା ପବନେ,
ବାଧୁଥିବ ପରା ଶୀତ, ଖରା, ଭାଳେଁ ମନେ,
ବାଧୁଥିବ ପରା କ୍ଷୁଧା, ଖୋଜୁଥିବୁ ସାଥି,
କାହା କୋଳେ କାଟିବୁ ତୁ ଘୋର ବର୍ଷାରାତି,
ମୋ ଧନରେ !

କାହିଁକି ଆସିଲୁ, ସଂଚାରିଲୁ ନାନା ଆଶା,
ଗଲୁ ବା କାହିଁକି ନ ସରୁଣୁ କଥା-ଭାଷା,
ଜନ୍ମାନ୍ତର ବଇର କି ସାଧିଲୁ ରେ ଧନ,
ଭାବୁନି ସମ୍ଭବ ତୋଠି ସେତେ ପ୍ରବଞ୍ଚନ,
ମୋ ଧନରେ !
ତୋ ସ୍ମରଣେ ପୂତ ହୁଏ ଏ ପାପ-ଜୀବନ,
ଚିଦାନନ୍ଦ-ସ୍ୱାଦ ଦିଏ ତୋ ମୁଖ-ସ୍ମରଣ,
କିଜାଣି ମା ଆସିଥିଲୁ ମୋହାନ୍ଧ ପିତାର
ଚକ୍ଷୁ ଖୋଲି ଦେଖାଇବୁ ବାସ୍ତବ ସଂସାର ।
ମୋ ଧନରେ !
ଧରାରେ ବଞ୍ଚିବା ଲାଗି କର୍ମ ଦୈନନ୍ଦିନ
କରୁଛି ସିନା ମୁଁ ଅନ୍ତସ୍ଥଳେ ରାତ୍ରିଦିନ,
ତୋଲାଗି ମା ଜଳୁଅଛି ଯଜ୍ଞ ଲୋତକର,
ନୀରବେ ଡାକୁଛି ତତେ ବିକଳ ଅନ୍ତର ।
ମୋ ଧନରେ !

## ଯାଇଛି ସେ

ଖେଳିବାକୁ ଯାଇଛି ସେ ? ଫେରିନି ଏ ଯାଏଁ ?
ଆଉ କି ଆସିବ ନାହିଁ ? କିପରି କଥା ଏ !
ନୟନର ତାରା ସେ ଯେ ଆନନ୍ଦ ପ୍ରତିମା,
ଉଝଟେ ବି ଢ଼ାଳୁଥାଇ ପ୍ରାଣେ ମଧୁରିମା ।
ସେ ଯେ ନାହିଁ—ଅନ୍ଧ ଆଜି ଆମେ ଦୁଇ ପ୍ରାଣୀ;
ମରଣ ହେ, ଶୁଣାଇଁ କି ପାରିବ ତା' ବାଣୀ ?

## ଶିଶୁର ଦାନ

ଯେ ମହା ସୃଜନ-ସ୍ରୋତେ, ଘଟେ ପ୍ରତିକ୍ଷଣେ
ଜନ୍ମମୃତ୍ୟୁ, ଶତ ଶତ ସୌର ମଣ୍ଡଳର
କିବା ତାହିଁ ଇତିହାସ କ୍ଷୁଦ୍ର ସେ ଶିଶୁର,
ଧରାରେ ଯେ ଥିଲା, ମୋଟେ ଦୁଇ ସମ୍ବତ୍ସର ?

ତଥାପି ସେହି ସେ କ୍ଷୁଦ୍ର ଜୀବନ-ବିନ୍ଦୁରେ
ଦେଖିଲି ମୁଁ ସ୍ଫୁଟତର ବିଜ୍ଞାନ-ବଚନୁଁ,
ସୃଷ୍ଟି-ସ୍ଥିତି-ପ୍ରଳୟର ବିରାଟ ନାଟକ;
ଶିଖିଲି ଯା ଶିକ୍ଷଣୀୟ ଜୀବନୁଁ, ମରଣୁଁ ।

ବିଳପିଲି ସିନା ବସି ମୋହ-ମୂଢ଼ତାରେ,
ବୁଝୁଛି ମୁଁ ଏବେ, ମୋର କ୍ଷୁଦ୍ର ହରା-ଧନ
କରିଅଛି ଈଶ୍ୱର ଓ ମତେ ମୁଖାମୁଖୀ,
ନାହିଁ ପାରିଥିଲା ଯାହା ବହୁ ଅଧ୍ୟୟନ ।

## ରୂପାନ୍ତର

ମିଷ୍ଟାନ୍ନ ତିଆରୁଁ ଯତ୍ନେ ଖୋଜନ୍ତି ଜନନୀ
ସେ ମିଷ୍ଟ ଜଂଜାଳ କି ମୋ ଆଉ ଆସିବନି !
ପଛେ ପଛେ ଲାଗିଥାଏ, କରୁଥାଏ ବ୍ୟସ୍ତ
ହାତ ମାରି ଲଣ୍ଡଭଣ୍ଡ କରାଇ ସମସ୍ତ !

ଗାଳି ମାଡ଼େ ତାର ଅବା ଅସମ୍ମାନ କଲି !'
—ବ୍ୟାକୁଳେ ଜନନୀ ନେତ୍ରୁ ଅଶ୍ରୁ ପଡ଼େ ଝରି ।

ଘରେ ଫେରୁଁ ପରବାସୁଁ ପିତା ଦେଖୁ ନାହିଁ,
ଲାବଣ୍ୟ ପ୍ରତିମାଟିଏ 'ବାପା' ବୋଲି ଧାଇଁ,
ଦ୍ୱାରେ ହସି ହେବା ଠିଆ ସ୍ନେହ ପ୍ରତୀକ୍ଷାରେ,
କିଏ ତାକୁ ହରିନେଲା ଚକ୍ଷୁ ଅନ୍ତରାଳେ ।

ସେ କିନ୍ତୁ ମରି ଯେ ନାହିଁ—ମିଥ୍ୟା ସେ ବଚନ,
ବିଶ୍ୱେ ନାହିଁ ରୂପ ଆଉ ସ୍ନେହର ମରଣ ।
ବାହାରେ ସେ ଥିଲା ଯାହା, ପଶିଲା ଅନ୍ତରେ,
ଭୋଗିବାକୁ ଯେତେ ସ୍ନେହ ଅଛି ଅନ୍ତସ୍ଥଳେ ।

ଆଖି ବୁଜି ଏବେ ତେଣୁ ଜନନୀ ଜନକ
ଦେଖୁଛନ୍ତି ଅହର୍ନିଶ ତା ମଧୁ ନାଟକ ।
ମରି ନାହିଁ, ମରି ନାହିଁ, ଲଭି ରୂପାନ୍ତର
ସେ ଶିଶୁ ପିଉଛି ସ୍ନେହ ଦୁହିଁଣ ଅନ୍ତର ।

# ସହଜ ପଥ

ମନ୍ଦିର ତବ ଦୂର, ଦୁର୍ଗମ ନୁହେ ତ ନୁହେ,
ସରଳ ସରଣୀ ରଖିଛ ଯାତ୍ରା ଲାଗି,
କିବା ଦରକାର ଯୋଗେ ଯାଗେ ଯାହା ଶାସ୍ତ୍ର କହେ,
ହେବାକୁ ତୁମର-ଦରଶନ ଅନୁରାଗୀ ?
ପ୍ରାନ୍ତରେ ଯେଉଁ ଫୁଲ ଫୁଟି ହସେ
ଯଜ୍ଞ ଜଳଇ ତାର ରୂପେ ହସେ,
ହସେ ତାର ନାଥ ରହିଛି ସାଧନା,
ତାହାର ମୁକ୍ତି ଲାଗି,
ସରଳ ସରଣୀ ରଖିଛ ଯାତ୍ରା ଲାଗି ।
ଯେତେକ ଜୀବନ ସେତେକ ସରଣୀ ରଖିଛ ନାଥ,
ବଁଚିବା କରିଛ ଅଶୂଳ ହବି-ଧାର,
ଜୀବନର ଶତ ସୁଖଦୁଖ ଦେଇ ପଡ଼ିଛି ବାଟ,
ହାସ୍ୟେ ଲୋତକେ ଅଛି ପୂଜା ଉପଚାର,
ପରାଣେ ପରାଣେ ଅନୁବଂଧନ
ଆନ ଆନ ଲାଗି ହୃଦ-ଗଞ୍ଜନ,
ଜୀବନ-ସମରେ ଜାନୁ-ଭଞ୍ଜନ,
ପଥ ତତେ ପାଇବାର
ବଁଚିବା କରିଛ ପବିତ୍ର ହବି-ଧାର ।

ଭୟ ଥିଲା ମନେ ଯୋଗ ଯାଗ ତପ କିଛି ମୋ ନାହିଁ
ଦେଉଳ ଦୁଆରେ ଯିବି ମୁଁ କି ଭରସାରେ,
କି ଅଛି ନେବାକୁ ଉପହାର ପ୍ରିୟ ଦେବତା ପାଇଁ,
ଦେବ-ଦରଶନ ହୁଏ କି ଏ ପରକାରେ ?
ଆଜି ନାଥ, ପ୍ରାଣୁ ତୁଟିଛି ସେ ଭୟ,
ଶଙ୍କା-ବିହୀନ, ଶୁଦ୍ଧ ହୃଦୟ,
ହସି କାଁଦି ମୁଁ ତ ପହଁଚିବି ନାଥ
ଅଛ ତୁମେ ଯେଉଁଠାରେ,
ଦରଶନ ମୁଁ ଯେ ପାଇବି ଏ ପରକାରେ ।

—

## କୁଟୀର ଚିରନ୍ତନ

ଧୂଳି ହୋଇ ମିଶିଛି ମାଟିରେ
କେତେ କେତେ ସମ୍ରାଟର ଘର,
ସହସ୍ରର ସମାଗମ ଯହିଁ
ସେଥି ଆଜି ଚରେ ବନଚର ।
କିନ୍ତୁ ଦୂରେ ଦରିଦ୍ର ପଲ୍ଲୀରେ
କୁଟୀମାଳା ରହିଅଛି ଛିଡ଼ା,
ସାମ୍ରାଜ୍ୟର ଉତ୍ଥାନେ ପତନେ
ଚାଲିଅଛି ତହିଁ ନର-କ୍ରୀଡ଼ା ।
ପୁଣି କେତେ ଧନୀ, ମାନୀ, ରାଜା
ଆସି ପୁଣି ମିଶିବେ ମାଟିରେ,
କାଳେ କାଳେ କିନ୍ତୁ ଥିବ ଚାଲି
ନର ଲୀଳା ମାଟିର କୁଟୀରେ ।
ଦମ୍ଭୀ, ମାନୀ, ଧନିକ ଆଜିର
ଶେଷ ହେବେ ଯେବେ ରେଣୁ ହୋଇ,
ଚାଲିଥିବ ଗରା ଧରି କାଖେ
ଚଷାବଧୂ ନଈକି ଗାଧୋଇ ।
ଦାମ୍ଭିକର ମାନ, ଅହଂକାର,
ଧନିକର ବିତ୍ତ, ଆଡ଼ମ୍ବର,
ଦୂର୍ବାବୃତା ମାଟିର ଧରାରେ
ତାହା ସବୁ ଅତି ଅବାନ୍ତର ।
ତେଣୁ ତା'ର ଘଟେ ବିପର୍ଯ୍ୟୟ
ପ୍ରାସାଦରେ ଉଠେ ଦୂବଘାସ,
କୁଟୀର ତ ମାଟିର କୁଟୁମ୍ବ
ତେଣୁ ତା'ର ନୁହେ ବଂଶନାଶ ।

—

# ମହାନଦୀରେ ଜ୍ୟୋତ୍ସ୍ନା ବିହାର

ଶିଳାଗୃହ-ଅନ୍ଧକାରବାସୀ ମୁଁ, ଜନନି !
ଉତ୍କଳ, ନ ଥିଲି ଜାଣି, ଅଛି ଲୋ ତୋ ପୁରେ
ଏମନ୍ତ ରୂପର ଲୀଳା; ନ ବାହୁଁ ତରଣୀ
ଆଜି ଏ ଜ୍ୟୋତ୍ସ୍ନାରେ ନୀଳ ମହାନଦୀପୁରେ ।
ଆହା କି ବିପୁଳ ଶୋଭା ଭାସେ ଆଖି ଆଗେ,
କେମନ୍ତେ ବର୍ଣ୍ଣିବି ମୋର ମୁଗ୍ଧ ଅନୁଭବ,
ଚକ୍ଷୁ ମୋର ଅନ୍ଧ ହୁଏ ଜ୍ୟୋଛନା-ପରାଗେ,
ବାଣୀ ମୋର ନାହିଁ ଫୁଟେ ମାନି ପରାଭବ ।

ଧବଳ ଉତ୍ତରୀ ସମ ରଜନୀ-ବଧୂର,
ଜ୍ୟୋଛନା ବ୍ୟାପିଛି ଦୂର ଦିଗଚକ୍ର ଲାଗି,
ତଳେ ତା'ର ଏ ଧରଣୀ, ପ୍ରକୃତି-ମଧୁର
ହୋଇଛି ମଧୁରତର ତା ପରଶେ ଜାଗି ।

ଆକାଶର ଖଣ୍ଡ ସମ ମହାନଦୀ ବାରି
ଚନ୍ଦ୍ରିକା ଚୁମ୍ବନ ପାଇ ଧବଳ-ଚପଳ,
ତରଳ ମୁକୁର ଅବା ଦେଇଛି କେ ପାରି,
ଦେଖିବେ ବଦନ ନଭ-ସୀମନ୍ତିନୀଦଳ ।

ଦୁଇ କୂଳେ ବୃକ୍ଷରେଖା ଜ୍ୟୋଛନା-ଧଉତ,
ପାଣ୍ଡୁର ଆଲୋକେ ଧରି ତନ୍ଦ୍ରାଳସ ଶିରୀ,
ସ୍ୱପ୍ନ-ପୁରୀ କରେ ସୃଷ୍ଟି ! ଅଳସ ମରୁତ
ଜ୍ୟୋଛନା-ମଦିରାମତ୍ତ ବହେ ଥିରି ଥିରି ।

ଦୂରବାହୀ ନାଉରୀର ସରଳ ସଙ୍ଗୀତ
ପବନେ ଆସଇ ଭାସି ନଦୀ ବକ୍ଷ'ପରେ,
କ୍ଷେପଣୀ ଆଘାତେ ଦେଖ ଚନ୍ଦ୍ରିକା-ରଞ୍ଜିତ-
ନଦୀ-ବାରି, ଲକ୍ଷ ରୌପ୍ୟ-ପୁଷ୍ପ ସୃଷ୍ଟି କରେ ।

ପଶ୍ଚାତେ ପ୍ରସାରଶୀଳ ଶୁଭ୍ର ବାରିରାଶି
ମିଶଇ ଆକାଶ ତଳେ; ସମ୍ମୁଖେ ମୋହର
ଗମ୍ଭୀର ସୁନ୍ଦର ଗିରିମାଳା ଉଠେ ଭାସି,
ଚନ୍ଦ୍ରିକାଚନ୍ଦନେ ଚର୍ଚ୍ଚା ନୀଳ କଳେବର ।

ଉଠିଛି ଶିଖରୀମାଳା ପଶ୍ଚାତୁଁ ଆକାଶ—
ସନ୍ନ୍ୟାସିନୀ-ମୁଖ ସମ ପ୍ରଶାନ୍ତ ଧବଳ,
ତା ତଳେ ରଜନୀବଧୂ ଚନ୍ଦ୍ରିକାର ବାସ
ଉଡ଼ାଇ ଧରଣୀ କରେ ପରଶେ ଉଚ୍ଛଳ ।

ଏ ବିରାଟ ଚିତ୍ରଗୃହେ ଅତିଥି ମୁଁ ଦୀନ
ମୁଗ୍ଧ ସମ ରହେ ଚାହିଁ ମହାମହିମାରେ,
ଭାବଇ ବା ହୋଇ ଜ୍ୟୋସ୍ନାରେ ପ୍ରଲୀନ
ଭୋଗନ୍ତି ସେ ସୁଧା ଝରେ ଆଜି ଏତେ ଧାରେ ।

(୨)

ହାୟ ଲୋ ଉତ୍କଳଭୂମି ! ପ୍ରକୃତି-ସୁନ୍ଦରୀ;
ମନ୍ଦାକିନୀ ସମ ନଦୀ, ଶିବ ସମ ଗିରି,
କାନନେ, କେଦାରେ ଲକ୍ଷ ଶୋଭାର ବହର
ଥାଉଁ ତୋର କହ କିପାଁ ଏତେ ହତଶିରୀ ?

ଏ ସ୍ୱର୍ଗ ସୁଷମା ଯାର, କରିବି ବିଶ୍ୱାସ
କେମନ୍ତେ କହ ଲୋ, ତା'ର ଅନ୍ନର ଅଭାବ ?
ସୁରାସମ ମୁଗ୍ଧ କରେ ମୋରେ ଯା ନିଶ୍ୱାସ,
ତା ଦେହେ ସମ୍ଭବେ କାହୁଁ ଦୁର୍ଦ୍ଦିନ ପ୍ରଭାବ ।

କାନନ-ଶ୍ୟାମଳ-ବାସ, ଶିଖରୀ-ମୁକୁଟ
ଚରଣ ଚୁମ୍ବଇ ମହାସାଗର ଲହରୀ,—
ଏ ବେଶେ ହୁଅଇ ଯା'ର ମହିମା ପ୍ରକଟ,
କେମନ୍ତେ ଭାବିବି ତା'ରେ ଅଭିଶପ୍ତା କରି ?

ଆଜି ତୋର ଇତିହାସ ସାକ୍ଷୀ ଏ ତଟିନୀ—
ଜଳେ ମୋ ତରଣୀ ଯେବେ ଭାସିଯାଏ ଧୀରେ,
ଜନନି ! ଗୌରବ ତୋର କଳ୍ପନା ସଙ୍ଗିନୀ
ଗୋଟି ଗୋଟି ଦ୍ରୁତେ ବାଢ଼ି ଦିଏ ମୋ ସ୍ମୃତିରେ ।

ସେ ଦିନ ତୋ ଗିରି ସଙ୍ଗେ, ତୋର ଗଜପତି
ତୋଳିଲା ସ୍ପର୍ଦ୍ଧାରେ ତା'ର ଦୁର୍ଗ ଅଭ୍ରଙ୍କଷ,
ତୋହର ଏ ନଦୀ ସମ ମହା ନରପତି
ହୃଦୟେ ଉଦାର କରି ଜିଣି ନେଲା ଯଶ ।

ସେ ରାଜା ଯାଇଛି ଚାଲି, ଦୁର୍ଗ ତାର ନାହିଁ,
ତା ସଙ୍ଗେ ଯାଇଛି ପୁଣି ସେ ବୀର ହୃଦୟ,
ତୋହରି ଅତୀତ ମା ଗୋ ! ଆଜି ଥାଇ ଥାଇ
କରେ କ୍ରୂର ପରିହାସ, ଘୋର ବ୍ୟଥାମୟ ।

(୩)

ତରଣୀ ଚଳଇ ମୋର ବାରବାଟୀ ତଳେ,
ରହରେ ନାଉରୀ, ଦଣ୍ଡେ ଭିଡ଼ ଏଥି ତରୀ,
ମଥା ମୋ ଲଗାଇ ପୂତ ସୋପାନ-ପ୍ରସ୍ତରେ
ଦିଏଁ ଅପଦାର୍ଥ-ପ୍ରାଣେ କୃତକୃତ୍ୟ କରି ।

ସେ ଦିନ ଏ ଶିଳା ପରେ ଅବଗାହେ ଆସି
ସୁକୁମାରୀ ରାଜବାଳା ଆଙ୍କିଥିବ ତା'ର
ଲାକ୍ଷାରକ୍ତ ପଦଛବି, କରି ମତ୍ତକାଶୀ
କଠିନ ପାଷାଣ-ଦେହେ ଆନନ୍ଦ ସଞ୍ଚାର ।

ସେ ଦିନ ସଜନୀ ମେଳେ ରୂପସୀ ମହିଷୀ
ଏକ କରେ ଦୂର୍ବାକ୍ଷତ, ଶଙ୍ଖ ଆନ କରେ,
ବିଜୟୀ ପୁତ୍ରର ଶିରେ ମଙ୍ଗଳ ଆଶିଷି;
ବନ୍ଦି ନେଇଥିବେ ଗୃହେ ଏହି ଶିଳା ପରେ ।

ସେ ଦିନ ଏ ଶିଳା ପରେ ନାଗରିକା ଶତ
ହରିଦ୍ରା ପ୍ରଲେପେ ରଞ୍ଜି କନକବଦନ,
ବନ୍ଦିଥିବେ ଶଙ୍ଖ ବାଇ ରାଜାର ବୋଇତ,
କରିଛି ଯେ ସିଂହଳରୁ ମୁକ୍ତା ଆନୟନ ।

ସେ ଦିନ ଏ ଶିଳା ପରେ ନଗର-ଜନନୀ
ଏକତ୍ରେ ପଠାଇ ପୋତେ ସନ୍ତାନେ ସମରେ,
ଚାହିଁଥିବେ ଦୂର ଦିଗେ, ସେ ବୀର ରମଣୀ
ଲୁଚାଇ ଆଖିର ଲୁହ ଅପମାନ-ଡରେ ।,

ସେ ଦିନ କାହିଁ ଗୋ ଶିଳା ! ଏ ଦୁର୍ଗର ଛାୟା
ମାଡ଼ି ଏ ତଟିନୀଜଳେ ଦୀନା ଚକୋଈରେ
ଆଣେ ଯେବେ ନିଶା-ଭୀତି; ଜୀବନର ମାୟା
ଏ ଜାତି ନଥିଲା ଜାଣି ସମର ମାଟିରେ ।

ଚିରଦିନ ପାଇଁ ସେ କି ଯାଇଛନ୍ତି ଚାଲି,
ନ ଫେରିବେ ରାଜାରାଣୀ, ନ ଫେରିବେ ବୀରେ ?
ବୋଇତ ବନ୍ଦାଣ ଲାଗି ଏ ତଟିନୀ ବାଲି
ନାଗରିକା ପଦପ୍ରାନ୍ତ ଚୁମ୍ବିବ ସଧୀରେ ?

ଦୁର୍ଗ ଆଉ ଉଠିବନି ? ରାଜାର ବୋଇତ
ନ ଫେରିବ ମୁକ୍ତା ଧରି ଏ ତଟିନୀ ବାହି,
ନଗରର ବଧୂ ଯେତେ ମଙ୍ଗଳ ସଙ୍ଗୀତ
ନ ବନ୍ଦିବେ ତାରେ କେବେ, ମଧୁକଣ୍ଠେ ଗାଇ ?

ସେ ସୌଭାଗ୍ୟ ଶେଷେ ହାୟ, ଏ ଜାତିର ଶେଷ
ନ କଲା ବିଧାତା କିପାଁ ଏ ଗୌରବ ପରେ
ବଞ୍ଚିବା ଧରି ଏ ଖାଲି କଙ୍କାଳ ବିଶେଷ
ବିଶ୍ୱ ଆଗେ, ମରଣରୁ ଶତ ଗୁଣେ ବଳେ !

ଏମନ୍ତ ଜ୍ୟୋଛନାରାତେ ସେଦିନ ଏ ସ୍ଥଳୀ
କି ଶୋଭା ଧରଇ, ଅୟି କଳ୍ପନା ସଜନି
କହ ମତେ । ଶତ ଶତ ନାଗରିକେ ତରୀ
ବାହି କେତ୍ନେ କରୁଥିବେ ମୁଖରା ରଜନୀ !

ନୃପତିର ଗଜଦନ୍ତ ତରୀ ଥିବ ଆଗେ,
ମୁଖରା ଗାୟିକାକଣ୍ଠେ, ସୁଗନ୍ଧେ ଉତଳା;
ନୃପତି-କୁଣ୍ଡଳ-ମଣି ଚନ୍ଦ୍ରିକାର ରାଗେ
ଝଲସେ; କମ୍ପଇ କର୍ଣ୍ଣେ କୁସୁମର ଝରା ।

ରାଜତରୀ ପାଶେ, ପଛେ, ଶତ ତରୀ ବାହି
ଚଳନ୍ତି ନଗରଜନେ ବିଳାସକୁଶଳ,
ମୁଖରା କରି ଏ ନଦୀ ଉଚ୍ଚେ ଗୀତ ଗାଇ,
ଉଦ୍ଦାମ କ୍ଷେପଣେ କରି ଆକୁଳ ଏ ଜଳ ।

ଊର୍ଦ୍ଧ୍ୱେ ତେଣେ ଚନ୍ଦ୍ରଶାଳା-ପୁରେ ରାଜରାଣୀ
ସ୍ୱର୍ଣ୍ଣଦୀପ ପଛେ ରଖି ବାତାୟନ-ମୁଖୀ,
ଦେଖନ୍ତି ଏ ମହାଲୀଳା, ଫୁଟେ ନାହିଁ ବାଣୀ,
ବଦନେ ଆସେ କି ଭାଷା ପ୍ରାଣ ହେଲେ ସୁଖୀ ?

ଆନ କକ୍ଷେ ରାଜବଧୂ କୋମଳା କିଶୋରୀ
ସୁନ୍ଦରୀ ସଜନୀମେଳେ ଧରି ଫୁଲହାର
ଦେଖନ୍ତି ଚନ୍ଦ୍ରମା ଶୋଭା ଚନ୍ଦ୍ର-ମୁଖ ଟେକି,
ଏ କାଳେ ମିଳିଲେ ପାଶେ ନୃପତି-କୁମାର ।

ତୀରେ ବାଦ୍ୟ-ନହବତ, କମ୍ପଇ ଧରଣୀ,
ସେ ପାର ପର୍ବତମାଳା ଦିଏ ପ୍ରତିଗିର,
ମନ୍ଦ୍ରି ଉଠେ ଦୁର୍ଗକକ୍ଷ, ରାଜାର ତରଣୀ
ନଚାଏ ଉନ୍ମାଦେ ନୀଳ ମହାନଦୀ-ନୀର ।

ସେଦିନ ମୁଁ ଥାଆନ୍ତି କି ରାଜନ ଗହଣେ,
ବିଧାତା, ହୃଦୟ ଭରି ଗାଇଥାନ୍ତି ଗୀତ,
ଗୁଣଗ୍ରାହୀ ରାଜା ମୋରେ ରତ୍ନ-ବିତରଣେ
ତୋଷି କି ନ ଥାନ୍ତେ ଏଇ ଦରିଦ୍ରର ଚିତ୍ତ ?

(୫)

ଫେରିବା କହୁଛ ବନ୍ଧୁ ! * ପୁଣି ଅନ୍ଧକାରେ
ଫେରିବାକୁ ହେବ ସତେ ? ହାୟ ଏ ଜୀବନ !
ଅବସର ନାହିଁ ମିଳେ କ୍ଷଣେ ଭୁଲିବାରେ
ଜୀବନର ହାହାକାର, ପ୍ରାଣର ଦହନ ।

ଚନ୍ଦ୍ରମା ଉଠିଛି ଊର୍ଦ୍ଧ୍ୱେ,—ବିରାଟ ଧରଣୀ
ନୀରବ ନିସ୍ତବ୍ଧ-ଶାନ୍ତ ମହାନଦୀ ଜଳ
କ୍ଳାନ୍ତ ଶିଶୁ ସମ ଶାନ୍ତ । ଉଜ୍ଜ୍ୱଳ ରଜନୀ
ପକ୍ଷ ପାତି ଆବରିଛି ନଭ, ଜଳ, ସ୍ଥଳ ।

ଏ ମହାନୀରବ କ୍ଷଣେ, ଏ ଜ୍ୟୋଛନା ତଳେ
ମୁଗ୍ଧ ମୁଁ ଅନାଇ ଏହି ବିପୁଳ ଶୋଭାରେ,
ଅନୁଭବେ ଆହା କା'ର ସ୍ପର୍ଶ ଏ ଅନ୍ତରେ,
ବଚନୁ ଅତୀତ, ମୁହିଁ ପ୍ରଣମେ ତାହାରେ ।

ସେ ଯେ ସତ୍ୟ, ଶିବ ସେହି ଏକା ସେ ସୁନ୍ଦର,
ଭୂମା ସେ ରହିଛି ପୂରି ରେଣୁ ରେଣୁ ଭେଦି,
ଅନନ୍ତ ଲୀଳାର ହେତୁ, ଅସୀମ ହୃଦର
କ୍ଷଣକେ ସୃଜେ ସେ । ତା'ର ମହାପୂଜାବେଦୀ ।

[* ବନ୍ଧୁ ଶ୍ରୀଯୁକ୍ତ ରତ୍ନାକର ଷଡ଼ଙ୍ଗୀ, ଯେ କି ଜ୍ୟୋତ୍ସ୍ନାବିହାରର ଆୟୋଜନ କରିଦେଇଥିଲେ ।]

ବନ୍ଧୁ ହେ, ପାଇଛି ଆଜି ଏ ଆକାଶ ତଳେ,
ାତି ଅତୀତ-ସାକ୍ଷୀ ଏ ନଦୀ ପୁଳିନେ,
ସ୍ନାର ଏ ମହାଭୋଜ୍ୟେ, ଏ ତରଣୀ'ପରେ
ଜାନୁପାତି ବନ୍ଧୁ, ତା'ରେ ଘେନ ଏ ଜୀବନେ ।

ଇଚ୍ଛା ମୋ ହୁଅଇ ଏହି ନିର୍ମଳ ରଜନୀ
ଅସରା, ମୁଁ ଖୋଜୁଥାନ୍ତି ସତ୍ୟ ଶୁଭ ତା'ରେ
ଏ ସୁନ୍ଦର ଜ୍ୟୋସ୍ନାତଳେ, ବାହି ଏ ତରଣୀ
ମୃତ୍ୟୁଯାଏଁ, ନ ଫେରି ସେ ମହା ଅନ୍ଧକାରେ ।

## ବାରବାଟୀ

ମୋ ଜନନୀ ଉତ୍କଳର ଇତିହାସ-ଶିରେ
ରାଜଟୀକା ସମ,
ହେ ଦୁର୍ଗ ପରମ,
ତୁମେ ତୁଙ୍ଗ ବାରବାଟୀ ବୀର-ରକ୍ତ-ମାଂସରେ ଗଠିତ
ଅତୀତର ବକ୍ଷ' ପରେ
ଏ ଜାତିର ଜୟସ୍ତମ୍ଭ-ପରି
ବୀର୍ଯ୍ୟଦୃପ୍ତ ସ୍କନ୍ଧ ଉଚ୍ଚେ ଧରି,
ଆଣିଛ ବୁହାଇ ମୌନେ ନିଜ ଦେହେ ନିଜର ଅତୀତ ।

ଯାଇଛି ବିଶାଳ ରାଜ୍ୟ, ମାନ, ସ୍ୱାଧୀନତା-
ରାଜନ୍ୟ ସମ୍ମାନ
ବୁଦ୍‌ବୁଦ ସମାନ
ସର୍ବଗ୍ରାସୀ ମହାକାଳ-ଲହରୀରେ ଭାସି;
ତୁମରି ସ୍ମୃତିଟି ମାତ୍ର
ଏ ଜାତିର ଅନ୍ତରେ ଅନ୍ତରେ
ଏ ଦେଶର କୋଟିଏ କଣ୍ଠରେ
ରାହୁମୁକ୍ତ ଶଶି ସମ କାଳଗର୍ଭୁ ଉଠଇ ପ୍ରକାଶି ।

କେତେ ରାଜ୍ୟ କେତେ ଜାତି ଅତୀତ ଗରଭେ
ଭଜିବେ ଶୂନ୍ୟତା !
ଉଦାର ବୀରତା
କେବେ କିନ୍ତୁ ଲୁଚିବ କି ?
—ଦୃପ୍ତ କାଳ ତାହା ନ ପାରିଛି ।

ପର ଲାଗି କାନ୍ଦିଛି ଯେ
କ୍ଷଣେ ହେଲେ ହୃଦୟ ଆକୁଳେ
ସମୟ ସମୁଦ୍ର କୂଳେ କୂଳେ
ତା'ର ମହା ସ୍ମୃତି ପାଇଁ ସମାରୋହେ ଦେଉଳ ଉଠିଛି ।

ପ୍ରସ୍ତର ମୃତ୍ତିକା ସିନା ପଡ଼ିଅଛି ଖସି,
ଭାଙ୍ଗିଛି ଜଘନ;
ବୀରେନ୍ଦ୍ରଭୂଷଣ
ରନ୍ଧ୍ରେ ରନ୍ଧ୍ରେ ବୀରତ୍ୱର ବିରାଟତା ଉଠଇ ଯା ଫୁଟି,
ନ୍ୟାୟ ପାଇଁ ସତ୍ୟ ପାଇଁ
ହୃଦୟର ଉଷ୍ଣ ରକ୍ତ ଦାନ,
ପର ପାଇଁ ଢାଳିବାର ପ୍ରାଣ
କାହା କର ବଳୀୟାନ, ଏ ସ୍ମୃତିକୁ ଘେନିଯିବ ଲୁଟି ?

କେତେ ଶତାବ୍ଦୀର ମହାଗୌରବ, କପାଳେ
ନୀରବେ ନିବେଶି
ହେ ଅମ୍ବରକେଶୀ,
ଆଜି ଏଠି ପଡ଼ିଅଛ ଅଚେତନ ପ୍ରାଣହୀନ ସମ
ବିଶ୍ୱ କୀର୍ତ୍ତି-ସଭା ପାଶେ,
ଦୁଃଖ ହୁଏ ଆଜି, କୀର୍ତ୍ତିମାନ,
ନାହିଁ ତବ ଗରିମାର ସ୍ଥାନ !
ତବ ଅବସାନ ସହ ଆସିଅଛି ଜାତିର ସରମ ।

ସେ ଦିନ ସେ ସୌଭାଗ୍ୟର ମୁଖର ମଧ୍ୟାହ୍ନେ
କେତେ ବୈତାଳିକ
ଅଦମ୍ୟ ନିର୍ଭୀକ
ତମର ଚରଣତଳେ ଗାଇଥିବେ ବନ୍ଦନାର ଗାନ,
କେତେ ଲକ୍ଷ ରାଜମଥା—
ଫୁଲ୍ଲ ପୁଷ୍ପଜନିତ-ବାସନା—
ଘେନି ହେଉଥିବ ଆରାଧନା,
ପଦପ୍ରାନ୍ତେ ଗଡୁଥିବ କୋଟି କୋଟି ଲୋକର ସମ୍ମାନ ।

ତମର କଟାକ୍ଷ ପାତେ କୃଷକବାହିନୀ
ଢାଲ ତରବାରୀ
ଧରିଣ ବାହାରି

କେତେ ରାଜ ଅଧିରାଜେ
ଅନାୟାସେ ନୁଆଁଇଲେ ତଳେ;
କେତେ ଶତ ସିନ୍ଧୁଯାତ୍ରୀ
ବାରିଧିର ବହାବକ୍ଷ ଖୋଜି
ମହାମୂଲ୍ୟ ମଣିମୁକ୍ତାରାଜି
ପ୍ରାଣ ଇପ୍‌ସିତ ସମ ଲମ୍ବାଇଲେ
ପୂଜ୍ୟ ! ତବ ଗଳେ,
ଉତୁଙ୍ଗ ବକ୍ଷରେ ତବ, ପୁଣି ଥିଲ ଧରି
ଆତ୍ମା ତୁଙ୍ଗତର
ଉଦାର ଅମର,
ଦୁର୍ବଳର ରକ୍ଷା ପାଇଁ ଅରି ଅସ୍ତ୍ରେ
ଦେଲେ ଯେ ଶୋଣିତ;
ନିଜ ଦେଶ ନିଜ ଧର୍ମ
ନିଜ ମାତା ଭଗିନୀର ମାନ
ରଖିବାକୁ କଲେ ଅଭିଯାନ,
ଶତ୍ରୁର କମାଣମୁଖେ ହସି ଗାଇ ମରଣ-ସଙ୍ଗୀତ ।

ବିଜୟ ଉତ୍ସବବେଳେ ନାରୀ ମନସ୍ୱିନୀ
ନୂପୁର ନିକ୍ୱଣେ,
ହୁଳହୁଳି ସ୍ୱନେ
ବନ୍ଦାପନା କରୁଥିଲେ ବୀର କାନ୍ତ ପାଶେ ହୋଇ ଛିଡ଼ା,
ସେହି ପୁଣି ଅରି ଆଗେ
ସତୀ-ଧର୍ମ ରଖିବାର ପାଇଁ
ଅସି-ହସ୍ତେ କଲେ ଯେ ଲଢ଼ାଇ,
ତବ ମୌନ ଆମନ୍ତ୍ରଣେ
ତେଜି ହେଲେ ଅବରୋଧ ବ୍ରୀଡ଼ା !
ସବୁ ଆଜି ସ୍ୱପ୍ନସମ ଯାଇଛି ହେ ଭାସି—
ମହତ୍ତ୍ୱ, ଗରିମା
ହୃଦୟ ତୁଙ୍ଗିମା,
ତୁମର ପତନ ସଙ୍ଗେ ମହାଜାତି ମିଶିଛି ଭୂତଳେ,
ମହାରାଜା ମହାସାଜେ
ମହୀ ଜିଣି ନ ଫେରଇ ଦେଶେ
ଗୃହପ୍ରିୟ ଜାତି ଦୀନବେଶେ,
ଗୃହ ତେଜି ଭିକ୍ଷା ପାଇଁ
ଲୋଟେ ଯାଇ କାହା ପଦତଳେ !

—

# ପଲ୍ଲୀସନ୍ଧ୍ୟା

(୧)

ଗରିଆ ଧରି ହାତେ, ତରୁଣୀ ଘାଟେ ଚଳେ,
ସନ୍ଧ୍ୟା ହେଲା ବୋଲି ତୁରିତେ ପଦ ପଡ଼େ ।
ଚପଳ ପଦ-ପାତେ, ବଳାରେ ବାଜେ ବଳା,
ମାନେ ନା ତରୁଣୀ ସେ, ସନ୍ଧ୍ୟା ହେଲା ପରା,
କନକ ରବି କରେ ବଦନ ଦିଶେ ଝଳି,
ସରମେ ଚାଲେ ନାରୀ ନୟନ ନତ କରି ।
ଓଢ଼ଣା କେଶୁ ଖସି ଚରମେ ଅଛି ପଡ଼ି,
ସୁନାର ନୋଥ ନାକେ ଚଞ୍ଚଳେ ଉଠେ ଥରି ।
ସନ୍ଧ୍ୟା ହେଲା ଅବା ବୋଲି ସେ ଦିଏ ଚାହିଁ,
ଚକିତେ ଦେଖେ ପଥେ ପୁରୁଷ ଅଛି କାହିଁ !
ସରମେ ମାଥେ ଆଣେ ଓଢ଼ଣା ଟାଣି ପୁଣି
ରସାଳ-ହାତେ କାଚ ବାଜଇ ରୁଣ-ଝୁଣି ।
ହାତର ଗରା କାଖେ ଯତନେ ରଖି ନାରୀ
ଗତିକି ଖର କରେ, ଆଣିବ ବୋଲି ବାରି ।
ଭେଟିଲା ପଥେ ଏବେ ମିତଣୀ-ଦଳ ତା'ର
ଶିଥିଳ ଗତି, ଧରି କାଖଗେ ବାରି-ଭାର ।
କାଖରେ ବାରି ଧରି ଶରୀର ପଡ଼େ ନଇଁ,
ମୁଖର ପଥସାରା ସକଳେ କଥା କହି ।
ଭାସେ ସେ 'ଆଲୋ ଅପା' ଡାକିଲୁ ନାହିଁ ମତେ
ସାଥୀ ମୁଁ ବୋଲି କାରେ ଡାକିବି ଏ ଜଗତେ ?'
ରମଣୀ-ଦଳୁ ଅପା କହିଲା 'ଶୁଣ ନେତ,
ଡାକିଲି କେତେ ତତେ ନ ହେଲା କିନ୍ତୁ ଭେଟ ।'
ନ ଶୁଣି ଉତ୍ତର ଚଳଇ ଖରେ ନାରୀ
ସନ୍ଧ୍ୟା ହେଲା ପରା ଆଣିବ ବୋଲି ବାରି ।

(୨)

କ୍ଳାନ୍ତ ପଦ ଚାଳି ପଗଡ଼ି ଭିଡ଼ି ଶିରେ
ସ୍କନ୍ଧେ ହଳ ଥୋଇ କୃଷକ ଫେରେ ଧୀରେ ।
ଆଗରେ ଚାଲେ ଧୀରେ ବଳଦ ଦୁଇ ତାର

ଗତିକି ଖର କରେ
ଯଷ୍ଟି ମୃଦୁ ଭାର ।
କୃଷକ ପଛେ ଆସେ
ବାହୁଡ଼ା ଗୋରୁ ପଲ
ହମ୍ବା-ରଡ଼ି ଘନ,
କମ୍ପେ ଗ୍ରାମ-ତଳ ।
ଉଡ଼ଇ ଘନ ଧୂଳି
ଗୋ-ଦଳ ଖୁରା-ଘାତେ
ଗୋପାଳ ଶିଶୁ ଗାଏ
ଗୀତ ତା' ସାଥୀ ସାଥେ ।
ଦାଣ୍ଡେ ଯେତେ ଶିଶୁ
ଧୂଳିର ଘର କାଟି
ଗୃହୀ-ଗୃହିଣୀ ସାଜି
ପସରା ଥିଲେ ପାତି,
'ଆସିଲେ ଗୋରୁ' ବୋଲି
ଧୂଳିର ଘର ଛାଡ଼ି
ପଳାଇ ଗଲେ ଘରେ
ଯେ ଯାହା ପଥ ମାଡ଼ି ।

(୩)

ସନ୍ଧ୍ୟା ହେଲା ଏବେ
ପୋଖରୀ ନୀଳ ଜଳେ
କନକ ରବି ରେଖା
ଲହରୀ ପରେ ଥରେ ।
ପୋଖରୀ-ହୁଡ଼ା ପରେ
ବିରାଟ ବଟ ଛିଡ଼ା,
ଲକ୍ଷ ବିହଗର
ଲାଗିଛି ଶେଷ କ୍ରୀଡ଼ା ।
ଦୂରରୁ ଆସେ କେହୁ,
ବସି କେ ଝାଡ଼େ ପଖୀ,
ଉଡ଼େ କେ ଆକାଶରେ
ବସାରେ ଆଖି ରଖି ।
ଗଭୀର କୋଳାହଳ,
ସାଥୀରେ ଡାକହାକ;
ଯୋଗାଡ଼, ହେବ ପରା
ଶୟନ ରାତିଯାକ ।
ସେ ବଟ-ତଳ-ଘାଟେ
ବାଳିକା ନିଏ ପାଣି,
ଚଳିଲା ନିଜ ପଥେ
ଓଢ଼ଣା ଦେଇ ଟାଣି ।
ବାଳକ ଦୂରେ ଏକ
ବାଟୁଳି ମାରେ ଲାଖି,
ବାଜିଲା କାହିଁ ବୋଲି
ଆକାଶେ ରଖି ଆଖି ।

(୪)

ସନ୍ଧ୍ୟା ହେଲା ଏବେ
ବଟ ବିରାଟ ଛାୟା
ସୁଦୂର ବିଲ-ମାଳେ
ବଢ଼ାଇ ଦେଲା କାୟା ।
ପୋଖରୀ ନୀଳ ଜଳେ
ପଦ୍ମ ମୁଦି ଆସେ,
କୁମୁଦ ଫୁଟି ଉଠେ
ସଧୀରେ ତା'ରି ପାଶେ ।
କମଳ-ଦଳ ପରେ
ଚଳଇ ଖଞ୍ଜନ,
ପ୍ରିୟାରେ ଧରି ସାଥେ
ସାଉଁଟି ତା' ଭୋଜନ ।
ସରସୀ ଜଳ ତେଜି
କନକ ରବି-ରେଖା

ସୁଦୂର ନଭେ ଉଠି ଦେଲାଣି ଶେଷ-ଦେଖା ।
ପଥିକ ଚାଲି ଆସେ ସନ୍ଧ୍ୟା ହେଲା ବୋଲି,
ମଥାର ଗୁରୁଭାର ମଥାରୁ କରେ ତୋଳି ।
ଶୁଭଇ ଗ୍ରାମ ପଥେ ଚଳ-ଶକଟ ଗତି
ସନ୍ଧ୍ୟା ହେଲା ବୋଲି ଚଳଇ ଗ୍ରାମ ପ୍ରତି ।

(୫)

ସନ୍ଧ୍ୟା ହେଲା ଏବେ ଆକାଶ-ଅଗଣାରେ
ଲାଗିଲେ ଦେବ-ବାଳା ପ୍ରଦୀପ ଜାଳିବାରେ ।
ରଜନୀ-ନାରୀ ଏବେ ଆକାଶ ବିଲ ମାଡ଼ି
ଆସିଲା କଳା ତା'ର ବସନ ପଥେ ପାରି ।
ସନ୍ଧ୍ୟା ଦୀପ ଜାଳି ଘରଣୀ ତୁଳସୀରେ
ଯାଚନା ଘରେ ଘରେ କଲେଣି ନତ ଶିରେ ।
ଗ୍ରାମର ଶେଷେ ବାଜେ ଦେଉଳେ ଆରତିର
ଘଣ୍ଟା-ରବ ଶୁଣେ ଭକ୍ତ ନୋଇଁ ଶିର ।
ନୀରବ ହୋଇ ଆସେ କ୍ରମଶଃ ଗ୍ରାମ-ଘର
ବଟୁଆ ମେଲି କୃଷ ନିଏ ତା' ଅବସର ।
ମଳିନ-ଆଲୋକିତ ଭା'ଗତ'-ଘରୁ ଆସେ
'ଭଣଇ ଜଗନ୍ନାଥ'— ଶୋରତା ନାହିଁ ପାଶେ ।
ହଳଦୀ-ଲେପେ ଡରି ଶିଶୁ ରୋଦଇ କାହିଁ,
ବିଲୁଆ ଡାକ ଦେଲା ରଜନୀ ହେଲା ଭାଇ ।

## ବର୍ଷା-ସନ୍ଧ୍ୟା

(୧)

ମାଠିଆ ଧରି ଆସ ସଜନି,
ଆସିବ ଘନଘୋର ରଜନୀ,
ଚାନ୍ଦ ଯେ ନାହିଁ ଆଜ ଆକାଶେ,
ବୁଝି କି ନାହଁ ଚାନ୍ଦ-ବଦନି ?
ଶୁଣୁଛି ନଈ ଆଜି ବଢ଼ିଛି
ବୁଡ଼ିଛି ଗାଁର ଘାଟ-ପଥର

କୂଳଁୁ କୂଳ ପୂରି ବହଇ
ଭସାଇ ଜୀବ, ଗଛ ପତର ।
କେସନେ ଯିବା କହ ନଈକି
କଳା ଯେ ମେଘ ଘୋଟି ଆସଇ,
ବାଟ ତ ଜଳେ ବୁଡ଼ି ରହିଛି
ପଦକେ ପଦ ମୋର ଖସଇ ।
ମାଠିଆ ଧରି ବେଗେ ଆସ ଗୋ,
ନ ବୁଡ଼ୁଁ ବେଳ ଯିବା ପାଣିକି,
କବାଟ ଦେବା ମୁଦି ନିବିଡ଼େ
ଭବନେ ସଖୀ ପାଣି ଆଣିକି ।

(୨)

ବାଟରେ ନୀପ ଅଛି ଫୁଟି ଗୋ
ସୁବାସ ଦିଏ ନାକ ବଥାଇ,
ତା' ମୂଳେ ହେଲେ ଠିଆ, ମିତଣି,
ମନରେ ଆସେ କେତେ କଥାହିଁ ।
ତା ମୂଳେ ହୋଇ ଉଭା ରାଧା ମୁଁ
ଖୋଜଇ ପ୍ରିୟ କଳା-କିଶୋର,
କାନକୁ ଡେରି ରହେ କାଳେ ବା
ବାଇବ ବଂଶୀ ପ୍ରାଣ-ଦୋସର ।
କଦମ୍ବ ବାସ ଖାଲି ପୂରଇ
ହୃଦୟେ, ପ୍ରାଣ ମୋର ବଥାଇ,
ଦୋସର ଆସେ ନାହିଁ ପାଶେ ଗୋ
ମନରେ ରହେ ମନ କଥାହିଁ !
କଦମ୍ବ ଫୁଲ ତୋଳି ଆଣି ମୁଁ
କାନରେ ଦେବି ମାରି ତୁମର,
ଯତନେ କେଶେ ରଖ କହୁଛି,
ଧାଇଁବ ପ୍ରିୟ-ମନ-ଭ୍ରମର ।

(୩)

ଉଚ୍ଛୁର ହେଲା ଆଜି ଶୁଣ ଗୋ
ମୟୂର ଅଗଣାରେ ନଚାଇ,
ନାଚିଲା ନାହିଁ ପରା, ଯେତେ ଗୋ
କହିଲି କାଚେ ତାଳ ପକାଇ ।

ମୟୂର ତା' ଫେରିନଥିଲା
ରସିକବର ଥିଲା ବିମନ,
ପିଞ୍ଜରେ ଥିରେ ଠିଆ ରହିଲା
ମଉନେ ଭାଳି ଭାଳି କି ମନ ।
ଏକାଳେ ସାନ ବୋହୂ ଆସିଲା—
ନିତମ୍ବେ ଲମ୍ବେ ଓଦା ଚିକୁର,
କଜଳ-କଳା, ଅତି ଚିକ୍‌କଣ,
ଚରମେ ଦୋଳେ, ବାସେ ଆକୁଳ ।
ମୟୂରେ ପଛ କରି ହୋଇଲା
ଉଭା ସେ ମେଘକେଶୀ ଷୋଡ଼ଶୀ,
ମେଘ ବୋଲି କି କେଶେ ଭାବିଲା
ନାଚିଲା କେକୀ ମାନ ବରଜି ।
ଚନ୍ଦ୍ରିକା ଟେକି କେକୀ ନାଚିଲା,
ହସିଲେ·ମାରି ତାଳି ସରବେ,
ହିଂସା ହୋଇଲା ମୋର ମିତଣି !
ମୋ ସାନବୋହୂ କେଶ-ଗରବେ !
ସେ ନାଚ ଦେଖୁ ଦେଖ ହୋଇଲା
ଉଛୁର ଆଜି ସଖୀ ଏତେ ଗୋ,
ଧାଇଁଛି ପାଣିକି ମୁଁ କେ କହୁଁ
ବେଳ ବୁଡ଼ିଲା ବୋଲି ମୋତେ ଗୋ !

(୪)

ବାଟରେ ଶ୍ୟାମ-ଘାସେ ସାଧବ-
ପୋକ ବିଚଇ ମଣିଚୂନା ଗୋ,
ଆସ ମିତଣି ! ଟାରୁ ଚରଣ—
ରାଗେ ତା ଶୋଭା କର ଚୂନା ଗୋ ।
ପୁନ୍ନାଗ ଫୁଟିଅଛି, ପଥଗୋ
ଆକୁଳ ଘନ ତା'ର ସୁବାସେ,
ନଦୀ-ବାହୁଡ଼ା ଭରି କବରୀ
ସେ ଫୁଲେ, ଫେରିବା ଗୋ ଆବାସେ ।
ଶିରୀଷ ଫୁଲ ଆଜି ଫୁଟିଛି
ତୋଠ ନିକଟେ ତୋଟା ବାଡ଼ରେ,

ମାଳତୀ ପୁଣି ସେହି ବାଡ଼େ ଗୋ
ବାସ ବିଚୁଁଛି ଚାରିଆଡ଼ରେ ।
ତମ ସାଥିରେ ସଖି 'ଶିରୀଷ'—
ବସନ୍ତି, ହେଉଅଛି ମୋ ମନ,
ନିଜେ ତୋଳି ମୁଁ ଦେବି ପିନ୍ଧାଇ
ଡର କି 'ଘର'— ଥଟା ବଚନ ?

(୫)

ବରଷା ଆସିଲା ଯେ ମାଡ଼ି ଗୋ
ଯିବା କେସନ କହ ନଈକି,
କଥା ଗପୁଁ ଯେ ବେଳ ସଇଲା
ଶାଶୁରେ ବୋଧି କିବା କହି କି ?
ଦେଖୁଛ ବାଡ଼ି ତାଳ-ବାହୁଙ୍ଗା
ଯାଉଛି ନଇଁ ବେତ ସରିଗୋ,
ଘରକୁ ଚାଲ ବେଗେ ଘରକୁ
ଶୀତରେ ଯାଏ ଦେହ ଥରି ଗୋ ।
ଅନ୍ଧାର ହୋଇ ଆସେ ଧରଣୀ
କଜଳା ମେଘ ଆସେ ଓହଳି,
ଦୂର କାନନ ଘେରି ଆସଇ
ବାଆ, ବରଷା ଘନ ଗହଳି ।
ଭିତରେ ଯାଅ ସଖି, ଆଜିକ
ଯିବା ନ ହେବ ନଈଘାଟେ ଗୋ,
ବଳିକିଲେ ବକୁ ପଛେ ଶାଶୁ-ମା'
ପୋଲାଙ୍ଗ ଫୁଟୁ ପଛେ ବାଟେ ଗୋ ।

## ରେଙ୍ଗୁନ ଚିଠି

(୧)

ଆଗତ ପଉଷେ ଧାନ ମଳି ଦେଇ
ରାମି ଯେ ଛାଡ଼ିଛି ଘର,
ସନ୍ଧାନ ତା'ର ଆଉ ମିଳି ନାହିଁ
ନାହିଁ ତା'ର ସମାଚାର ।

ଯାଇଥିଲେ ଯେତେ ସାଥୀ
ମିସ୍ତ୍ରୀ ବଚନେ ମାତି
ଖବର ଆସିଛି— ସକଳ ବୀରର
ମୁଠି-ଭରା କାରାବାର,
ପଇସାକୁ ଛାଡ଼ ଭାଷା ବି ନ ଆସେ
ରାମି-ମା'ର ହାହାକାର ।

ତିନିମାସେ ଥରେ ଶୁଭ ଆଗମନ
କରିଲେ ପୋଷ୍ଟମାନ,
ଚଞ୍ଚଳ ଉଠେ ବିରହିଣୀ-ବଧୂ—
ଜନନୀର ଅନୁମାନ
କରାଟରୁ ପଡ଼େ ଖସି ମୁଦ୍ରା । ଗହଳ-ମସୀ
ଗାଆଁର ମାଷ୍ଟ-ହାତେ
ଗୁଞ୍ଜି ଝରକା ବାଟେ
ବେରିଂ ପତ୍ର ଅଣା ହୋଇ ଶୁଣା
ହୁଏ ଅତି ସାବଧାନ,
ପତ୍ର ନ ସରୁ ପିଅନ-ଉଦର
ମାଗେ ତା'ର ସମାଧାନ ।

ହାରିକେ ହାରିକେ ଜଣକ ଜଣକୁ
ରେଙ୍ଗୁନ ଦେଶୁ ଭାଷା,
ଦେଖୁ ଦେଖୁ ଏବେ ବରଷ ପୂରିଲା
ପୂରେ ନା' ରାମିମା' ଆଶା,
ଭାବନା ଏ ତା'ର, ମାଷ୍ଟ ନଷ୍ଟ କରୁଛି ରାଷ୍ଟ୍ର,
ନପାଇବା କିଛି ହାତେ
ମିଳାଇ ପିଅନ ସାଥେ,
ବନ୍ଦ ରଖିଛି ପିଲାର ବାର୍ତ୍ତା
ଲୁଚାଇ ରଖିଛି ଭାଷା,
ସକଳର ଆସେ, ଆସିବନି ତା'ର;
ସେ କ'ଣ କର୍ମନାଶା ?

ତିନି ମାସ ତଳେ ଅପେକ୍ଷା କରି
ଲଗାଇ ଚାରଣା ପଦ,

ରେଜିଷ୍ଟ୍ରି ଚିଠି ପଠାଇଲା, ରଖି
ମାଷ୍ଟର ଅନୁରୋଧ ।
ପ୍ରତ୍ୟେକ ସୋମବାର, ଗାଁଆର ଚୌକିଦାର
ଆସିଲେ ପଚାରେ ତା'ରେ
'ଆସିଛି କି କିଛି କିରେ,
ଥର ଥର ସେ ତ ନାହିଁ ନାହିଁ କଲା
ହାୟରେ ଏ ପରମାଦ,
ମାଷ୍ଟର କଥାରେ ପଡ଼ି ଯା କାଢ଼ିଲା
କରାଟୁ ଚାରଣା ପଦ !
ଆଗତ ପଉଷୁଁ ଧାନ ମଳି ଦେଇ
ରାମି ଯେ ଛାଡ଼ିଲା ଦେଶ,
କହି ଯାଇଥିଲା ପହଁଚିଲା କ୍ଷଣି
ପଠାଇବ ସନ୍ଦେଶ ।
ମିସ୍ତ୍ରୀର ଧନ ଶୁଝି, ଆପଣା ଖରଚ ବୁଝି
ମାସ ଦୁଇ ତିନି ପରେ
ଟଙ୍କା ପଠାଇ ଘରେ
କରିବ ନିଶ୍ଚେ ବୁଢ଼ୀ ମାଆଟିର
ଦୁଃଖର ଅବଶେଷ,
ମାଆ ଭାବିଥିଲା ଫେରିଲେ ପୁଅର
ଦେଖିବ ବା, ବରବେଶ !
ପଉଷୁ ପଉଷେ ବରଷ ପୂରିଲା
ଖବର ତ କିଛି ନାହିଁ,
ଦରିଆ ପାରେ ସେ ରେଙ୍ଗୁନ ଦେଶେ
ରହିଲା ସେ କାହିଁ ଯାଇ !
ବଡ଼ ଦୁର୍ଗୁଣ ଭୂଇଁ, ସ୍ତିରୀଏ ଶରୀର ଛୁଇଁ
ପୁରୁଷେ କରନ୍ତି ବଶ
ପାଶୋରାଇ ଜାତି ଦେଶ !
ମୋ ପିଲାତ ଆହା ବେଳ ତରାସ ଗୋ
ଡାହାଣୀ ଯୋଗିନୀ ଖାଇ
ହାବୁଡ଼େ ବା କାର ପଡ଼ିଗଲା ବୋଲି
ବୁଢ଼ୀ କରେ ହାଇ ହାଇ ।

ମିସ୍ତ୍ରୀ ଯୋଗିନୀ— ଝିଆ ଅବା ତାକୁ
ବିକି ଦେଲା କାହା ଘରେ,
ଭାବିଲେ ଏ କଥା ବୁଢ଼ୀର ନୟନୁ
ଝର ଝର ପାଣି ଝରେ ।
ବୋଇତେ ମଣିଷ-ଝିଆ, ସାଇବ ପେଟରେ ନିଆଁ
ଲଗାଇବାକୁ ବା, ପିଲା—
ମୋହର, ମାଉଁସ ହେଲା,
ମରଣ ହେଉ ଗୋ ବୋଲି ରାମ ବୋଉ
ରୋଦଇ ଆକୁଳ ସ୍ୱରେ,
ତଥାପି ନ ଆସେ ରେଙ୍ଗାମ ଚିଠି
କେଉଁ ଦିନ ତା'ର କରେ ।

(୨)

ଚୈତ୍ରେ ପଡ଼ିଛି ଦୋଳ-ପୂର୍ଣ୍ଣିମା
ଦୁଇକୋଶ ଦୂରେ ମେଳା
ମେଳାରୁ ବାହୁଡ଼ି ଚିଠି ଖଣ୍ଡେ କେ'
ରାମ-ବୋଉ ହାତେ ଦେଲା ।
ନାନା ଚିନ୍ତାରେ ବୁଢ଼ୀ— ହୃଦୟ ଯାଉଛି ବୁଡ଼ି,
କହିଲା ପଢ଼ ଗୋ ହାଁକି
ସତେ ବାପଧନ ବଁଚିଛି ମୋହର
ସବୁ ଠାକୁରାଣୀ-ଖେଳା,
ଚଉରାକୁ ବୁଢ଼ୀ ଜୁହାରି ଜୁହାରି
ଯାଚିଲା ତ୍ରିନାଥ-ମେଳା ।
ପଢ଼ିଲେ ମାଷ୍ଟ୍ରେ ରାମ ସାଥୀ ନଟ
ଲେଖିଛି ପ୍ରଣତି ବିହି,
''ମାଉସୀ ଜାଣିବା କାରଣେ ରାମର
ଚରିତ୍ର ଦେଲି ଲିହି ।
ଆସିଲା ଦିନରୁ ରାମ କର୍ମ ତାହାର ବାମ,
ଅତିସାର ସହ ଜ୍ୱର
ସଂଶୟ ଜୀବନର,
ବରଷରୁ ଏବେ ଛଅମାସ କାଳ
ଏହିପରି ଗଲା ବହି,

ପରାଣ ରହିଛି ଭାଗ୍ୟର କଥା
ଗରିବଙ୍କୁ ସାହା ବିହି ।
ଆସିବାର ମାସ ଦୁଇ ତିନି ପରେ
ମିସ୍ତ୍ରୀର ଦେଲା ଶୁଝି,
ତିନିଟାର କାମ ଏକାକୀ କରିଲା
ଘରର ଗରଜ ବୁଝି ।
ଶରମେ ସରିଲା ଦେହ ପଥ୍ୟରେ ସଞ୍ଚୟ
ସରିଛି, ଦେଶକୁ ଫେରି
ଯିବ ଏବେ ନାହିଁ ଡେରି ।
ଦେଇ ନାହୁଁ ଆମେ ଖବର ତୁମରେ
ମାତ, ଆଗପଛ ବୁଝି,
ବଡ଼ ହୀନିମାନେ ଫେରିବ ଏବେ ସେ
ହାତେ ତା'ର ନାହିଁ ପୁଁଜି ।''
ପତ୍ର ସରିଲା ମାଷ୍ଟ୍ରେ ଚାହିଁଲେ
ରାମିମା' ବୁଢ଼ୀର ମୁହେଁ
ବୁଢ଼ୀ ବି ଚାହିଁଲା ମାଷ୍ଟର ମୁଖେ
ଚାହିଁଲେ ଦୁହିଁକୁ ଦୁହେଁ ।

## ଘରପଣା

ଗୋକୁଳି ନାଏକ ଆମରି ଗାଆଁର ଜାତିରେ ଚଷା
ଚାଷ ଖଣ୍ଡି ବିନୁ ନଥିଲା ତାହାର ଆନ ବେବସା ।
ଭେଣ୍ଡିଆ ବୟସ ମୁହଁ ହସ ହସ, ମୁଣ୍ଡରେ ବାଳ
ପେଣ୍ଡା ହୋଇ ବନ୍ଧା; ବେକରେ ପିନ୍ଧିଛି ରସୁଣୀ ମାଳ ।
ଏକସରୀ ଲୋକ— କେଉଁ ବାପ ମା'ଙ୍କ ସରିଛି କାଳ,
ଅପୁତ୍ରିକା ରାଣ୍ଡ ଖୁଡ଼ୀ ଚଳାଇଛି ସଂସାର ତାର ।
ବାର ଦସ୍ତି ମାପେ ଜମି ବାରମାଣ, ତୋଟାଏ ଅଛି,
ଲକ୍ଷ୍ମୀ-ରୂପୀ ଦୁଇ ଗୋଧନେ, ଗୁହାଳ ଘର ପୂରିଛି ।
ମାଆଠାରୁ ବଳି ଖୁଡ଼ୀଙ୍କ ଆଦର; ହଳକୁ ଗଲେ
ଚାହିଁ ଆସୁଥିବେ ବାରିଆଡ଼େ ଯାଇ ଥରକୁ ଥରେ ।

ବନ୍ଧୁ ଘର ଗଲେ ଝୁରି ହେଉଥିବେ ଆସିବ କେବେ,
ସୁଖେ ଫେରିବାକୁ ଡାକୁଥିବେ ଗାଆଁ ନୀଳ-ମାଧବେ ।
ଅତିହିଁ ସୁଧାର ଗୋକୁଳି ନାଏକ ଗାଆଁଟି ଯାକେ,
ମୁହଁ ଫୁଲାଫୁଲି ହୋଇନାହିଁ ଦିନେ କାହାରି ସାଥେ ।
ବେଳ ବୁଡୁ ବୁଡୁ ରାନ୍ଧିଦିଏ ଖୁଡ଼ୀ ପଢ଼ଇ ତାଟି,
କେବେ ସେ ସାଇରେ ପଡ଼ିଶାଏ ଶୁଣି ନାହାନ୍ତି ପାଟି ।
ବାଇଶୀ ବରଷ ଭେଣ୍ଡା ଆସି ହେଲା ଦେଖୁ ଗୋକୁଳି,
ହାତକୁ ଦିହାତ ହୋଇପାରିଲାନି, ଭାବଇ ଖୁଡ଼ୀ ।
ଗ୍ରାମର ଯେ କେହି ପୁରୁଖା ମାଇପୀ ଦେଖିଲେ ତାରେ;
କଥା ହେଉ ହେଉ ମଙ୍ଗଳାକାଙ୍‌କ୍ଷିଣୀ ରୂପେ ତିଆରେ,
''ହଇଗୋ ଗୋକୁମା ! ଆଖି ବୁଜିଛକି ? ପଡୁନି ମନେ ?
ଗୋକୁଳି କି ଆଉ ପିଲାଟି ଅଛି ଗୋ ଦେଖିଲା ଜନେ ?''

ଭାଳିଲେ ଖୁଡ଼ୀମା ଭେଣ୍ଡା ହେଲା ପିଲା ସତକୁ ସତ
ବାଡୁଅ ରହିଲେ ମତେ ସିନା ଦୋଷ ଦେବ ଜଗତ !
ହେଲେ— ମିଳେ କାହିଁ ମନଲାଖି ତାର ଠିକଣା ପିଲା,
ଯହିଁ ଯିବ ପୁଣି, ପଚାରିବେ ନିକି ଥିଲା ନଥିଲା ।
ଏଇ ମାଘ ମାସେ ଚାରି ଯୋଗ ଅଛି ଶୁଣିଲେ ଖୁଡ଼ୀ,
ବରଷେ ନିଷ୍ଫଳା ତା'ପରେ, ଗଲେ ଏ ସୁଯୋଗ ହୁଡ଼ି ।
ଭାବିଲେ ମନରେ ପାଣିଫୋଟକାଏ ଜୀବନ ସିନା
କେ କହିପାରିବ କାଲିକି ଥିବି ମୁଁ ନଥିବି କି ନା ?
ଯାହାହେଉ ପଛେ ପିଲାକୁ ମୋହର କରିବି ବିଭା,
ସାହା ହୁଅ,ଦୁଧ— ଲିଆ ଦେବି, ବରୁଣେଇ ବୁଢ଼ୀମା !

ସାତ ପାଞ୍ଚ ଲୋକ କଥାରେ ଖୁଡ଼ୀମା କରିଲେ ସ୍ଥିର,
ପାଞ୍ଚମାଣ ଜମି, ଗୋଧନ ବିକିଲେ ବୁହାଇ ନୀର ।
ଆଖି ପୋଛିଦେଇ ଶୁଣିଲୁ ପଡ଼ିଶା ଆଗେ କହିଲେ,
କାଲି ପୁଣି ଜମି ମୋ ହାତେ ଆସିବ ଗୋକୁଳି ଥିଲେ ।
ଯଥା କାଳେ ଘରେ ବୋହୂଟି ଆସିଲା; ନଥିଲା ଝିଅ,
ହେଲେ କିସ ହେବ, ତମ୍ବା କାଠି ପରି ଜଳୁଛି ଦିହ ।
ବୋହୂର ପ୍ରଶଂସା ଖୁଡ଼ୀ-ମୁହେଁ ଆଉ ଧରଇ ନାହିଁ,
ରାନ୍ଧଣାରେ ତାର ସାଇ ପଡ଼ିଶାରେ ସରିସା କାହିଁ ?

ହେଲେ ଦେଖୁଁ ଦେଖୁଁ ନଅଣ୍ଡ ପଡ଼ିଲା ଆଖିରେ ଧରା,
ଜମି ସାତମାଣେ ବରଷକ କାହୁଁ ହୋଇବ ସରା ?
ଅଭାଗ୍ୟକୁ ପୁଣି ବିବାହ ବରଷ ପଡ଼ିଲା କାଳ,
ପେଟ-ପୋଷା ଆଉ ରାଜ-କର ପୁଣି ଝିଙ୍କିଲା ବାଳ ।
ଦେଖୁଁ ଦେଖୁଁ ପୁଣି ଖୁଡ଼ୀମା କୋଳରେ ଧଇଲେ ନାତି,
ତା ପାଇଁ ତ ପୁଣି ଖରଚ ରହିଛି ପାହିଲେ ରାତି ?
ଟାଣଟୁଣୁ ଆଉ ନସହି ଗୋକୁଳି ଘରେ ଜଣାଇ,
କୋଡ଼ିଏଟି ଟଙ୍କା ଆଣିଲା କରଜ ମୁଣ୍ଡ ନୁଆଇଁ ।
ଏଇପରି ଗଲା ଦୁଇଟି ବରଷ ଆପଣା ସୁଖେ,
ସାହୁକାର ଋଣ ଶୁଖାଇଛି ହସ ଗୋକୁଳି ମୁଖେ ।
ଉଚ୍ଚ ମୁଣ୍ଡ ତାର ଏଇ କେତେ ଦିନେ ଯାଇଛି ନଇଁ,
ଦରିଦ୍ରର ଆଉ କି ଗତି, ଧନୀର ନାତ ନ ସହି ?
ତୃତୀୟ ବରଷେ ସାହୁକାର ଯେବେ ବସି ଦୁଆରେ
ଅଣା ପାହି କଷି ହିସାବ ଚକର ବୁରୁଧି ହାରେ,
ଦିକୋଡ଼ି ସରିକି ଦେଣା ଦେଲା ଡେରି, ଗୋକୁଳି ଚାହେଁ
ଖୁଡ଼ୀ ମୁଖେ; ଖୁଡ଼ୀ ହାତ ବୁଲାଇଲେ ନାତିର ଦେହେ ।
କହି ପୋଛି ଖୁଡ଼ୀ ମହାଜନେ ମହ- ଲତ ଲଗାଇ
ଠାକୁରେ ଯାଚିଲେ ଭୋଗ, ସେ ଦିନର ଉଦ୍ଧାର ପାଇଁ ।

ହେଲେ, କେତେ ଦିନ ପାରିବେ ଏପରି ଠେଲି ବିପତ୍ତି,
ଘରେ ପୁଣି ଏଣେ ଚୁଲି ନାହିଁ ଜଳେ, କାନ୍ଦିଲେ ସତୀ !
ଧାଇରେ ବିଧାତା, ଯେତେ ଅବିଚାର ତୋହରି ହାତେ,
ଯେତେ ଦୁରୁଦଣ୍ଡ ଭାଙ୍ଗିପଡ଼େ ଖାଲି ଗରିବ ମାଥେ !
କୋଡ଼ି କୋଡ଼ି ଟଙ୍କା ଆଖି ଆଗେ ଫିଙ୍ଗି ଦିଅଁତି ଲୋକେ,
ଦୁଇ କୋଡ଼ି ପାଇଁ ମୋ ପିଲା କୁଟୁମ୍ବ ରହିବେ ଭୋକେ !
ଜନମ ଆଗୁଁ ଯେ କ୍ଷୀର ରଖି ଥାଇ ଜନନୀ ଥନେ,
ଏ ହୀନିମାନ ସେ ନୀରବେ କିପରି ଦେଖେ ନୟନେ ?
ମଣିଷ କରି ଏ ଗରିବ ଜନମ ଦେଲା କିପାଁଇ
ଦିନେ ହେଲେ ସୁଖ କିପରି, ପରାଣ ଜାଣିଲା ନାହିଁ !
ଭାଗ୍ୟବନ୍ତ ଜନେ ଚାଲୁଁ ସୁନାପଦ୍ମ ଫୁଟଇ ତଳେ,
ସେ ଭୋଗ କେ ମାଗେ— ସୁଖେ ଦୁଇ ପ୍ରାଣୀ ପାଆନ୍ତୁ ଜଳେ !

ଏଇ ଅନୁଗ୍ରହେ   ବିଧାତାର ସରି   ଯାଏ କି ଧନ ?
କି ସୁଖ ତାହାର   ଏଡ଼େ ହତଶିରୀ   କରି ଜୀବନ !

ସେ ଦିନ ସକାଳେ   ହଠାତ୍ ଗୋକୁଳି   ଖୁଡ଼ୀରେ ଡାକି
କହିଲା, "କେମନ୍ତେ   ମହାଜନେ କହ   ଚଳିବା ଫାଙ୍କି ?
ଘରେ ବସି ଆଉ,   ଲାଭ ନାହିଁ; ଏଇ   ପୂନିଅଁ ସରି
ଯାଉଛି ରେଙ୍ଗୁନ   ନିଜର ଏ ପୋଡ଼ା   କରମ ଧରି ।
ଅଛନ୍ତି ସାଥିରେ   ପାଞ୍ଚସାତ ଆଉ   ଗାଁଆର ଲୋକ
ବରଷକେ ପୁଣି   ଆସିବି ମୁଁ ଫେରି   ନକର ଶୋକ ।"

ଦେଖିଲେ ଖୁଡ଼ୀମା   ଅସ୍ତି ନାସ୍ତି ପାଇଁ   ନାହିଁଛି ବାଟ,
ଘରେ ଦାରିଦ୍ର୍ୟର,   ବାହାରେ ସାହୁର   ଲାଗିଛ ନାଟ ।
କଥା ଶୁଣି ଖାଲି   "ବାପ ମୋର"—   କହି କାନ୍ଦିଲେ ସତୀ,
ପଚିଶ ବରଷ   ଭେଣ୍ଡା, ମୁଣ୍ଡ ପୋତି   ବିକଳ ଅତି ।
ଛାଡ଼ିଲା ଗୋକୁଳି   ଗାଁଆ ତାର ସିନା   ସାଙ୍ଗ ଗହଳେ,
ମନ ତା' ରହିଲା   ଖୁଡ଼ୀ-ପୁଅ-ବୋହୂ   ସହିତେ ଘରେ ।
ଦିବସଟି କଟେ   ଆନ ବେଳେ ସିନା   ସାଥୀ ମେଳରେ,
ଏକୁଟିଆ ହେଲେ   ନୟନୁ ବିକଳେ   ଲୋତକ ଗଳେ ।
ଜନନୀରୁ ବଳି   ଖୁଡ଼ୀ ରଖି ଦୂରେ,   ଛାଡ଼ି ବାଳକ,
କିପରି ବିଦେଶେ   ଗୋକୁଳି ନାଏକ   କାଟେ କାଳକ ?
ଦୂର ସେ ବିଦେଶେ   ଏ ଶରୀର ଯଦି   ପଡ଼େ ବିପଦେ,
କିଏ ଆସି ପ୍ରାସ   ଘୁଞ୍ଚାଇବ, ହାତ   ଆଉଁଶି ପଦେ ?
ଘରେ ଭାତ ନାହିଁ   ତିନିପ୍ରାଣୀ ପଡ଼ି   ଥିବେ ଉପାଶେ,
କିଏ ଆଣି ଦେବ ?   ଗୋକୁଳି ତାଙ୍କର   ନାହିଁ ତ ପାଶେ ।
ଭେଣ୍ଡା ହେଲା, ଛାଡ଼ି   ନଥିଲା କେବେ   ସେ ଜନମ ମାଟି,
ଘର କଥା ମନେ   ପଡ଼ିଗଲେ ଛାତି   ଯାଉଛି ଫାଟି ।
ପ୍ରାଣହୀନ ମାଟି—   ନଡ଼ା-ଇଟା-ଗଡ଼ା   କୁଡ଼ିଆ ପୁଣି,
ବନ୍ଧୁଜନ ପରି   ଚିତ୍ତକୁ ଟାଣଇ,   ତାହାରେ ଗୁଣି ।

ଗୋକୁଳିର ମନ   ଉଚ୍ଛନ୍ନ ହୁଅଇ   ଫେରିବା ପାଇଁ,
ନୂଆ ଦେଶ ନୂଆ   ସୁଖ ଦେଖି ମନ   ଧରଇ ନାହିଁ ।
କାଲି ସେ ଚଢ଼ିବ   ବୋଇତରେ, କହି   ଗଲା ମିସ୍ତିରି,
ତା ଶୁଣି ମନରେ   ଦ୍ୱିଗୁଣ ପଡ଼ିଲେ   ବାଳକ, ସ୍ତିରୀ ।

ଗଣ୍ଡ ତାର ଓଦା କରିପକାଇଲା ନୟନ ନୀରେ,
ଗଣ୍ଡିରାଟି ମୁଣ୍ଡ ତଳେ ଦେଇ ଶୋଇ ପଡ଼ିଲା ଧୀରେ ।
ତହିଁ ଆର ଦିନ ମିସ୍ତ୍ରି ଆସି ଯେବେ କଲା ଗଣନା,
ନ ମିଳେ ଗୋକୁଳି; କାହିଁ ଗଲା ନାହିଁ ପଡ଼ଇ ଜଣା ।

ଗୋକୁଳି ଯିବାର ହେବ ଦିନା ଚାରି ଛାଡ଼ି ତା' ଘର,
ସେହି ଦିନୁଁ କେହି ଦେଖିନି ତା' ଟାଟି ମେଲା ହେବାର ।
ପିଲାପାଇଁ କଳେ ଫୁଟାଇବା ପାଇଁ ଲଗାଇ ଚୁଲି,
ବୋହୂ ଘରେ ବୋହୂ ଶାଶୁ ଶାଶୁ ଘରେ, ପାଟି ମୁଚୁଳି,
ଲୁହ ପୋଛି ପୋଛି ଡାକୁଛନ୍ତି ଖୁଡ଼ୀ ଦିଅଁ ଦେବତା,
''ଧୂଳି ଗୋଡ଼ ଧରି ମୋ ପିଲା କିପରି ଫେରି ଆସନ୍ତା !
ଜନମୁଁ ମୋ ପିଲା ଘର ଛାଡ଼ି କାହିଁ ଯାଇନି ଦୂରେ,
କାହା ଆଜ୍ଞା ମାନି ଦେହ ଭାଁଗିବ ମୋ' ପିଲା କା ପୁରେ !
ସପତ ପୁରୁଷ ଏଇ ଭୂଇଁ ଧରି କାଟିଲେ କାଳ,
ମୋରି ପିଲା ଏକା ପେଟ ପାଇଁ ହେଲା ଦରିଆ ପାର ।''
କାନ୍ଦି କାନ୍ଦି ଖୁଡ଼ୀ ଡାକୁଛନ୍ତି ଖାଲି ଦିଅଁ ଦେବତା,
''ଯେ ଗୋଡ଼େ ଯାଇଛି ସେଇ ଗୋଡ଼େ କେହ୍ନେ ଫେରିଆସନ୍ତା !''

ସତକୁ ସତ ଗୋ ପାଞ୍ଚଦିନ ଦିନ ହେଉଣୁ ରାତି,
ଜରୁ ଉଠି ଖୁଡ଼ୀ ଜଳାଉଁ ଚଉରା ମୂଳରେ ବତି;
ଆଗେ ଆସି ଉଭା ଦେଖିଲେ ଗୋକୁଳି ଧୂଳି ଚରଣେ,
ଟବତେ ନ ଆସେ ନିରେଖି ନୟନେ ଚାହିଁଲେ କ୍ଷଣେ ।
ବତି ଫିଙ୍ଗି ଦେଇ 'ମୋ ସଂଖାଳି' ବୋଲି ବୋହୂକୁ ଡାକି,
ଗୋକୁଳିର ଦେହ ଆଉଁଶି କୋଳେ ତା ଥୋଇଲେ ନାତି ।
ମହଲତ ଶେଷେ ସାହୁକାର ଯେବେ ଡାକିଲା ହାଁକି,
ଭିତରୁ ଖୁଡ଼ୀମା କହିଲେ ସେ ଦିନ ଉଚ୍ଚରେ ଡାକି;
''ନେଲେ ପଛେ ନିଅ ବାକୀ ସାତମାଣ ନକର ଘଟା,
ନଭୋଗୁ ମୋ ପିଲା ପାଞ୍ଚ ସାତ ପରି ଏ ହଟହଟା ।''

—

# ବିଲ-ଲକ୍ଷ୍ମୀ

ପଉଷ ଶେଷ, କଟା ସରିଛି ଧାନ,
ଉପରବେଳା, ହୋଇ ଆସେ ସାୟାହ୍ନ,
ପୁଅକୁ ସାଥି କରି    ଜୀଅନ୍ତା ଛାଇ ପରି,
ବିଲରେ ଧାନ ବାଁଧେ ଦୀନା ପଧାନ ।

ଦୂରରେ ଥାନେ ଥାନେ, ଲୋକ ଗହଳ,
ଦିଶୁଛି ଧାନ-କଟା ବଂଧା ଚହଳ,
ଲଦି ଶଗଡ଼େ କାହିଁ    କୃଷକ ନିଏ ବାହି
ପଛେ ତା' ପୁଅ ଝିଅ କରନ୍ତି ଗୋଳ ।

ଦୁଇଟି କିଆରୀରୁ ଯାଇଛି ଏକ,
ସାହୁ ନେଲା ସାଉଁଟି ଦେଖାଇ ଲେଖ,
ବାକୀ, ଏ ଚକେ ଭୂଇଁ    କେଉଁଥିକି ଆସଇ
ତଥାପି ଅଛି ଲାଗି ନୂଆଁଇ ବେକ ।

କେରାକୁ କେରା ପୁଅ ଆଣେ ଗୋଟାଇ
ପଧାନ ଛେକି ଛେକି ଦିଏ ସଜାଇ,
ପ୍ରାଣ-ଦୋସର ପରି,    ସେନେହେ ହାତ ମାରି,
ଉଠାଏ, ପୁଣି ତଳେ ଦିଏ ବିଛାଇ ।

ଛାତିଏ ହେଉଁ ଗଦା ସେନେହଭରେ,
ନଇଁ ପଡ଼େ ପଧାନ ସ୍ପର୍ଶ-ସୁଖରେ,
ସ୍ୱ-କର-ଜାତ ଲକ୍ଷ୍ମୀ    ଦେଖି ମୁଗ୍ଧ ତା ଆଖି,
ଥରକୁ ଥର ଧରେ ଧାନଗୁଚ୍ଛରେ ।

ଏକାଳେ ପୁଅ ଦୂରୁଁ କହିଲା ନଇଁ,
'ବାପା, ଶୁଣିଛୁ ? ତତେ ନାହିଁ ମୁଁ କହି,
ପିଆଦା ଆସିଲାଣି    ସାଙ୍ଗେ ପଠାଣ ଆଣି,
ଏଥର ନାହିଁ ଦେଲେ କିପରି ରହି ?''

ଗୁଳି ଖାଇଲା ପରି ହୋଇ ପଧାନ,
ଆକୁଳେ ଯାକି ଗଦା କରଇ ଧ୍ୟାନ,
'ତୁହି ମା ମୋ ଶରଣ    ମୋ'ପିଲାପିଲି ପ୍ରାଣ,
ତୋରାଣି ମନ୍ଦେ ବିନା ଗଲାଟି ଜାଣ ।

ବହିଲୁ ନାହିଁ ଦୟା ତିଳେ ତୁ ପ୍ରାଣେ
ଶରମ-ଫଳ ବହି ନେବେ ପଠାଣେ,
ଚାରି ଚାରିଟି ପେଟ ଧରି ଏ ଛଟପଟ
ସମ୍ଭଳା ଯିବ ସାରା ବର୍ଷ କି ଟାଣେ ?

ପେଟ ମୋ ପୂରିଯାଏ ଦେଖିଲେ ତତେ
ତୋର ମା ଦୟା ନାହିଁ ଜାଣିଚେ ଚିତ୍ତେ,
ଖରା ଟରା ସମ୍ଭାଳି କପାଳେ ଝାଳ ମାରି
ପିଠିରେ ନାହିଁ କନା, ତୋରାଣି ପେଟେ !'

ଦେଖାଇ ଏଣେ ଟାଣ, ପୁଅରେ ଭାଷେ
'ବିଡ଼ା ତୁ ଆଣ, ଜାଡ଼ ମାଡ଼ି ଯେ ଆସେ,
ଖଜଣା ଶୁଝା ଶୁଝି ହେବନି ବୁଝା ବୁଝି ?
ଏଠି ସେ କଥା କିପାଁ ମଥାରେ ପଶେ ?'

# ଗୋପ-ତର୍ପଣ

ଜୟ ହେ ଶାନ୍ତ, ସତ୍ୟର ପୁରୋହିତ
ସନ୍ୟାସୀ, ଋଷି, ଅବତାର-ପରହିତ ।
ଜୟ ହେ ଅଖିଳ ପତିତ ଜନର ବନ୍ଧୁ,
ଓଡ଼ିଆର ଅତି ଆପଣାର ଗୋପବନ୍ଧୁ । ୧।

ତୁମେ ସନ୍ୟାସୀ ପରି ରଚିଲ ବକୁଳ ବନ,
ଗାଇ କଣ୍ଠେ ସତ୍ୟଯୁଗର ଗାନ,
ପାଶେ ଯେ ଆସିଲେ ପୁରୁଷ ଭାଗ୍ୟବାନ,
କରିଲ ତାଙ୍କୁ ସଂଯମ-ଗରୀୟାନ ।
ତୁମରି କଣ୍ଠେ ମିଶାଇ କଣ୍ଠବାଣୀ
ସଭିଏଁ ଗାଇଲେ ମୁକ୍ତିର ଆହ୍ୱାନୀ । ୨।

ତୁମେ ବାହାରି ପଡ଼ିଲ ଭିକ୍ଷାର ଝୁଲି ଧରି,
ଘାଟେ ଘାଟେ ନେଇ ଭିଡ଼ିଲ ତୁମର ତରୀ
ଯାହା ପାଖେ ଗଲ ସେ ଦେଲା ଅଜାଡ଼ି କାନି

ମହା ଭିଖାରୀର ମହା ଇଙ୍ଗିତ ମାନି,
ସକଳେ କହିଲେ ''ଆସ ସନ୍ନ୍ୟାସୀ ଆସ,
ପରଶେ ଫେରାଅ ହତଭାଗ୍ୟର ପ୍ରାସ ।'' ୩।

ତୁମେ ଦେଶ ଦେଶ ବୁଲି ଫେରିଛ ଜାତିର ଘରେ
ଭୋକୀରେ ଦେବାକୁ ଅନ୍ନ ଆପଣା କରେ,
ପାଇଲେ ଯେ ଗଲେ ସାନନ୍ଦେ ଘରେ ଫେରି
ଅଭୁକ୍ତ ଯେତେ ରୋଦିଲେ ନିକଟେ ଘେରି,
ତାଙ୍କ ପାଇଁରେ ବାଢ଼ିଲ ଶ୍ରେଷ୍ଠ ଦାନ
ଦିଓଟି ଅଶ୍ରୁ, ଗୋଟିଏ ଆଲିଙ୍ଗନ । ୪।

କରୁଣ କୋମଳ ଦିଓଟି ବଚନ କହି
ଦେଲ ଦୁଃଖୀର ବୁକୁର ଦୈନ୍ୟ ଦହି ।
ତୁମେ ସନ୍ନ୍ୟାସୀ, ତୁମେ ଲକ୍ଷ୍ମୀଛଡ଼ାର ବନ୍ଧୁ
ଓଡ଼ିଆ ଜାତିର ଦରିଦ୍ର ଗୋପବନ୍ଧୁ । ୫।

ଗରବିର କଥା ଅନ୍ତରଗତେ ଜାଣି
ଅନ୍ତରତମେ ଡାକିଲ ବୁହାଇ ପାଣି ।
ପରପାଇଁ ନିଜ ଦେବତାରେ ଅଛ ଡାକି
ବାବାଜିର ଆଉ କି ବାସନା ଥିଲା ବାକି ?
ବିନ୍ଦୁ ବିନ୍ଦୁ ଶୋଣିତ ଢାଳିଛ ସୁଖେ
ଶାନ୍ତି ଦେବାକୁ ଦୀନ ଦରିଦ୍ର ବୁକେ ।
ବୁଝିବାକୁ ଯାଇ ସକଳ ବୁକୁର ବ୍ୟଥା,
ସକଳର ପାଇଁ ଦେବାକୁ ବସିଲ ମଥା । ୬।

ଦରିଦ୍ର ପାଇଁ କରିବାରୁ ସବୁ ଦାନ
ସବୁରିର ବୁକେ ପାଇଅଛ ଆଜି ଥାନ ।
ନଇଁବାକୁ ଯାଇ ବିରାଟ ହୋଇଛ ଆପେ,
ପୁଣ୍ୟ ଆଣିଛ ଘୁଞ୍ଚାଇ ଅଭିଶାପେ ।
ପତିତପାବନ ହୋଇଛ ପତିତେ ବରି,
ରାଜା ହୋଇଅଛ ଭିକ୍ଷାର ଝୁଲି ଧରି,
ଜୀବନ ଚାଲିଲ ସକଳ ଅନ୍ତରାଳେ
କୋଟି ଅନ୍ତର ତୁମରି ଜୀବନ ଡାଳେ,

ସକଳର ସୁଖେ ଲୁଚାଇ ଆପଣା ବ୍ୟଥା,
ମାଡ଼ି ବସିଅଛ ସକଳ ଜନର ମଥା । ୭।

ସନ୍ନ୍ୟାସୀ ଆଜି ସାରିଛି ତୀର୍ଥାଟନ,
ଶେଷହୋଇଅଛି ଭିକ୍ଷାର ବିତରଣ,
ଗରୁଡ଼ ପାଇଛି ସୁଧାର ସ୍ୱର୍ଣ୍ଣଝରି
କେଉଁ ବଳବାନ ରଖିବ ତାହାରେ ଧରି ?
ଯାଅ ବୀର ଯାଅ, ଧର ହେ ତୁମର ପଥ,
ଅପେକ୍ଷା କରେ ଦୁଆରେ ଦେବତା-ରଥ,
ଆପଣାର୍ ଘରେ ଏତେ ଦିନେ ଯିବ ଫେରି,
ଦେବତା ନାଚିବେ ଆନନ୍ଦେ ପାଶେ ଘେରି,
ଶୁଷ୍କ ମୁଖ ଉଜଳି ଉଠିବ ଧୀରେ,
କିନ୍ନରୀ ଆସି ପୋଛିବେ ଅଶ୍ରୁ ନୀରେ,
ତର ତର ହୋଇ ବହିବ ମନ୍ଦାକିନୀ,
ତା ତୀରେ ଚାଲିବ ତୁମ୍ଭର ଅନୀକିନୀ,
ମନେ କି ପଡ଼ିବ ସେବେ ଅମୃତପାୟୀ,
ରତ୍ନଚିରାରେ ବଲ୍କଲ ବନର ଛାଇ ? ୮।

## ଗୋପ-ପ୍ରୟାଣ

(୧)

ମହାବୀର ମହାପ୍ରୟାଣ ରଚିଲା ଆଜି
ତା' ମହାଜାତିର ଗର୍ବ ଗଲା ଯେ ଭାଜି ।
ଅନୀକିନୀ ତା'ର ସ୍ତମ୍ଭିତେ ଅଛି ରହି
ପ୍ରତି କରେ କରେ ପତାକା ଯାଇଛି ନଇଁ,
ପ୍ରତି ହିୟା ଘେରି ଘୋଟିଛି ଅନ୍ଧକାର
ଅଧରେ କେବଳ ତା'ରି ନାମ ଉଚ୍ଚାର
ଘରେ ଘରେ ଉଠେ କ୍ରନ୍ଦନ-ରୋଳ ବାଜି
ବିରାଟ ଓଡ଼ିଆ ଜାତି ମଥାମଣି ଭୂତଳେ ଖସିଲା ଆଜି ।

(୨)

ନଗରେ ନଗରେ ନାଗରିକେ ଆଜି
ନୟନେ ଅଶ୍ରୁ ଭରି,

ଆସ ହେ ସକଳେ ରାଜପଥ ପରେ
ଚରଣ ନଗ୍ନ କରି ।
ମଥା ନତ କରି ସମ୍ମାନ କର
ସ୍ୱର୍ଗତ ମହାଜନେ,
ତୁମ ମେଳେ କହ ଅଛି କିଏ ଆଉ
ତାହା ପରି ଆଉ ଜଣେ ?
ରାଜା ଆସ, ଆସ ଧନିକ, ବଣିକ
ସୁଭଗ ସୌଦାଗର,
ଆସ ଋତ୍ୱିକ, କୃଷକ, କ୍ଷତ୍ରୀ,
ଶବ ସାଥେ ତା'ର ଚଳ ।
ବ୍ରାହ୍ମଣ ଗାଅ ମରଣ-ମନ୍ତ୍ର,
ଜନତା ଧର ହେ ପାଳି,
ଜନପଦବାସୀ ଖୋଳ କରତାଳେ
ଗମ୍ଭୀରେ ଦିଅ ତାଳି ।
କୁଳବଧୂ ସବୁ ଠୁଳ ହୁଅ ଆସି
ଗବାକ୍ଷ-ପୁଡ଼ା ଧରି,
ତା'ର ପ୍ରାଣ-ପ୍ରିୟ ମାଟିପରେ ତବ
ଅଶ୍ରୁ ପଡୁ ହେ ଝରି ।
ଆସ ସନାତନୀ, ଆସ ଖ୍ରୀଷ୍ଟାନ,
ଆସ ହେ ମୁସଲମାନ
ଜାତିର ରାଜାକୁ କ୍ଷୁଦ୍ରତା ଭୁଲି
କର ଥରେ ସମ୍ମାନ ।
ଧର୍ମ ଭୁଲି ସେ ଦରିଦ୍ର ମୁଖେ
ଅନ୍ନ ଦେଇଛି ଆଣି,
ସକଳ ଦୁଖକୁ ନିଜ ଦୁଖ କରି
ଚକ୍ଷୁଁ ଦେଇଛି ପାଣି ।
ସେ ଥିଲା କୋଟିଏ ଦରିଦ୍ର ମେଳେ
ଦରିଦ୍ର-ନାରାୟଣ,
ତାହାଠାରୁ ବଳି ଅଛି କହ କିଏ ?
ତୁମର ପୂଜ୍ୟଜନ ?

ଶବ ପଛେ ତା'ର କୋଟି ମସ୍ତକ
ନୁଆଇଁ ଓଡ଼ିଆ ଜାତି,
ସମ୍ମାନ କର ତା'ରେ ଯେ କରିଲା
ପୁଣ୍ୟ ତୋହୋର ମାଟି ।
ବାଜୁ ଖୋଳତାଳ, ବରବଧୂ ସବୁ
ତେଜ ହେ ଅଶ୍ରୁନୀର,
ମରଣ ଜାଣୁ ହେ, କେଡ଼େ ପ୍ରିୟ ଥିଲେ
ଆମର କର୍ମବୀର ।

(୩)

ଠିଆ ରହ ଏବେ ନିଖିଳ ଓଡ଼ିଆ ଜାତି
ସେନାପତି ତୋର ଚାଲିଗଲା ପରା
ଶୂନ୍ୟ କରି ଏ ମାଟି ।
ମରଣେ ପଚାର କି ମନ୍ତ୍ର ଗାଇ
ଘେନିଗଲା ପ୍ରିୟଜନ,
କିପାଇଁ ନେଲା ସେ ? ନିଷ୍ଠୁରେ ତାକୁ
ପଚାର ଲକ୍ଷଜନ !
ଜଣକର ନୁହ, ଦେଢ଼କୋଟି ଲୋକ
ହୃଦୟ-ଜ୍ୟୋତ୍ସ୍ନା ତା'ରେ-
ଘେନିଗଲା, ଏକ ନିଖିଳ ଜାତିରେ
ଭସାଇ ନିର୍ବଚାରେ !
ଦେଢ଼କୋଟି ଲୋକ ନୟନେ ମରଣ
ତିକ୍ତ ବିଳାପ ଚାହିଁ
ଅନୁତାପ କରୁ ନିର୍ଦ୍ଦୟ ତା'ର
ଚପଳ-ବୁଦ୍ଧି ପାଇଁ ।
ଯଦିରେ ଓଡ଼ିଆ ପ୍ରିୟଜନ ପାଇଁ
ବିଳାପ କରିବା ଜାଣ
ଅତି ପ୍ରିୟଜନ ବିରହରେ ଆଜି
ଫାଟୁ ତୋ ରୁଦ୍ଧ ପ୍ରାଣ ।
କେଦାରେ କୃଷକ ଠିଆ ହୁଅ ଶୁଣ
କ୍ରନ୍ଦନ ଗଗନରେ,

କୃଷକର ସଖା ଚାଲି ଯେ ଗଲାଣି,
ହାହାକାର ଘରେ ଘରେ ।
ବ୍ରାହ୍ମଣ ଆଜି ତେଜି ଆସ ତବ
ଦେଉଳ ଅନ୍ଧକାର,
ଦେବତା ଯେ ଏଇ ଚାଲିଗଲା ପଥେ,
ଅର୍ଚ୍ଚନା କର କା'ର ।
ଯିଏ ଯହିଁ ଅଛ ପଥେ ଠିଆ ହୁଅ
ନିଖିଳ ଓଡ଼ିଆ ଜାତି,
ଚାହଁ ସେନାପତି କାହିଁ ଗଲା ତବ,
ଶୂନ୍ୟ କରି ଏ ମାଟି ।

(୪)

ସେନାପତି କିପାଁ ନୁଆଁଇଲା ତରବାରି ?
ପ୍ରତିଜ୍ଞା ତାର ଶେଷ ନ କରି ସେ
ହେଲା ଗୃହ ଅଭିସାରୀ ।
ଦେଶେ ତ ଲିଭିନି ଚିରଦିନ ଲାଗି
ଅନ୍ନର ହାହାକାର,
ସେ କିପାଁ ଚଳିଲା ନ କରି ତାହାର
ସମୁଚିତ ପ୍ରତିକାର ?
ଓଡ଼ିଆ ଆହୁରି ଦେଶେ ଦେଶେ ପାଏ
ଅଧମର ଅପମାନ,
ଦେଢ଼କୋଟି ଲାଗି ଦେଶେ ଦେଶେ ବୁଲି
ଆଣିବ କେ ସମ୍ମାନ ?
ଦେଢ଼କୋଟି ମେଳେ ଗୋଟିଏ ତ ତାକୁ
ବାଛିଥିଲୁ ସାର କରି,
ସବୁ ମାୟା କାଟି ଚିରଦିନ ଲାଗି
ସେହି ପୁଣି ଗଲା ଚଳି ।
କାହାକୁ ଚାହିଁଲା ନାହିଁ ନିଷ୍ଠୁର,
ରହିଲା ତାହାର ଜାତି,
ରହିଲା ତାହାର ପ୍ରିୟ ବନ-ବିଲ,
ରହିଲା ତାହାର ମାଟି ।

ଆମ ଲାଗି ପରା କଥାକେ କଥାକେ
ଲୁହ ବୋହିଯାଏ ତା'ର,
ପାଷାଣ ପରି ସେ ଦେଖୁଛି କିପରି
ଆମର ଅଶ୍ରୁଧାର !
ଦେଢ଼କୋଟି ଲୋକେ ଭଲ ପାଉଥିଲେ,
ପରାଣରୁ ବଳି ପରା,
ସକଳେ କରିଲା ଆଶ୍ରୟହୀନ
ସହସା ତେଜି ଏ ଧରା !
ତାହା ଇଙ୍ଗିତେ ତିନିକୋଟି ଆଖି
ଚାହିଁଥାଏ ଅହରହ,
ସେ ତ ଗଲା ଚାଲି, ମୂଢ଼ ଜନତାରେ
ଚଳାଇବ କିଏ କହ ?
ଦେଶ ଦେଶ ବୁଲି ଆଣୁଥିଲା ଘରେ
ଅନ୍ନ ଆମରି ପାଇଁ,
ବୁଭୁକ୍ଷୁ ସବୁ ତା ବିନା କି ହେବୁ,
ସେ କଥା ବୁଝିଲା ନାହିଁ ?
ଏଇ ମନେ ଥିଲା ତେବେ କିପାଁ କହ
ଏତେ ଲୀଳା ଥିଲା କରି ?
ପ୍ରିୟଜନ ପରି ଟିକିଏ ବାଧିଲେ
ଅଶ୍ରୁ ପଡ଼ିବା ଝରି !
ସେ ସବୁ ଦେଇଣ ବିରଦ୍ରତର
କରିଛି ଲକ୍ଷଜନେ,
ସେ କଥା ସେ ଜାଣେ ? ଜାତି ମରିଯାଏ
ଜଣକର ଏ ମରଣେ !
କିପାଁ ଚାଲିଗଲ ଆହେ ପ୍ରିୟତମ,
ନିଖିଳ ଚିତ୍ତହାରୀ,
ତୁମ ଗୁଣଯାକ ଗୁଣି ହୋଇ ମନେ
ବେଦନା ଉଠୁଛି ଭରି !

(୫)

ଜଗନ୍ନାଥର ସିଂହଦୁଆରେ
କିଏ ଅଛ ପ୍ରତିହାରୀ

ପଥ ଛାଡ଼ିଦିଅ ଯାଉଛି ଦେବତା-
ଶ୍ରେଷ୍ଠ ସେ ପୂଜାହାରୀ ।
ଗରୁଡ଼ର ପଛେ କେ ଅଛ ଭକ୍ତ
ଆଡ଼ ହୋଇଯାଅ ଭାଇ,
ଭକ୍ତର ରାଜା ଆସୁଅଛି ଘରା
ଦେବତା ପୂଜିବା ପାଇଁ ।
ଧାର୍ମିକ ସବୁ ନିଜ ସୁଖ ଖାଲି
ଦେବତାରେ ଅଛ ମାଗି,
ପର ସୁଖ ପାଇଁ ସେ ଡାକିଛି ତା'ର
ଦେବତା ରାତ୍ରି ଜାଗି ।
ଭାଇ ପଡ଼ୋଶୀରେ ମମତା ଦେଇ ସେ
ପୂଜିଲା ତା ଭଗବାନ,
ଦେଢ଼କୋଟି ଲୋକ ମଙ୍ଗଳ ଲାଗି
ପୂଜିଛି ତା ନାରାୟଣ ।
ବାଟ ଛାଡ଼ ତାକୁ, ଦେବତାର ପଦେ
ଯାଉ ତା ଆତ୍ମା ମିଶି,
ରତ୍ନ-ବେଦୀରୁ ଦେଖୁ ସେ ତାହାର
ଜାତି ଭାଇ ଦିବା ନିଶି ।
ସେହି ବେଦୀ ତଳୁ ଆଶିଷ ତାହାର
ଅମୃତ ସମ ଝରି,
ବହିଯିବ; ତାହା ଉତ୍କଳଜନେ
ନେବେ ଅଞ୍ଜଳି ଭରି ।
ପତିତପାବନ ବାନା ଯୁଗେ ଯୁଗେ
ଶରଣ ଉତ୍କଳର,
ସେହି ବାନାତଳେ ଉତ୍କଳ-ମଣି
ଜଳୁଥାଉ ଭାସ୍ୱର ।
ପିତିତପାବନ ଦର୍ଶନ ବେଳେ
ନିଖିଳ ଓଡ଼ିଆ ଜାତି,
ବାଇଶି ପାହାଚେ ପାଇବ ପତିତ—
ବନ୍ଧୁ ଚରଣ ମାଟି ।

(୬)

ହେ କବି, ହେ ଋଷି, ବାଗ୍ମି ହେ ତବ
ଚରଣେ ନମସ୍କାର,
ଯେ ପଥେ ଯାଇଛ ଏଇ ମାଥେ ପଡୁ
ପବିତ୍ର ରେଣୁ ତା'ର ।
ପୁରୁଷୋତ୍ତମ, ତୁମ ଲାଗି ଆମେ
ଧନ ହୋଇଛୁ ପରା,
ମରଣେ ତୁମର ତେଣୁ ହେ ବିଳପେ
ଆଜି ଉତ୍କଳ-ଧରା !
ତଥାପି ତୁମର ମୃତ୍ୟୁ କି ଅଛି ?
ତୁମେ ଯେ ମୃତ୍ୟୁଞ୍ଜୟୀ,
ଗୋଟିଏ ଯା ଥିଲ ମରଣେ ଜନ୍ମ
ଲଭିଛ କୋଟିଏ ହୋଇ ।
ଶ୍ମଶାନ ତବ ଚିତାନଳ ଧରି
ଧନ୍ୟ ଧନ୍ୟ କହେ,
ମହାକାଳ ତବ ନାମ ଶିରେ ଧରି
ପୁଲକିତ ହୋଇ ବହେ ।
ଲକ୍ଷ୍ୟଭ୍ରଷ୍ଟ ଦେବତା ଭାଗ୍ୟେ,
ଖସି ଆସି ଧରା ପରେ
କର୍ମେ ବଚନେ ବର୍ଣ୍ଣନ କଲ
ଅମୃତ ଜୀବନରେ ।
ଚିର ଦରିଦ୍ର ଆମେ ଆଉ ପାଇଁ
ବସିଥିଲୁଁ ହାତ ପାତି,
ନିଷ୍ଠୁର ତୁମେ ହତାଶ କରିଲ,
କିପାଁଇ ଛାଡ଼ି ଏ ମାଟି ?

—

## ସ୍ୱଭାବକବି ଗୋପାଳକୃଷ୍ଣ

ସତୃଷ୍ଣ ହୋଇ ମୁଁ ପିଏ ହେ ଗୋପାଳକୃଷ୍ଣ
ନିତ୍ୟ ତବ କାବ୍ୟ-ସୁଧା; ଥର ଥର କରି
କେତେ ମୁଁ ପିଇଲି; କିନ୍ତୁ ତବ ରାଧା-କୃଷ୍ଣେ
ନିଅନ୍ତି ପୁଣି ହେ କବି, ଚିତ୍ତ ମୋର ଧରି ।୧।

ତତ୍ୱର ଉଷରେ ପଡ଼ି ରାଧାକୃଷ୍ଣ ଗୀତି
ଆଉ କେତେ କବି ହାତେ ହରାଇଛି ରସ,
ତୁମେ କିନ୍ତୁ ଗାଇ ଅଛ ଚିର ସେହି ପ୍ରୀତି
ଏ ଦେହେ ତରୁଣ ଯା'ର ପାଆନ୍ତି ପରଶ ।୨।

କେତେ ଭାବେ କବି ତୁମ୍ଭେ ପ୍ରେମିକ-ହୃଦୟ,
ପ୍ରେମିକାର ଅନୁରାଗ, ବ୍ୟଥା, ଅଭିମାନ,
ଆଶଙ୍କା, ବିଚ୍ଛେଦ ତଳୁ ଆନନ୍ଦ ଉଦୟ;
ଆଙ୍କିଛ ନିପୁଣେ,-ଦେଖି ମୁଗ୍ଧ ହୁଏ ପ୍ରାଣ ।୩।

ଦେଇଅଛ କବି ନିଜ ସତ୍ୟ ଅନୁଭବ
ତେଣୁ ହେ ଦରଦୀ ମୋରେ ପ୍ରିୟ କାବ୍ୟ ତବ ।୪।

## ରବୀନ୍ଦ୍ରନାଥ

କ୍ଷଣିକ-ବିମୂଢ଼ ବଣିକ ଯୁଗରେ ହେ ଚାରଣ ଏସିଆର
ଶୁଣାଇଛ ତୁମେ ଚିର, ସନାତନ ସତ୍ୟର ସମାଚାର ।
ତବ ଲେଖନୀରେ ବହୁ ଯୁଗ ପରେ ଫୁଟିଅଛି ସେହି ବାଣୀ
ଶତଦ୍ରୁ ତଟେ ଋଷି ଓଠ ପୁଟେ ଉଠିଥିଲା ଯା' ଉଜାଣି ।

ନବ ଋକ୍-ଋଷି ହେ ବାଣୀ-ବିଳାସୀ, ନବ ଯୁଗ ବୀଣା ସୁରେ
ପୂତ ତପୋବନ ରଚିଗଲ ତୁମେ ମାନବ ମାନସ କୂଳେ ।
ଆଉ ଯେତେ କବି ଆଁକିଛନ୍ତି ଛବି ସିନା ଦେଖା-ଜଗତର
ତୁମେ ତ ଆଁକିଛ ହେ ବର ସ୍ରଷ୍ଟା, ଅଦେଖା-ଅଜ୍ଞାତର ।

ପ୍ରାଣୀ ଜୀବନର କରମ ବାହାରେ ମାନବ ଖୋଜିଛି ଯାହା,
ପାଏ ସେ ପରାଣେ ଥରେଥରେ ଯା'ର କେବଳ ମଧୁର ଛାୟା ।

ତୁମେ କବିତାରେ ଜୀବନେ ଓ ଗାନେ ଦେଲ ମଧୁ ପରିଗ୍ରହ,
ଚିର ରସାତୁର ଧରଣୀରେ ତେଣୁ ଶୁଭେ ତବ ଜୟ ଜୟ ।

ମହାକବି, ଅନୁଭବିଛ ତ ଧରା-ପରାସ ମାନବ ହାତେ
ଦେବତାର ବ୍ୟଥା ଶଠତା-ଦୃପ୍ତ ସଇତାନ ଅସି-ଘାତେ ।
ସେଇ ସେ ନିଠୁର ସମର ଚାଲିଛି ପୁଣି ପଶୁଜୟ ଧରି
ଦୀନ, ବଳହୀନ ଦିଶୁଛି ଧରାରୁ ଲୀନ ହୋଇଗଲା ପରି ।

ତୁମେ ଥିଲ କବି, ଆଣୁଥିଲ କିଛି ନରେ ଦେବତାର ଆଶା;
କିଏ ତୁମ ପରେ ପୀଡିତ ଧରାରେ କହିବ ମୁକ୍ତି ଭାଷା ?

## ତଅପୋଇ-ବିଳାପ

(୧)

କହ ମା'ମଙ୍ଗଳା, ଦିନୁ ଦିନ କେତେ, କାନ୍ଦିବି ଆଉ
ବରଷ ସରିଲା ଭାଇମାନେ ମୋର ଆସିଲେ କାହୁଁ ?
କେତେ ଶ'ବୋଇତ ଭାସି ନ ଆସୁଛି ଏ ନଈପରେ
ମୋ ଭାଇ-ବୋଇତ ଆସିଲା ନାହିଁ ତ ଭାସି ଏ ଜଳେ ।
କେଉଁ ଦରିଆରେ, କେଉଁ ପାଟଣାରେ ରହିଲେ ଭାଇ
କି ହେଲା ତାଙ୍କର କିଛି ହେଲେ ମୁଁ ତ ଜାଣିଲି ନାହିଁ ।
କେତେ ପାଟଣାରୁ ବୋଇତ ଆସଇ ଲାଗଇ ଘାଟେ
ଭଉଣୀଏ ଆସି ବନ୍ଦାଇ ନିଅନ୍ତି ଭାଇଙ୍କି ବାଟେ ।
ଗଲାବେଳେ ନନା- ତିନିଙ୍କି ମୁଁ କହି- ଥିଲି ସରାଗେ
'ଭାଉଜଙ୍କୁ ଠେଲି ମୁଁ ତୁମ୍ଭଙ୍କୁ ନନା, ବନ୍ଦିବି ଆଗେ' ।
ତିନି ଜଣ ଯାକ ଘେରି ମତେ ହସି ଚାହିଁଲେ ଖାଲି
ବଡ଼ ବୋହୂ ଥାଇ ଉପରୁ ମାରିଲା ଥଟାରେ ତାଳି ।
ବଡ଼ ନନା ମୋର ହାତକୁ ଧରିଲେ ଯାକିଲେ ବୁକେ
ଲୁହ ଧାର ଧାର ବହିଲା ମୋ'ସାନ ନନାଙ୍କ ମୁଖେ ।
କଇଁ କଇଁ କାନ୍ଦି ବଡ଼ନନା ବୁକେ ପଡ଼ିଲି ଢଳି
ତିନିଭାଇଯାକ ପୋଛୁଥାଁତି ଲୁହ ଜନନୀପରି ।
ତାଙ୍କ ପାଦ ଧୋଇ ପବିତ୍ର ମୁଁ କରି- ଥାଁତି ଏ ହାତ
ଚାହିଁ ଚାହିଁ ତାଙ୍କ ବୋଇତ ଛୁଇଁଲା ନାହିଁ ଏ ଘାଟ ।
କେ ଭାଇ ଆଣିଛି ଭଉଣୀ ପାଇଁକି ମୁକୁତା ହାର

ଯବ ଦ୍ୱୀପୁଁ ନୀଳ- ଶାଢ଼ୀ ଆଣିଅଛି ଭାଇ କାହାର ।
ମୋ'ର କିଗୋ ଭାଇ ନାହାଁତି ?ମୋର କି ନାହିଁ ଗୋ ମନ ?
ମନ ମାରି ସିନା ଦେଖୁଛି ମୁଁ ତାଙ୍କ ବେଶ-ଭୂଷଣ ।
ତିନିଭାଇ ମୋର କେହି ହେଲେ ଜଣେ ଫେରିଲେ ଦେଶେ
ନଗର-ଯାକର ଝିଅ ଚାହୁଁଥାନ୍ତେ ମୋହରି ବେଶେ ।
ତୁଲିକି ଯାଉ ସେ ବସନ-ଭୂଷଣ; ମାଆ ମଙ୍ଗଳା,
ତିନିଜଣ-ଯାକ ସୁଖେ ଖାଲି ଫେରି ଆସନ୍ତୁଭଲା ।
ପାଣି କାଢ଼ି ତିନି- ଜଣଙ୍କୁ ଗାଧୋଇ ଦିଅନ୍ତି ହାତେ
ତିଳକ-କୋଥଳି ପାଟ-ଯଥା ଥୋଇ ଦିଅନ୍ତି ପାଖେ ।
ଏକାଠି ବସାଇ ତିନିଙ୍କୁ ପରଷି ଦିଅନ୍ତି ଭାତ
ସେଇତିକେ ମୋର ଜୀବନର ସୁଖ ସରନ୍ତା, ମାତ ।
ହେ ମାଆ ମଙ୍ଗଳା କେତେ ମୁଁ ଝୁରିବି, କହଲୋ ଆଉ
ଲାଗୁନି ତ ମତେ ଦେଖିବି ତାଙ୍କୁ ଏ ଜୀବନେ ଥାଉ ।
ଆସିବେନି ନନା ନ ଦେଖି ଆଖିରେ, ମରିବି ଠୁଳେ
ମଲେ ଛଟପଟେ ନନା ତାହା ନାହିଁ- ଜାଣିବେ ଦୂରେ ।
ନିତି ଯା'ର ସୁଖ ପାଇଁ ତିନି ଭାଇ. ହୁଅନ୍ତି ଛିଡ଼ା
ମାଆ ମଙ୍ଗଳାଲୋ, ତା ଭାଗ୍ୟେ ପୁଣି ଏ ମରଣ ଥିଲା ।

(୨)

ଚଣ୍ଡାଳୁଣୀ କିପାଁ କଟାଳ କରିଲି ବାପାଙ୍କୁ ଧରି
ସୁନାର କୁଲେଇ ରୂପା ଚାନ୍ଦ ମତେ ଦିଅ ହେ କରି ।
ଜାଣି କି ଥିଲି ମୁଁ ଫଳ ତା'ର ଏତେ- ସରିକି ଯିବ
ସାତ ବରଷର ବାଳିକା ସେ କଥା କାହୁଁ ଜାଣିବ ?
ବ୍ରାହ୍ମଣୀ କି ପାଞ୍ଚେ କେଉଁ ଅଭିଶାପେ ଦେଲା ମତାଇ
ସୁନାର କୁଲେଇ ପାଇଁକି ବାପାଙ୍କୁ ଧଇଲି ଯାଇ ।
ଚମକିଲେ ବାପା,- 'ଅଲକ୍ଷଣୀ ମଢେ କହୁ କି କଥା,
ସୁନାରେ କେଉଁଠି କୁଲେଇ ହୁଏ ଲୋ କରୁଛୁ ହଟା ?
ଲକ୍ଷ୍ମୀ ସାଆନ୍ତାଣୀ ବିଜେ କରିଥାନ୍ତି ସୁନାରେ ପରା
ତାକୁ ତେଣୁ ପୂଜା; ଦେଖିଛୁ-କି ଘରେ ସୁନାର ବଳା ?
ଦେହଯାକ ପଛେ ମଣ୍ଡି ହେବେ ନାରୀ ସୁନା ଭୂଷଣେ
ଲକ୍ଷ୍ମୀରାଗ ହେବେ ବୋଲି ନ ନାଆଁତି କେବେ ଚରଣେ ।
ସେ ସୁନାରେ ପୁଣି କୁଲେଇ କରି ତୁ ଖେଳିବୁ ଧୂଳି
ଲକ୍ଷ୍ମୀ ରୋଷ ହେବେ; ମାୟାରେ ଯିବ ଏ ସଂପଦ ଉଡ଼ି ।'

ମାନିଲାନି ମନ, ଭାବିଲି ଏ ଖାଲି ଭାଣ୍ଡିବା ବାଟ
ତିନି ଭାଈ ଆଗେ କାନ୍ଦି, ସାରା ଘର କରିଲି ହାଟ ।
ବଡ଼ ଦୁଇ ନନା ମିଛରେ ଦି'ପଦ କହିଲେ ରାଗି
ସାନ ନନା ମୋର ଉପାସ ରହିଲେ ମୋ-ଛାର ଲାଗି ।
ବଡ଼ ଗୋଳ ହେଲା ବୋଉ ଯାଇ ବାପା- ଆଗେ କହିଲା
ବାପା ନାହିଁ-କରୁ ବଡ଼ ନନା ବଣି- ଆରେ ବୋଇଲା ।
ସାତ ଦିନେ ସୁନା- କୁଲେଇ ଧରି ମୁଁ ଖେଳିଲି ମାଟି
ସେଇ ସେ ବ୍ରାହ୍ମଣୀ ପୁଣି ଆସି ଦେଖି- ଗଲା ଚରାଟି ।
ସୁନାର କୁଲେଇ ପଛେ ପଛେ ଘରେ ଆସିଲା ଯମ
ବାପା ମଲେ, ମଲା ବୋଉ; ସେ ମରଣ କି ନିରିମମ !
ଭାଇମାନେ ଗଲେ ବିଦେଶ, ଫେରିଲେ ନାହିଁ ତ ଆଉ
ସେ ଦିନୁ ତ ମୋର ଉପରେ ପଡ଼ିଛି ବିଧାତା ଦାଉ ।
ଭାଇମାନେ କଲେ ପ୍ରବାସ, ଭାଉଜେ ହେଲେ ଦୋଚାରୀ
କଣ୍ଟାହେଲି ବୋଲି ଭାଉଜଙ୍କୁ ମୁହିଁ ହେଲି ଭଗାରି ।
କି ଲାଭେ ବ୍ରାହ୍ମଣୀ ସୁନା ଘର ଚୂନା କଲା ଦଇବ
ବିନା ଦୋଷେ କାହିଁ ଏଡ଼େ ଦଣ୍ଡ ଭୋଗ କିଏ ସହିବ ?
ଦୁଖୀଜନଙ୍କର ନୟନର ଲୁହ ବୁଝେ କେ ପରା
ଦେଖିପାରୁଛି ସେ ନିତି ନିତି ବଣେ ମୋ ଲୁହ-ଢଳା ?
ଛେଳି ହେଲେ ମୋର, ଲୁହ ମୋର ଦେଖି ଛାଡ଼ିଛି ଚରା;
ସେତକ କରୁଣା ଦିଅଁ ଦେବତାର ନାହିଁଛି ପରା ।
କି ଅବା ମାଗୁଛି ? ନିତି ମୁଁ ଜଣାଏ, ତାଙ୍କୁ ମୁଁ ଡାକି
ଭାଇମାନେ ମୋର ଫେରନ୍ତୁ, ଏ ବଣ- ଲତା ମୋ ସାକ୍ଷୀ ।
ଭଉଣୀଏ ପାଇ- ଅଛନ୍ତି ସତର- ଅଠର ଭାଇ
ତିନି ଭାଇ ବୋଲି ବିଧାତା' ତା' ସହି ପାରିଲା ନାହିଁ ।
ତିନି ଭାଇ ଯଦି ନହେଲା, ଜଣେ କି ଫେରନ୍ତା-ନାହିଁ ?
ଖାଲି ସାନ ନନା ଫେରିଲେ ମୋ ଦୁଃଖ ରହନ୍ତା କାହିଁ ?

(୩)

ସାନ-ନନା ଆହା, ତମେ ମିଶେ ମୋର ଶୁଣୁନା ଡାକ
ଏଇପରି ସତେ ଭଲପାଅ ମତେ ଛାଡିଲେ ପାଖ ?
ସକାଳୁ ପାଇଲେ ତିନି ନନାଯାକୁ ତିନି ଜୁହାର-
ମନେ ମନେ କରି ହୁଏ ମୋ'କରମେ ମୁହିଁ ବାହାର ।
ସାନନନା କିନ୍ତୁ ଦିନଯାକ ମୋର ମନରେ ଥାଅ

ପ୍ରତି ଲୁହ ଧାର    ସାଥିରେ ତମେ ମୋ    ଜୁହାରେ ପାଅ ।
ଏତେ ମତେ ଭଲ    ପାଉଥିଲ ପରା,    ଭୁଲିକି ଗଲ,
କେତେ ବା ଭଉଣୀ    ଛାଡ଼ି ଯାଇ ଅଛ    ଘରେ ତମର ?
ବରଷ ପରେ ଯେ    ବରଷ ଚଳିଲା    ଦିନେ କି ହେଲେ
ତଅପୋଇ ମନେ    ତମର ପଡ଼ିଲା    ନାହିଁ ହେ ହେଲେ !
ତମ ତଅପୋଇ    ଛେଳି ଜଗି ଦିନ    କାଟେ ଯେ ଭାଇ
କେଉଁ ଦୂରେ ଯାଇଁ    ରହିଲ ଏକଥା    ଜାଣିଲ ନାହିଁ ?
ଛେଳି ଧରି ଘରେ    ଫେରିବାରେ ଯଦି    ଉଛୁର ହେଲା
ବଡ଼ ବୋହୂ ମନ-    ଇଚ୍ଛାରେ ତେନ୍ତୁଳି-    ଛାଟେ ମାଇଲା ।
କେଉଁ ଛେଳି କେଉଁ-    ଦିନ ବା ପିଆଇ    ଦେଲା ପିଲାକୁ
ଏକା କରି ଦେବ    ପିଠି ଆଉ ଛେଳି    ବାଁଧା ପଘାକୁ ।
ମାରିଲେ ପ୍ରଥମେ    ବୁକୁ ଫାଟି ଲୁହ    ପଡ଼େ ବାହାରି
ବାପା, ନାନା, ବୋଉ    ଡାକି ଅଗଣାରେ    ଛାଡ଼େ ବୋବାଳି ।
ଏବେ ସବୁ ସେତ    ସବୁଦିନ କଥା    କାନ୍ଦିବି କେତେ ?
ତୁନି ହୋଇ ସହି    ଯାଉଛି ପଘାରେ    ମାରିଲେ ଯେତେ ।
ବୋଉ ଦିନେ ମତେ    ମାରିଥିଲା ବୋଲି    ମୋ ସାନ ନନା
ବୋଉକୁ ମାରିଲା    ପରି ହୋଇ କରି-    ଥିଲେ ଗୋ ମନା ।
ସେ ଗେଲବସର    ତଅପୋଇ ଖାଏ    ପଘାରେ ମାଡ଼
ଛେଳି ଜଗି ବଣେ    ବଣେ ବୁଲି ତା'ର    ଭାଙ୍ଗଇ ହାଡ଼ ।
ଶେଠ ଝିଅ ଆଜି    ଛିଣ୍ଡାକନା ପିନ୍ଧି    ବୁଲଇ ବଣେ
ପରର ଅଇଁଠା    ପାଇଲେ ସେ ମହା-    ପ୍ରସାଦ ମଣେ ।
ନଖାଇ, ଏ ଦେହ    କିଥିଲା ଆଜି କି    ହୋଇଛି କିସ
ଅବାଟେ ପଳାଏ    ଦେଖିଲେ ମୋ ବାଟେ    ଚିହ୍ନା ମଣିଷ ।
ବୋଉର ପୁରୁଣା-    ଚାକରାଣୀ ମତେ    ଦେଖି ସେ ଦିନ
କାନ୍ଦିପକାଇଲା,    ପୋଛୁ ପୋଛୁ ମୋର    ମୁଖ ମଳିନ ।
କାନ୍ଦିବାରୁ ମୁହିଁ    କହିଲା 'ତୁନି ହ,    ସଂଖାଳି ମୋର
ଭାଇ ଆସିଗଲେ    ରହିବ କି ଧନ,    ଏ ଦୁଃଖ ତୋର' ?
କାହିଁତି ମୋ ଭାଇ ?    ଏ ମାଆ ମଙ୍ଗଳା,    ଶୁଣୁନା କିଆଁ
ଭାଇ ଆସିଗଲେ    କି ଭୋଗ ରହିବ    ତୋରେ ଅଦିଆ ?
ସାନ ବୋହୂ ଯାହା    ଦିଏ ଦିନେ ଦିନେ    ବାନ୍ଧି କାନିରେ
ସେ ଖୁଦ କଣିକା    ଦେଇଛି ତୋତେ ମୁଁ    ନୟନ-ନୀରେ ।
କିବା ଅଛି ଆଉ    ଦେଇ ନାହିଁ ଯାହା,    ତତେ ମୁଁ କହ

କି ଆଶାରେ ମାତ,
କଷଣ ସରନ୍ତା
ତାଙ୍କ ପଦ ସେବି
ଫେରି ଆସି ପଛେ
କିଛି ନ କହନ୍ତୁ
ଫେରି ସେ ଆସନ୍ତୁ
ସାଧବ ଝିଅ ମୁଁ

ନିଦୋଷୀ ମୋର ଏ
ଆସିଲେ ମୋ ଭାଇ
ସୁଖୀ ମୁଁ ହୁଅନ୍ତି
ଭାଉଜମାନଙ୍କ
ସେଥିରେ ମୋହର
ହେ ମାଆ ମଙ୍ଗଳା
ଖୁଦ ପୂଜି ଆଜି

କଷଣ ସହ ?
ଫେରି ଏ ଦେଶେ
ହୀନ ଏ ବେଶେ ।
ମୁହଁକୁ ଚାହିଁ
ଆପତ୍ତି ନାହିଁ ।
ଏତିକି କର
ମାଗୁଛି ବର ।

## ବୋଇତ-ବନ୍ଦାଣ

ପ୍ରଭାତେ କନକ-ରଶ୍ମି ତରୁଣ ରବିର
ବୃକ୍ଷଶିରେ ଗ୍ରାମ-ଚାଳେ ଜ୍ୟୋତିର ଅବିର
ବିଂଛିଦେଲା କ୍ଷଣକରେ । ମୁଗ୍ଧ ଗ୍ରାମବାସୀ
ଉଭା ହେଲେ ନଦୀ ତୀରେ ଦଳେ ଦଳେ ଆସି
ବୋଇତ ଦେଖିବା ପାଇଁ । ଦୁଇବର୍ଷ ପରେ
ସାଧବର ପୁଅ ତିନି ଫେରିଛନ୍ତି ଘରେ,
କିବା ଆଣିଛନ୍ତି ଦୂରୁ, ସାଗର ସେ ପାରୁ
ଶୁଣାଯାଏ ରାଜପୁତ୍ର ଆସିଛି ସେ ଆଡୁ
ଏ ଦେଶ ଦେଖିବା ଲାଗି । ନାନା କଥା ଶୁଣି,
ନାନା କଥା ସୃଷ୍ଟିଶୀଳ କଳ୍ପନାରୁ ବୁଣି
ଆସୁଛନ୍ତି ପଲ୍ଲୀଜନେ ମାଡ଼ି ନଦୀ ତୀରେ
ବୋଇତ ଦେଖିବା ଲାଗି । ହେଲେ ଉଭା ଧୀରେ
କେହି ତୀରେ, କେହି ନୀରେ, କେହି ଟିକେ ଦୂରେ
ଘନଚ୍ଛାୟା ବୃକ୍ଷ ତଳେ । ଗ୍ରାମ ପ୍ରୌଢ଼ ଦଳେ
ତୀର ଛାଡ଼ି ବୋଇତରେ ଗଲେ ପଶି ବଳେ
ଡାକି ଡାକି ଉଚ୍ଚସ୍ୱରେ ସାଧବପୁଅରେ
ଗୁରୁଜନ ଭାବ ଧରି; ଟୋକାଏ ପଶ୍ଚାତେ
କୌତୂହଳେ ପଛଧରି ପଶୁଁ, ତାଙ୍କୁ ହାତେ
ନିବାରିଲେ ନଦୀକୂଳେ, କ୍ରୋଧ ହେଲେ କିଛି;
କହିଲେ— ''ଏଗୁରା ଖାଲି କୁଳାଙ୍ଗାର ଛି ଛି !

କଥା କି ମାନନ୍ତି ଆଉ ? ଶିଖିଲେ ଆଚାର ?
ଆମ ପିଲାଦିନେ ସ୍ୱପ୍ନ ଥିଲା ଏ ବେଭାର !''
ବକ୍ରଗତି ଗ୍ରାମପଥେ ବୃକ୍ଷ ଅନ୍ତରାଳୁ
ଶୁଭିଲା ଏ କାଳେ ହୁଳହୁଳି ଧ୍ୱନି ଚାରୁ
ଗ୍ରାମ ସୀମନ୍ତିନୀ କଣ୍ଠୁ । କ୍ରମେ ସେହି ପଥେ
ବାହାରିଲେ ସୁନ୍ଦରୀଏ ଧରି ଏକ ହସ୍ତେ
ସୁରଭିତ ନିରାଜନା; ଅନ୍ୟ ହସ୍ତେ ଧରି
ନବ ସୂର୍ପ, ଶୁଭ ବନ୍ଧାପନା ଦ୍ରବ୍ୟେ ଭରି ।
ମୁଖ ତାଙ୍କ ନତ ଲାଜେ,— ଲୋକ ସମାଗମେ;
ପଦ୍ମ ସେ କି ପ୍ରଦୋଷରେ ତାରକା-ଆଗମେ !
ଅବଶ ଚରଣ ତାଙ୍କ, ବାଲୁକାରେ ମିଶେ
ଅଲକ୍ତ-ରଞ୍ଜିତ ନଖ ପନ୍ତି ନାହିଁ ଦିଶେ—
ତାରା ସେ ଲୁଚନ୍ତି କିବା ବୃଷ୍ଟି ଘନ ତଳେ
କୁସୁମ ସେ ଲୁପ୍ତ କିବା ପଲ୍ଲବ-ଗହଳେ !
ନତମୁଖୀ ସେ ବାମାଏ କିନ୍ତୁ ପରସ୍ପରେ
ସ୍ୱଭାବଜ ଗୁଣେ ରତ ଗଳ୍ପେ କ୍ଷୀଣ ସ୍ୱରେ
କେଜାଣି କି କଥା ଧରି । ନାପିତୁଣୀ ଡାକି,
କହିଲା ପଛରୁ ଉଚ୍ଚେ, ''ବେଳ ଅଛି କି କି
ଚାଲୁଛ ଗପୁଛ ମଠେ ? ଆସନା ତୁରିତେ
ସାଧବ ସାଆନ୍ତେ ମୋର ରାଗିବେଣି ଚିତ୍ତେ;
ବନ୍ଧାପନା ସରିଲେ ତ ଆସିବେ ସେ ଘରେ ?
ସ୍ନାନ-ବିଧି ହେବ ପୁଣି— ଆସନା ଚଞ୍ଚଳେ...''
'ଚାଲ, ଚାଲ' କହି ସର୍ବ ସୀମନ୍ତିନୀ କୁଳ
ଚଞ୍ଚଳ କରିଲେ ଗତି । ବାଲୁକା ବ୍ୟାକୁଳ
ସେ ପଥେ ଭୂଷଣ-ଗୁରୁ ପଦ ବାମାଙ୍କର
ଗତି ହୁଏ ବଳେ ମନ୍ଦ । ଶ୍ରମାଇ ପୟର,
ଉପୁଜାଇ ସ୍ୱେଦ-ମୁକ୍ତା ଶ୍ରମେ ଗଣ୍ଡସ୍ଥଳେ
କ୍ରମେ ବାମା ଉପସ୍ଥିତ ପୋତ ସମୀପରେ ।
ବହୁ ବୟସିନୀ କେହୁ କହିଲା ଆଗେଇ

‘କରଲୋ ବନ୍ଦନା ବେଗେ ।’ ଜନତାରେ ଚାହିଁ
ନବସୀମନ୍ତିନୀଗଣ ଗୁରୁ ସରମରେ
ଟେକି ନ ପାରିଲେ ହସ୍ତ– ଜାଣି ନାପିତରେ
ସଂକେତିଲା ବୃଦ୍ଧା ଏକ– ସେ ତହୁଁ ଚିତ୍କାରି
ଦୂରସ୍ଥ କରିଲା ଲୁବ୍ଧ ଜନତାରେ ଠାରି ।
ତହୁଁ ଏକ ନାରୀ କହେ ‘କରଲୋ ବନ୍ଦନା...’
ଆନ ଥାଇ ପାଖ-ଜଣେ କହୁଛି– ‘‘ଦେଖନା’
ଠିଆ କିପାଁ ? କର ବେଗେ’’- ଠିକ୍ ସେଇପରି
ଏକ ଆନେ ତିଆରିଲେ । ତହୁଁ କ୍ରୋଧ କରି
ବିଶୋଇ ସ୍ୱାମିନୀ ଉଠି କରିଲେ ଚିତ୍କାର,
‘‘ଆଚ୍ଛା ଏ ଟୋକୀଏ ସତେ ! ଘରୁଲୋ ବାହାର
ହେଲ କିପାଁ ଲାଜ ଯଦି ଏତେ ମାଡୁଥାଇ ?
ବନ୍ଦାଅ ଲୋ !’’– ବୋଲୁଁ ସର୍ବେ ଲାଗିଲେ ବନ୍ଦାଇ ।

(ପ୍ରାରମ୍ଭ ଗାନ)

ପ୍ରଥମା: ସାଧବ ଘର ବୋଇତ
ଦୂର ଦେଶୁଁ ଆଣେ ଲକ୍ଷ୍ମୀ ବହିତ ଗୋ
ମଣି ରତନ ନୁହେଁ କଥିତ, ସଜନି ଗୋ ।

ଦ୍ୱିତୀୟା: ବୋଇତ ଏ ସାଧବର
ଦେଖି ଆସେ କେତେ ଦେଶ ନଗର ଗୋ,
ଭାସି ଆସଇ କାଟି ସାଗର, ସଜନୀ ଗୋ ।

ତୃତୀୟା: କେତେ ପୋତ ଜଳେ ଭାସେ
ସାଧବ ପୋତ ସରିକି ନଆସେ ଗୋ,
ରାଜହଂସ ସମ ପରକାଶେ, ସଜନୀ ଗୋ ।

ପ୍ରଥମା: ଆସ ଗୋ ବନ୍ଦାଇ ନବା
ବୋଇତ-ରାଣୀ କି ଦେଇ ପୂଜିବା ଗୋ ?
ତାଙ୍କ ପଦ-ଜଳ ଶିରେ ନବା, ସଜନୀ ଗୋ ।

ଦ୍ୱିତୀୟା: ରଣପୁରେ ମୋର ଘର
ସିନ୍ଧୁ କୂଳୁ ଦୂରେ ମୋର ନଗର ଗୋ
ମତେ ବତାଅ ଏ ଉପଚାର, ସଜନୀ ଗୋ ।

ତୃତୀୟା: ମୋ ଘର ବାଣପୁରରେ
ପୋତ ତ ମାଳ ଚିଲିକା ଜଳରେ ଗୋ,
ମୋତେ ଆଗ କର ବନ୍ଦାଣରେ, ସଜନୀ ଗୋ ।
ପ୍ରଥମା: ମୁଁ ତ ଚେଲିତାଳି ନାରୀ
ପୋତେ ଧଳା ତହିଁ ବାରିଧି-ବାରି ଗୋ
ମୁଁ କି ବନ୍ଦାଣରେ ଯିବି ହାରି, ସଜନୀ ଗୋ ।
ପ୍ରଥମା : ବନ୍ଦନା କର ଲୋ ଏବେ—
ସମସ୍ତେ : ଜୟ ଗୋ ବୋଇତ-ରାଣୀ ସଲିଳ-ସୁନ୍ଦରି,
ଆମ୍ଭ ଲାଗି ଆଣ ଧନ କାହୁଁ ଗର୍ଭେ ଭରି,
ପୂର୍ଣ୍ଣ କର ଗନ୍ତାଘର,
ତୁମ୍ଭ ଲାଗି ପୂରି ଉଠେ ଭବନ ଆମ୍ଭର ।

ହେମନ୍ତେ ବିଦାୟ ଦେଇ, ତତେ ନଦୀ ଜଳେ,
ତୋର ଫେରିବାକୁ ଚାହିଁ ଥାଉ ସନ୍ତତରେ,
ଆଷାଢ଼ରେ ତୋ ଆସିବା,
ଘରେ ଯେହ୍ନେ ଗୃହ-ବଧୂ ପ୍ରବେଶ ସେ କି ବା ।
ଘେନିଯାଉ ପ୍ରିୟ-ଜନେ ଦୂର ସେ ପ୍ରବାସେ,
ଆମେ କୁଳବଧୂ ଚାହିଁଥାଉ ତୋର ଆଶେ,
ପୁଣି ଘେନି ପ୍ରିୟଜନ,
ତୋ ଫେରିବା ଆମ୍ଭ ଚିତ୍ତେ ଆନନ୍ଦ-କାରଣ ।

ସୁଖରେ ଫେରାଉଥିବୁ ପ୍ରିୟଙ୍କୁ ଆମ୍ଭର,
କୁକର୍ମେ ଗୋ ହେବୁ ଦେବୀ ବାରଣ ତାଙ୍କର,
ଦୂର ଦେଶେ ପରବାସେ
ଚିତ୍ତ ତାଙ୍କ ନ ଯାଏ ଯେପରି ଆନ ଆଶେ ।

ତୁମ୍ଭେ ଲକ୍ଷ୍ମୀ, ତୁମ୍ଭେ ଦେବୀ, ତୁମ୍ଭେ ତ ସକଳ,
ତୁମ୍ଭ ଯୋଗୁଁ ଏ ବେଶ-ଭୂଷଣ ଏ ଦେହର,
ତୁମ୍ଭ ଯୋଗୁଁ ଗୃହ ସୁଖ,
ତୁମ୍ଭ ଯୋଗୁଁ ପୁରେ ଫୁଟେ କାଞ୍ଚନ-ମୟୂଖ ।

ସଦା ତୁମ୍ଭ ସିନ୍ଧୁ-ଯାତ୍ରା ହେଉ ଜୟଶୀଳ,
ତୁମ୍ଭ ଖଡ୍‌ଗେ ଛିନ୍ନ ହେଉ ଦୂର ଶତ୍ରୁ-ଶିର,
ସିନ୍ଧୁ ବକ୍ଷ ସଦା ଚିରି,

ଦେଶରେ ବିଛାଁଅ ଆଣି ଘରେ ଘରେ ଶିରୀ ।
ଆମ୍ଭର ବନ୍ଦନା ଘେନ ଆଗୋ ସିନ୍ଧୁରାଣୀ
କନକେ ପୂରାଅ ଘର ଦୂର ଦେଶୁ ଆଣି
ଆମ୍ଭ ପ୍ରିୟେ ପାଳୁଥିବ,
ଜନନୀ ସମାନ ସଦା ଢାଳୁଥିବ ଶିବ ।

ବନ୍ଦାପନା ହେଲା ଶେଷ । ସର୍ବ ସୀମନ୍ତିନୀ
ବୋଇତେ ପଶିଲେ ଧୀରେ ଚଳାଇ କିଙ୍କିଣୀ,
ବହିତ୍ର ପଲନ୍ଦେ ମନ୍ଦେ, ଭେଟିବାକୁ ତହିଁ
ସାଧବ ପୁଅରେ ପୁଣି, ଦୀନା ତଅପୋଇ ।

## ନଷ୍ଟ ପଲ୍ଲୀ

(୧୯୪୩ର ସାଇକ୍ଲୋନ୍ ପରେ ଲିଖିତ)

ଶିଶୁ ଖେଳା କରୁଥିଲେ ଦାଣ୍ଡେ
ମଲ୍ଲ ଦଳ ପାଇକ-ଆଖଡ଼ା,
ନିଜ ନିଜ ସଂସାରଟି ଲାଗି
କରୁଥିଲେ ନାରୀଏ ଝଗଡ଼ା ।
ମାଟି ସଙ୍ଗେ ଲଢ଼ି ଦିନରାତି,
ଖରା ପାଣି ସମ୍ଭାଳି ପିଠିରେ,
ଚଷାଦଳ କାଟୁଥିଲେ ଖେତ
ରହିବାକୁ ଜୀଇଁ ଏ ମାଟିରେ ।
ନୂଆ ବୋହୂ ଆସୁଥିଲେ ଗ୍ରାମେ,
ଗାଆଁ-ଝିଅ ଯାଉଥିଲେ ଦୂରେ,
ଭୋଜିଭାତେ, ଗୀତେ, ଭାଗବତେ,
ପ୍ରାଣ ବାଜୁଥିଲା ନାନା ସୁରେ ।
ଏପରି ସେ ଛୋଟ ଏକ ପଲ୍ଲୀ
ସୁଖେ ଦୁଃଖେ ନେଉଥିଲା କାଳ
ସାଇକ୍ଲୋନ୍ ଦୟାମୟଙ୍କର
କଲା ତାକୁ ନଗ୍ନ, ନିରାହାର;
ମାଟି ସାଥେ କରି ଏକାକାର ।

ସାଆନ୍ତାଣୀ କୁଟୀର-ବାସିନୀ,
ମଲ୍ଲ ଆଜି ଘାସ ଖୋଜେ ଭୋକେ;
ବୁନିୟାଦ ପତାଉଛି ହାତ,
ଦୀନ, ଧନୀ ଏକାକାର ଶୋକେ ।
ଜୟ ହେଉ ପରାତ୍ପରଙ୍କର,
ତାଙ୍କ ସୃଷ୍ଟି-ରଥ ଚକ୍ର ତଳେ,
ଧ୍ୱଂସ ହେଉ ଦରିଦ୍ର ସଂସାର,
କବି ତାହା ଦେଖୁ ଆଖି ଜଳେ ।
ବୁଲେ କବି ନଗରେ ନଗରେ
ବୁକେ ତା'ର ବହି କଞ୍ଚା କ୍ଷତ,
ପକ୍ଷୀ-ବସା ପରି ତା ଗ୍ରାମଟି,
ନିଷ୍ଠୁର କେ କରିଲା ବିନଷ୍ଟ ।

## ଅନୂଢ଼ା*

ଯୌବନର ସ୍ୱର୍ଣ୍ଣରେଖା,
ମୁଖେ ତବ କେବେ କି ଅବଳେ !
ଜୀବନ୍ତ-କବିତା ସମ
ସରାଗରେ ନଥିଲା ଗୋ ଫୁଟି ?
ଜରା-ଜର୍ଜରିତ ଏହି
ଜ୍ୟୋତିହୀନ କପୋଳ-ଯୁଗଳେ
ଜନ୍ମରୁ କି ଲଜ୍ଜା-ରକ୍ତ —
ରାଗ ରେଖା ଯାଇଥିଲା ତୁଟି ?
ମସ୍ତକର ଏ ଯେ ଶୁକ୍ଳ,
ଶିରୀ-ହୀନ ରୁକ୍ଷ କେଶରାଜି
କେବେ କି ଗୋ ଚରମର
ପ୍ରାନ୍ତଦେଶେ ସୃଜି ଉର୍ମି-ଲୀଳା,
ଦର୍ପିତା ନାଗୁଣୀ ସମ
ଲହ ଲହ ପଡ଼ି ନାହିଁ ଭାଜି,

[*ଆମ ଗ୍ରାମର 'କାଞ୍ଚନ ଅପା' ଯୌବନରେ ଦୁର୍ଭିକ୍ଷ ଦାଉରେ ଛତ୍ରରେ ଖାଇଥିବାରୁ ସମାଜପରିତ୍ୟକ୍ତା ହୋଇଥିଲେ । ସେ ବିବାହ କରିନଥିଲେ । ତାଙ୍କୁ ନେଇ ଏ କବିତାଟି ଲିଖିତ ସେ ଆଉ ଇହଧାମରେ ନାହାନ୍ତି ।]

ଯୌବନ-ଶୋଭାରେ କରି
ସ୍ୱପ୍ନ ସମ ତରଳା ଛବିଳା ।
କେବେ କି ଗୋ ସ୍ନାନଘାଟୁ
ଫେରିଆସି ମୁକୁରେ ନିରେଖି,
ମୁଗ୍ଧ ହୋଇ ଚାହିଁ ନାହଁ
କ୍ଷଣେ ହେଲେ ନିଜର ଯୌବନେ ?
ଗ୍ରାମ-ବଧୂକୁଳ-ମାଥେ
ସୀମନ୍ତର ସୂକ୍ଷ୍ମ ଶୋଭା ଦେଖି,
ନିଜର ସୀମନ୍ତଟିକି
ଗଢ଼ିନାହଁ ବିରଳେ ଯତନେ ?
ସନ୍ଧ୍ୟାର ଉତ୍ତରୀ ଟାଣି
ନିଶା ଯେବେ ଆସୁଥିବ ନାରୀ,
ଗ୍ରାମର ଦମ୍ପତି ସବୁ
ବୁଡୁଥିବେ ପ୍ରଣୟ-ସାଗରେ,
ସେ ରସର ତୀବ୍ର ଗନ୍ଧେ
ପ୍ରାଣ ଘାରି, ଜୀବନେ ଧିକ୍‌କାରୀ
ବୁକୁର ବେଦନା ଧନୀ,
କହିନା କି କା ଆଗେର ଥରେ ?
କି କଷଣ ! କି ବ୍ୟଥା ସେ !
ବୁକୁଛିଣ୍ଡା କି ଯାତନା ସେ ଯେ !
କେମନ୍ତେ ସହିଲ ବାଳା
ତାପସୀର ସଂଯମ ଆଚରି,
ବୟସର ବିଷ-ଡାକ
ନ ଶୁଣିଲ, ଶୋଇ-ନିଶା ଶେଯେ !
ତରୁଣୀର ନିଶା-ସ୍ୱପ୍ନ
ଭୁଲିଗଲ କ୍ଷୁଦ୍ର ଶିଶୁ ପରି !
ଗ୍ରାମର ସଙ୍ଗିନୀଦଳ
ଏକେ ଏକେ ଯାଇଥିବେ ଚାଲି
ଆଉ କାର ପାଦତଳେ
ବିକିବାକୁ ଜୀବନ-ଯୌବନ !

ଚାହିଁଥିବ ତାଙ୍କ ପଥ
ଅଶ୍ରୁଧାରେ କପୋଳ ପଖାଳି;
ବୁକୁ ଚିରି କାନ୍ଦିଥିବ
ଅବିନୀତ ତୁମର ଯୌବନ !
ଉତ୍ସବେ ଗ୍ରାମର ଯେବେ
ବଧୂ, କନ୍ୟା, ଗୃହିଣୀ, ଜନନୀ
ତନୟ-ତନୟା ମାଥେ
ଢାଳିଥିବେ ପ୍ରାଣର ଆଶିଷ,
ଅସନ୍ତନା ତୁମେ ସେବେ
ମାଗିନା କି ବିଧାତାରେ ଧନି !
କୋଳ-ମଣି ବଦଳରେ
ସର୍ବନାଶୀ ଅକାଳ କୁଳିଶ !
ଆଜି ନାରୀ, ବୃଦ୍ଧା ତୁମେ,
ପକ୍ୱକେଶ, ଶ୍ଳଥ ଦେହ-ଲତା,
ଶୈଶବ-ଯୌବନ ତବ
ଦୂରେ ତ୍ୟକ୍ତ ଜୀବନର ପଥେ,
ଯୌବନ ଦେଇନି ଚିତ୍ର
ପଦେ ତବ ବଧୂର ଅଳତା,
ମାତା ହୋଇ ନାହଁ କେବେ
ପାଳିବାକୁ ସନ୍ତାନେ ରକତେ ।
ଚତୁର୍ଥ ବୟସେ ଆଜି
କାହା ପାଇଁ ବଞ୍ଚିଛ ଜନନୀ,
କାହା ଲାଗି ବନେ ବନେ
ଗଛ ପତ୍ର ଖୋଜି ବୁଲ ନିତି,
କି ସମ୍ବନ୍ଧ ଅଛି ଥାପି
ତୁମ ସଙ୍ଗେ ଏ ପ୍ରିୟ ଧରଣୀ,
କେଉଁ ଭାବେ ତୁମ ସଙ୍ଗେ
ଜୀବନର ଅଛି ଏତେ ପ୍ରୀତି ?
ଜୀବନ ଲାଗି ହିଁ ଖାଲି
ଜୀବନଟି ଯାପିଲ ଅବଳା,
ଆକୁଳରେ ଫୁଲି ପୁଣି
ଶୁଖିଗଲା ପ୍ରୀତିର ଝରଣା,

ଶୂନ୍ୟମନେ ଆଣ ମାଆ,
ବରି ଏବେ ମରଣ ଶାଂଖୋଳା,
ସୁଖେ ପୁଣି ଭୁଲିଯାଅ
ଧରଣୀରେ ଜୀବନ ଯାପନା ।

## କଣ୍ଟ-କାଚ

(୧)

ପ୍ରଥମେ ଯେବେ କଲେଜ ଧରିବାକୁ
ଆସିଲି କଟକ,
କହିଲା ଅପା ହାତରୁ କାଚ କାଢ଼ି
'ନେଏ ଏ ପଟକ' ।
କହିଲି ମୁହିଁ ''ଏ କିସ ନୂଆ କଥା,
ଦେଉଛୁ କିପାଁ ମତେ,
କଲେଜ ଯିବି ସାଥିରେ ନେଇ ପୁଣି
ମାଇପି କାଚ ପଟେ ?
କହିବେ ପିଲେ ଗାଉଁଲିଟାଏ ପରା
ଆସିଛି ପଢ଼ିବାକୁ;
ଟିକକେ ମୋର ଯିବ ଯେ ଭଦ୍ରତା,
ଦେଖିବେ ଯଦି ଯାକୁ ।''

କହିଲା ଅପା– ''କିଏ ବା କିପାଁ କହ
ଦେଖିବ ମୋର କାଚ,
ଲଗାଇ ଯାକୁ କରିବୁ କିରେ ତୁହି
ପିଲାଙ୍କ ଆଗେ ନାଚ ?
ବ୍ରଙ୍କରେ କି ପାରିବୁ ନାହିଁ ତୁହି
ଯାକୁରେ ଲୁଚାଇ,
ସାଧିଲୁ ଏତେ ବିଦ୍ୟା କିପାଁ କହ
ଏ ଟିକ ବୁଦ୍ଧି ନାହିଁ ।''

ନିଜର ଯହୁଁ ବୁଦ୍ଧି ନିନ୍ଦା ହେଲା
ଲାଗିଲା ମନେ ରାଗ,
କହିଲି ଟାଣେ, ''କାଚଟା ଦେବୁ କିପାଁ
ସେ କଥା କହ ଆଗ ।''

କହିଲା ଅପା– ''ମୂଳରୁ ତୁ ତ ନାହିଁ-
କରୁଛୁ ଏକା ନାହିଁ–
କେମିତି ତତେ କହିବି କହ କାଚ
ଦେଉଛି କାହିଁ ପାଇଁ ?''
କୋମଳ ତା'ର ବଚନ ତହୁଁ ଅପା
କୋମଳତର କରି,
କହିଲା ତା'ର ହାତର କାଚ କିପାଁ
କଟକ ଯିବ ଚଳି ।
କହିଲା ଅପା-''କଟକ ଯିବୁ ପରା
କରିବୁ ରୋଜଗାର,
ମୋ ପାଇଁ କିଛି ଆଣିବୁ ନାହିଁ କିରେ
କଟକୀ ଅଳଙ୍କାର ?
କେତେ ସେ କଥା ଜାଣନ୍ତି ମୁହିଁ ଶୁଣେ
କଟକୀ ମାଇକିନା,
ସବୁରି ଘରେ ରୁପାର ଦରପଣ
ରୁପାର ତେଲ ଗିନା ।
ସବୁରି ହାତେ ରୁଣୁ ଝୁଣୁ ଝୁଣୁ
ଦୋଳଇ ସୁନା କାଚ,
ବଙ୍ଗାଳୁ ଫେସନ ପରା ସବୁ
ବଙ୍ଗାଳୁଣୀ ଢାଁଚା ?
ଦେଖିବୁ ତୁ ତ କହିବି କିସ ମୁହିଁ
ଗାଁଆରେ ଥିବା ଜନ,
ଗୋଟିଏ କଥା କହୁଛି ଖାଲି ମୁଁରେ
ରଖିବୁ ମୋର ଧନ–
କଣ୍ଟ କାଚ ଦେଲି ମୁଁ ତତେ ଏହି
ହାତରୁ ମୋର କାଢ଼ି,
ଦି ଦି ପଟ ସୁନାର କାଚ ଦେଖି
ଆଣିବୁ ପଟ ଚାରି ।''
କହିଲା ଅପା ହୃଦୟ କଥା ତା'ର
ଏକଇ ନିଶ୍ୱାସେ,
ଥରଟି ହୋଇ ଶୁଣିଲା ଭାଇ ମନେ–
ହସି ତା ବିଶ୍ୱାସେ ।

ବିଦ୍ୟା ଛଡ଼ା କଟକ କଲେଜରେ
ନାହିଁ ଯେ ରୋଜଗାର,
ସେ କଥା ତା'ରେ କହି ନ ଭାଙ୍ଗିଲି
ସ୍ୱର୍ଣ୍ଣ-ଆଶା ତା'ର ।
ନିଜର ପୁଣି ରହିବ ଗଉରବ
ତାହାର ଆଖି ଆଗେ,
'ଆଚ୍ଛା ଆଣ୍, ଦେଖିବି' ବୋଲି କାଚ
ଧଇଲି ଅନୁରାଗେ ।

(୨)

ଜାଣିବ କିପାଁ ସରଳା ଅପା ମୋର
କଲେଜ୍-ପଢ଼ା କିସ ?
ଖାଇବାଠାରୁ ଖେଳିବା ଯାଏ ସବୁ
କଥାରେ ପଡ଼େ ଫିସ ।
ତା'ପରେ ଅଛି କଟକ ନଗର ତ,
ପଇସା ନିଏ ଟାଣି,
ପୀରତି ସାଥୁ ଅଛି ତ ଆହୁରି ଯେ
କିଣିବା ମନ ଜାଣି ।
ସର୍କାରଙ୍କ ବୃତ୍ତିକି ମିଶାଇ
ଟଙ୍କା ଅଣ୍ଟେ ନାହିଁ,
ସୁନାର କାଚ କିଣିବି କେମ୍ନେ କହ
ପ୍ରାଣର ଅପା ପାଇଁ ?
କଟକ ପଥେ ସ୍ୱର୍ଣ୍ଣ କିଣାବିକା
ଦେଖଇ ଆଖି ନିତି,
ଅପାର କଥା ପଡ଼ଇ ମନେ ମୋର
ପରାଣ ହୁଏ ପିଟି ।

(୩)

ଗ୍ରୀଷ୍ମ ଛୁଟି— ଘରକୁ ଗଲି ଫେରି
ଅପାର ବଡ଼ ସୁଖ,
ଦେଖିଲେ ମୋର ଚନ୍ଦ୍ର ମୁଖ ପୁଣି
ପାଶୋରେ ସେହୁ ଦୁଃଖ ।
ଖାଇଲାବେଳେ ବିଛଣା ଧରି ଅପା
କହିଲା ଧୀରେ ଧୀରେ—

''କହିଥିଲି ଯା ଗଲାବେଳେ ମୁଁ ତତେ
ମନରେ ଥିଲାଟି ରେ ?''
ଅନ୍ନ-ଥାଳେ ମୁହଁ ପୋତି ଲଜ୍ଜାରେ
କହିଲା ସାନ ଭାଇ,
''ଟଙ୍କା ପରା ପାଇଲା ନାହିଁ ମତେ
କାଚ ମୁଁ ଆଣି ନାହିଁ ।''
ଭାଙ୍ଗିଲାନି ଭରସା ତେବେ ହେଲେ
ସାନ ଏ ଭାଇ ପରେ,
କହିଲା, ''ତେବେ ଆଣିବୁ ତୁରେ ନିଚେ
ଆସିଲେ ଆଉ ଥରେ ।''

(୪)

ବର୍ଷକରେ ତିନିଟା ଛୁଟି ହେଲା
ଗଲି ମୁଁ ତିନି ଥର,
ହେଲା ଯେ ନାହିଁ କନକ-କାଚ କିଣା
ଏ ଚିର ଦରିଦ୍ରର ।
ତିନି ଥରରେ ବୁଝିଲା ପରା ଅପା
ମୋହର ଦରିଦ୍ରତା,
ଚାରି ଥରକୁ କହିଲା ନାହିଁ ଆଉ
କନକ-କାଚ କଥା ।
ତା'ପରେ ଏବେ ଗଲାଣି ବହି ଧୀରେ
ବରଷ ଗୋଟି ଚାରି,
ବିଦାୟ ମତେ ଦେଲା ସେ କେତେ ଥର
ନୟନୁ ଲୁହ ଢାଳି ।
କେବେ ସେ ମତେ କହିଲା ନାହିଁ ଆଉ
କନକ-କାଚ କଥା,
ରହିଲା ତୁନି ମରମେ ଜାଣି ଅପା
ମୋହର ଦରିଦ୍ରତା ।

(୫)

କଲେଜ ଛାଡ଼ି ଯିବାର ବେଳ ଏବେ
ଜୀବନ-ଯୁଦ୍ଧ ପାଇଁ,
ବିଦ୍ୟାବଳେ ପାରିବି ଯହିଁ କାହିଁ
ଦାରିଦ୍ର୍ୟ ଘୁଞ୍ଚାଇ ।

ସଜାଡୁ ମୋର ଟ୍ରଙ୍କ୍ ଲୁଗାପଟା
ପଡ଼ିଲା ଆଖି ଆଗେ
'କଣ୍ଠ-କାଚ'— ଦେଇଥିଲା ଯା' ଅପା
ସେଦିନୁ ଅନୁରାଗେ ।
ଦରିଦ୍ର ମୁଁ ଧଇଲି କାଚ ଗୋଟି
ବାକ୍ସ ତଳୁ ତୋଳି,
ନୟନ-ଜଳ ଅଙ୍ଗେ ତା'ର ଢାଳି
ବକ୍ଷେ ହେଲି ବୋଲି ।
ଜୀବନେ ତା'ର ଗୋଟିଏ ଅନୁରୋଧ
ରଖିଲି ନାହିଁ ପାରି,
ଅଧମ ମତେ କିପାଇଁ ଦିଏ ସେ ଗୋ
ସେନେହ ତାର ଢାଳି ?
ରିକ୍ତତାରେ ପରାଣ ଗଲା ପୂରି
ଭାବିଲି ମନେ ମନେ,
ଲାଞ୍ଛନା କି ଏଥୁ ଗୋ ବଳିଥାଏ
ଦରିଦ୍ର ଜୀବନେ ?

## ବନ୍ଧୁ ବିୟୋଗ*

ସ୍ମରିଥିଲ କି ହେ ବନ୍ଧୁ, ମରଣ ଶୟନେ,
କେମନ୍ତେ କଲେଜ କକ୍ଷେ ଧରି ହାତେ ହାତ,
ବିତିଯାଉଥିଲା ଦିନ ହାସ୍ୟ ଆଳାପନେ,
ପରସ୍ପରେ, ସଖ୍ୟ-ସୁଖ କରି ଆତଯାତ ।

ସ୍ମରିଥିଲ ଦିନେ ଦିନେ କଲେଜ ପ୍ରାନ୍ତରେ,
ଜ୍ୟୋସ୍ନାଲୋକେ ଗଳ୍ପୁଥିଲେ ଦେଶ ଦଶ କଥା,
ନିଜ ଅନୁଯାୟୀ ଭାଙ୍ଗି ଗଢ଼ିବା ଦେଶରେ,
ୟାର ନିନ୍ଦା, ତା'ର ସ୍ତୁତି, ପୁଣି ନିଜ ବ୍ୟଥା ।

ସ୍ମରି ଥିଲ କି ହେ ସଖା ସେ ଆଦ୍ୟ ଜୀବନେ,
ରସଘନ ସେ ବୟସେ ହୃଦୟ ଉଚ୍ଛ୍ୱାସ,
ପରସ୍ପର ପ୍ରତି କେହ୍ନେ ଧାଇଁ ଉନ୍ମନେ,
ସୃଜିଥିଲା ମିତ୍ରତାର ମଧୁର ବିଶ୍ୱାସ ?

ସ୍ମରିଥିଲ ନିଜ ବନ୍ଧୁ, ମାନ ଅଭିମାନ,
ବିଚ୍ଛେଦେ, ଈର୍ଷାରେ ହେବା, ହେବା ଅଶ୍ରୁ ବିସର୍ଜନ,
ସବୁ କର୍ମ ତଳେ ତମ ସଙ୍ଗ ଅନୁଧ୍ୟାନ,
ବ୍ୟବଧାନ ପରେ ପୁଣି ସସ୍ମିତ ମିଳନ !

ବହୁଦିନୁ ଭୁଲିଥିଲି, ଆଜି କିନ୍ତୁ ସ୍ମୃତି
ଓଲଟି ଚାହୁଁଛି ପଛେ, ତୁମର ମରଣେ
ଛୋଟ ବଡ଼ କେତେ କଥା ଧରି ନବ ମୂର୍ତ୍ତି
ଅଶ୍ରୁସିକ୍ତ କରୁଛନ୍ତି ମୋ ମନେ, ନୟନେ ।

ଫାଁକିବା ନଥିଲା ଧର୍ମ, ଫାକିଲ ଯେ ଶେଷେ,
ଆଘାତ ନ ଦେବା କା'ରେ ଥିଲା ସହଜାତ,
ଗଲାବେଳେ ଶେଳାଘାତ ହାଣିଲ ବିଶେଷେ,
ସଙ୍ଗ ଛାଡ଼ି ଏକା ଏକା ଗଲ ନିଜ ବାଟ ।

କେହି ତ ଜାଣନ୍ତି ନାହିଁ କି ଥିଲା ମୋହର,
କହିଲେ କି ତମେ ନିଜେ ଯାଆନ୍ତ ବିଶ୍ୱାସ,
କି ପ୍ରସାଦ ଥିଲା ତମ-ପ୍ରଶଂସା ଚିତ୍ତର,
କି ଭୋଗ୍ୟ ପ୍ରାଣର ତବ ହାସ ପରିହାସ ।

କଲେଜ ନ ପାରି ହେଉଁ ଜୀବନ-ସଂଗ୍ରାମ
ପେଶିବାକୁ ହାଡ଼ ମୋର ଲାଗିଲା ତ ଜାଣ,
ନୀରବେ ନ ଦେଇ ପାରି ସଖ୍ୟ ଆନେ ଆନ,
ଅଧୋମୁଖେ ଧରିଥିଲେ ହାତେ ଯେଝା କାମ ।

ଭାବିଥିଲି କେବେହେଲେ ସରିଥାନ୍ତା ପରା
ଜୀବନ-ଜଞ୍ଜାଳ ପୁଣି; 'ପ୍ରଗତି'ର ଦଳ
ମିଳି ମତେ ପୂର୍ବ ପରି କରନ୍ତେ ଟାପରା,
ତମେ କରିଥାନ୍ତ ଚର୍ଚ୍ଚା ଆମ ସଭିଙ୍କର ।

ନ କହି ଗଲ ଯେ ଚାଲି, ଭବ ଅନ୍ଧକାରେ
ଶିଶୁସମ କବି ଖାଲି ଡାକେ— ''ଗଲ କାହିଁ ?
ଜୀବନେ ନ ହେଲା ଅବା;—ଜୀବନ ବାହାରେ
ହେ ମଧୁ-ଦୋସର ଦେଖା ହେବ ଅବା ନାହିଁ ?''

[*ସ୍ୱର୍ଗତ କମ୍ୟୁନିଷ୍ଟ ନେତା ଓ ପ୍ରିୟ ବନ୍ଧୁ ଭଗବତୀଚରଣ ପାଣିଗ୍ରାହୀଙ୍କ ଉଦ୍ଦେଶ୍ୟରେ ଲିଖିତ ।]

# ହେ ବନ୍ଧୁ ![*]

ସ୍ମୃତିର ସ୍ଫଟିକ-ପାତ୍ରେ ହେ ବନ୍ଧୁ ପରମ,
ଟଳମଳ ହୁଏ ଏକ ଅଶ୍ରୁ ବିନ୍ଦୁ ମମ ।
କେ ତା'ର ବୁଝିବ ମର୍ମ ? କା' ଆଗେ ଢାଳିବି,
ସେ ବିନ୍ଦୁଟି ? ବିଳପି ବା କି କଥା କହିବି ?
ନ ଯିବେ ପରତେ କେହି । ଜନ ନେତ୍ରେ ଯାହା
ବନ୍ଧୁପଣ, ଆମଠାରେ ନଥିଲା ତ ତାହା ।
ତମ ଲାଗି ମୋର ଯେଉଁ ମୂଢ଼ ଆକର୍ଷଣ
ରଖିଥାଏ ତେଣୁ ବନ୍ଧୁ, ଅତ୍ୟନ୍ତ ଗୋପନ ।
କାହିଁ ଗଲ ? କାହିଁ ଅଛ ? ସବୁ କି ଭୁଲିଛ,
ଏ ଧରାର ସ୍ନେହ, ମାୟା ? ସବୁ କି ହେ ମିଛ—
ପ୍ରାଣବନ୍ତ ସେ ବଚନ, ହାସ, ପରିହାସ,
ଦୁଃଖବେଳେ ବନ୍ଧୁଜନେ ଦେବାର ଆଶ୍ୱାସ
ସବୁକାଳେ ଉପଭୋଗ୍ୟ ନିଷ୍ଠା କରମରେ
ଅନ୍ୟାୟର ଧ୍ୱଂସ ପାଇଁ ସ୍ୱପ୍ନ ମରମରେ,
ବନ୍ଧୁ ମେଳେ ରସ-ବାକ୍ ସତତ କିଶୋର,
ସମସ୍ତଙ୍କଠାରେ ଯେହ୍ନେ ବନ୍ଧା ପ୍ରୀତି-ଡୋର ।
ସେ ସବୁ କି ଲୀନ ବନ୍ଧୁ, ମୂକ ମହାଶୂନ୍ୟେ
ନିଃଶେଷ ନିଶ୍ଚିହ୍ନ ମର୍ତ୍ତ୍ୟେ, ସେ ଦିନର 'ତୁମେ' !
ବିଶ୍ୱାସ ନ ହୁଏ ପ୍ରାଣେ, ଏଇ ଯେ ଲେଖୁଛି,
ତମର ସହାସ୍ୟ ମୁଖ ଯେସନେ କହୁଛି
ସମ୍ମୁଖେ ସଲଖେ ରହି "ଅଛି ମୁଁ ଯେ ଏଇ,
ସେଇ ମୁହିଁ, ଠିକ୍ ସେଇ, ସ୍ଥୂଳ ଦେହ ଫେଇ,
ଜ୍ୟୋତିର ଶରୀର ଘେନି ବୁଲୁଛି ଆନନ୍ଦେ,
ମେଘେ ମେଘେ, ଚନ୍ଦ୍ରିକାରେ, ପିକ-ଗୀତି ଛନ୍ଦେ,
ବନେ-ବନେ, ନଦୀ-ତୀରେ, ସିନ୍ଧୁ ସିକତାରେ,
ମଧ୍ୟାହ୍ନେ ନିର୍ମଳ ନୀଳ ଆକାଶେ ବିସ୍ତାରେ ?

---

[[*]ସ୍ୱର୍ଗତ ବନ୍ଧୁ ଭଗବତୀ ପାଣିଗ୍ରାହୀଙ୍କ ଉଦ୍ଦେଶ୍ୟରେ ।]

ଏ ସବୁକୁ ଧରା-ଧାମେ ପାଉଥିଲି ଭଲ,
ଜୀବନ-ସଂଗ୍ରାମେ ନାହିଁ ଥିଲା ଅବସର
ଭୋଗିବାକୁ ତାହା । କିନ୍ତୁ ଅମର୍ତ୍ତ୍ୟ ଶରୀରେ,
ରୂପ, ଗନ୍ଧ, ଗାନ ବୋଲି କହ ଯା ମହୀରେ
ଅଚିନ୍ତ୍ୟ ମଧୁର ଉତ୍ସ ସେ ଭୋଗ ସବୁର,
ଆଜି ମୁଁ ଆସ୍ୱାଦି କବି, ପ୍ରମୋଦ-ବିଧୁର !
ବିଶ୍ୱାସ କରୁନା କବି ?
କରେଁ ବା ନକରେଁ,
ଦଳିତର ସେବାଠୁଁ କି ସେ ଆନନ୍ଦ ବଳେ ?
ସବୁ ସୁଖ ଫିଙ୍ଗିଦେଇ ଦୁର୍ଗତଙ୍କ ପାଇଁ,
ଯେ ସାଧନା କରୁଥିଲ ନିଜ ରକ୍ତ ଖାଇ,
ସେ ବ୍ରତର ଉଦ୍‌ଯାପନ ହୋଇଛି କି ବନ୍ଧୁ ?
ଖସିଛି କି ଅତୀତର ବୋଝ ଶୂଦ୍ର-ସ୍କନ୍ଧୁ ?
ହେ ବ୍ରାହ୍ମଣ, ଶୂଦ୍ର ଲାଗି ଫିଙ୍ଗି ଉପବୀତ,
ହୋଇଥିଲ ଯେ ଆଦର୍ଶ ସାଥେ ପରିଣୀତ,
ସେ ଯେ ଦୂରେ,
ସେ ଯେ ଦୂରେ ।
ଆଣି ଅଧା ପଥେ,
ଛାଡ଼ି ଚାଲିଗଲ, ଆମେ ଚାହିଁଛୁ ସମସ୍ତେ !

## ସାଆଁତ ମାଆ

ନୟନେ ଲୋତକ ହୃଦରେ କରୁଣା
ଦୀନ ଦୁଃଖୀ ପାଇଁ ଜନନୀ ସମା,
କହି ଦେଖି ନାହିଁ ମୂରୁଖ ସିନା ସେ
ଦେବୀ ମୋ ପ୍ରାଣର ସାଆଁତ ମାଆ ।
ବିଦୁଷୀ, ରୂପସୀ ରୂପେ ମୁଁ ଭେଟିଛି
ନାରୀକି ଧରାର ଅନେକ ଭାଗେ,
କେବଳ ସେହି ସେ ନିରକ୍ଷରାର
ଚରଣ ଧୂଳି ମୋ'ମଉଳି ମାଗେ ।

କ୍ଷୁଦ୍ର ଗାଆଁର ଦୁଃସ୍ଥ, ନିର୍ଦ୍ଧନ
ତାହାରି ହାତକୁ ଥାଆଁତି ଚାହିଁ,
ଖୁଦ, ତଣ୍ଡୁଳ ଯା'ମିଳେ ତା ହାତୁଁ
ପ୍ରସନ୍ନ ମନେ ଫେରଁତି ପାଇ ।
ନିଜେ ସେ କିନ୍ତୁ ମୂର୍ତ୍ତ ଦୈନ୍ୟ,
ପ୍ରସବି ଅନେକ, ନିସନ୍ତାନ,
ସ୍ୱାମୀ ଗଉରବ ଜାଣି ନ ଜାଣିଛି,
ବିଧବା କରିଛି ବିଧାତା-ବାଣ ।
ତଥାପି ପରାଣେ ତିକ୍ତତା ନାହିଁ
ଆପଣା କଷଣ ପରାଣେ ମାରେ
ଆଶ୍ରିତ ଜନ ଅଳି ଆର୍ଦ୍ଦୋଳି
ଉଠୁଁ, ବସୁଁ, ଖାଉଁ ନିରତେ ଭାଳେ ।
ପିତା-ମାତା-ହୀନ ଶଇଶବୁ ମୁଁ ଯେ
ଜନନୀ-ଅଭାବ ଜାଣିନି ଦିନେ,
ସାଆଁତ ମାଆ ମୋ ଦ୍ୱିତୀୟା ଜନନୀ
ଗରଭ-ଧାରୀରୁ ନୁହଇ ଭିନେ ।
ଜଗତ ବୁଲିଲି ବଡ଼ଲୋକ ହେଲି
କରମେ ବିରାମ ମିଳୁନି ଜମା,
ତଥାପି ସ୍ମରଇ ପିଲାଦିନ ଅଳି
'ଖାଇବାକୁ ଦିଅ ସାଆଁତ ମାଆ ।'
ପ୍ରବାସେ ବିଳାସେ ଯାପୁଛି ମୁଁ ଦିନ
ଭଗ୍ନ କୁଟୀରେ ଅଛି ସେ ପଡ଼ି,
ପୁରାତନ ମାଟି ଛାଡ଼ି ନାହିଁ ଯିବ,
ବ୍ୟଥାରେ ମୋ ବୁକୁ ମରେ ଗୁମରି ।
ସ୍ତନ ଛାଡ଼ି ସବୁ ଜନନୀର ଯାହା
ନେଇ ବଢ଼ାଇଲ ଅଧମେ ଏହି,
କି ଦେଇ ଶୁଝିବି ଏତେ ତବ ଋଣ ?
କିପାରେ, ଅଧମ-ଜୀବନ ଦେଇ ?
ଜନନୀର ସ୍ନେହ ଅଶୁଝ ଧରାରେ,
ପୁରୁଷର ମଥା ନୁଅଇଁ ସେଥି,
ଜୀବନେ ଜୀବନେ ତମ ପାଦ ଧୂଳି
ଦିଅ ସାଆଁତମା' କପାଳେ ଲେଖି ।

—

# ହେ ନଟ-କୁମାର !

ବନ୍ଧୁର ଶଇଳ-ସ୍ତରେ କମ୍ରା ଖଡ଼କାଇ
ଚାଲେ ନାଚି ଗାଇ,
ବିହ୍ୱଳ, ବିମୁଗ୍ଧ, ମତ୍ତ ନିଜ ତୌର୍ଯ୍ୟତ୍ରିକେ,
ଅବିରାମ-ନୃତ୍ୟ-ଗତି, ନ ଥାଉ ସାଖୀ କେ ।
ତାହାରିଠୁ ଶିଖିଥିଲ ପରା ସେ ବିଳାସ,
ନିଜ ଅଙ୍ଗୁ ସୃଷ୍ଟି ନିଜ ରାସ,
ହେ ଶୁଭେନ୍ଦ୍ର, ରାଜପୁତ୍ର, କମନୀୟ ହସ୍ତ ପଦ ତବ
ବ୍ୟସନେ ନ ମାତି ତେଣୁ କଲା ରୂପ-ତରଙ୍ଗ ସମ୍ଭବ ।

ଏ ରୁକ୍ଷ ବାସ୍ତବ ଧରା, ଚାରିଆଡ଼େ ମାଟି ଧୂଳି ମାତ୍ର
କୁତ୍ସିତ କରମ ଯେତେ ତା’ରି ପାଇଁ ଗଢ଼ା ମନ, ଗାତ୍ର,
କେତେ ଦିନ ଏ କୁତ୍ସିତ ଧରା
ଟାଣି ରଖି ପାରିଥାନ୍ତା, ତମ ଚିତ୍ତେ ନର୍ତ୍ତନ-ଉତ୍ତଳା ?
ଜ୍ୟୋତିର୍ମୟ ବିଶ୍ୱେ ଯହିଁ ମଣ୍ଡଳେ ମଣ୍ଡଳେ
ଲାଗିଅଛି ନୃତ୍ୟ ଲୀଳା ବିଷ୍ଣୁ ନେତ୍ର ତଳେ,
ଯେ ନୃତ୍ୟର ଛନ୍ଦେ ଛନ୍ଦେ କୋଟି କୋଟି ଧରା ଏହିପରି
ଯାଉଛନ୍ତି ମହା ବ୍ୟୋମେ ସୃଷ୍ଟି ସ୍ଥିତି-ନାଶ-ଧର୍ମେ ଝଡ଼ି;
ସେହି ଯେ ତୁମର ସ୍ଥାନ, ନୃତ୍ୟଶୀଳ ହେ ରାଜକୁମାର,
ତେଣୁ ଏତେ ତୁରନ୍ତରେ ଗଲ ଛାଡ଼ି ଏ ରୁକ୍ଷ ସଂସାର ।

ଛାଡ଼ି କିନ୍ତୁ ଯାଇଅଛ ସ୍ମୃତି,
ମାଟି ଦେହୁ ହୋଇ ପାରେ କେମନ୍ତେ ରୂପ-ଲକ୍ଷ୍ମୀର ଜାଗୃତି,
ବିନା ମେଘେ କେମନ୍ତେ ଭୋଗ ହୋଇପାରେ ନୃତ୍ୟ ବରହୀର,
ଚନ୍ଦ୍ରାଭାଗା-ରୂପ କେମନ୍ତେ କଲା ସୂର୍ଯ୍ୟେ ପୀରତି-ଅସ୍ଥିର ।

ମନ୍ତ୍ରଦାତ୍ରୀ ଖଡ଼କାଇ ଡାକିନେଲା ତବ ଯୋଗ୍ୟ ଥାନେ,
ଉତ୍କଳର ନାଟ୍ୟ-ସତ୍ର ଶୂନ୍ୟ ଆଜି ସେହି ଅଭିମାନେ ।

---

[ଢେ଼ଙ୍କାନାଳର ବିଖ୍ୟାତ ନୃତ୍ୟ-ଶିଳ୍ପୀ ରାଜକୁମାର ଶୁଭେନ୍ଦ୍ରଙ୍କ ଉଦ୍ଦେଶ୍ୟରେ ।]

—

# ଉତ୍ତିଷ୍ଠ ଉତ୍କଳ *

ଉଠରେ ସୁପ୍ତ ଜାତି,
ନିଦ୍ରା-ବିଭୋର ଦେଖି ତୋ ପଡ଼ୋଶୀ
ନେବେ ତୋ ଅଙ୍ଗ କାଟି ।

ଉତ୍ତରେ ଅଛି ଚତୁର ବଙ୍ଗ,
ଦକ୍ଷିଣେ ରହିଛି ଟାକି ତେଲଙ୍ଗ,
ଗୃଧ୍ର ସମାନ ଖୁଁପିବେ ଅଙ୍ଗ
ନେବେ ଆନନ୍ଦେ ବାଁଟି,
ଜୀବନଟା ଯଦି ଖାଲି ଚାହୁଁ, ଆଜି,
ଉଠରେ ସୁପ୍ତ ଜାତି ।

ସବୁ ତ ଯାଇଛି ମାଟି ତଳେ ମିଶି
ରାଜ୍ୟ ଓ ଇତିହାସ,
ଅଛି ଖାଲି ଆଜି 'ଅସଭ୍ୟ' ବୋଲି
ଜଗତର ପରିହାସ ।
କେଶରୀ-ରକ୍ତ ଆଜି ମିଶେ ଯଦି
ଧରଇ ତୋହର ଛାତି,
ହଲା ତୋ କେଶର, ନିଦ୍ରା ତିଆଗି
ସୁପ୍ତ ଓଡ଼ିଆ ଜାତି ।
ଇତିହାସ କହେ ପରା,
ଗଙ୍ଗା କୂଳରୁ ଗୋଦାବରୀ ଯାଏ
ଥିଲା ଉତ୍କଳ ଧରା ?

ପିତା-ପିତାମହ-ରକ୍ତାର୍ଜିତ,
'ଜୟ-ଗଜପତି-ଜୟ'- ଗର୍ଜିତ,
ଓଡ଼ିଆ ପାଇକ-ବାହୁ-ସର୍ଜିତ,
ପୂର୍ଣ୍ଣ- ଶସ୍ୟ-ଫଳା ।
ଆରେ ହତଭାଗା ଜାତି କାହିଁ ଆଜି
ସେ ଯେ ଉତ୍କଳ ଧରା ?

[*ଏହି କବିତାଟି ଖୁବ୍ ସମ୍ଭବତଃ ଓଡିଶାର ସୀମା ନିର୍ଦ୍ଧେଶ ପାଇଁ ଓଡ୍‌ନେଲ କମିଟି ବସିଥି
ବେଳେ ଲେଖାହୋଇଥିଲା ଓ ବୋଧହୁଏ 'ଆଶା' କାଗଜରେ ପ୍ରକାଶିତ ହୋଇଥିଲା ।]

କାପୁରୁଷ ପରି ଦେଖିଲୁ ନେବାର
ଏକେ ଏକେ ପ୍ରତିବାସୀ,
ପୈତୃକ ଭୂମି; ଦୁର୍ବଳ ଦେଖି
ଶାସିଲେ ଭିନ୍ନ-ଭାଷୀ ।
ତତେ ନ ପଚାରି ରାଜ୍ୟ ତୋହର
ହୋଇଛି ଭଙ୍ଗା-ଗଢ଼ା,
ଆଜି କାପୁରୁଷ, ଭାଗରେ ନିଦ
ସୁଯୋଗ ଆସିଛି ପରା ?

ତୋହରି ଅନ୍ନ ପାଇଁ
କେତେ ଜାତି ଦିନେ ଅଞ୍ଜଳି ପାତି
ତୋର ମୁଖେ ଥିଲେ ଚାହିଁ ।
ତତେ ପୁଣି ଆଜି ଦୁଆରେ ଦୁଆରେ
ବୁଲିବାକୁ ହେଲା; ଏହାରେ ତାହାରେ
ମାଗିବାକୁ ହେଲା ଖୋଜି ତୋ ଆହାର
ରାଜ୍ୟ ବାହାରେ ଯାଇ ।
ଏତେ ଅପମାନ କେ ସହେରେ ଭାଇ,
ମନୁଷ୍ୟ ଜୀବ ପାଇ ?

ଏକ ଦିନ ଯେ ରେ ଆତିଥ୍ୟେ ତୋର
ମଣିଲେ ନିଜକୁ ଧନ୍ୟ,
ଦାନ୍ତ ଦେଖାଇ ସେହି ଆଜି କହେ
'ଉଡ଼େ' 'ଅସଭ୍ୟ' 'ବନ୍ୟ' ।
ରାଜ୍ୟ ଯାଇଛି, ରାଜା ତ ଯାଇଛି
ଇତିହାସ ଅଛି ଯାଇ,
ତା ବୋଲିକି ନିଜ ଇଜ୍ଜତ ତୋର
ହାତରେ ରଖିବୁ ନାଇଁ ?

ଇଜ୍ଜତ ରଖ ତୋର,
ଡକାଡକି ହୋଇ ଉଠରେ ଓଡ଼ିଆ
ଗଭୀର ନିଦ୍ରା-ଭୋଳ ।
ସମ୍ବଲପୁର ଡାକୁ ଗଞ୍ଜାମେ
ସେ ଡାକ ଉଠୁରେ ସିଂହଭୂମ୍ ଧାମେ

ଜୟପୁର ଥରୁ ଜନନୀର ନାମେ
ସାରା ଦେଶେ ଉଠୁ ରୋଳ,
ହାତ ଧରାଧରି ଠିଆ ହୋଇ ଥରେ
'ଜୟ ଉତ୍କଳ' ବୋଲ ।

ଦେଖିବା କେ ଅଛି ବଳୀୟାନ୍ ଭବେ
ନେବେ ଉତ୍କଳ କାଟି,
ସୂଚୀ-ପରିମାଣ-ଭୂମି ଲାଗି ହେବ
ରକ୍ତିତ ଏଇ ମାଟି ।
ଖାଲି ଉଠିପଡ଼ି ଏକାଠି ହୁଅରେ
ଗଭୀର ନିଦ୍ରା-ଭୋଳ,
ସବୁ ତ ଯାଇଛି ନିଜ ଘରେ ନିଜ
ଇଜ୍ଜତ ରହୁ ତୋର ।

## ରାଧାନାଥ

ଉତ୍କଳର ନଦୀ, ବଣେ, ହ୍ରଦେ, ଗିରିମାଳେ
ଯେ ରୂପ ନଫୁଟି କାହା ଲେଖନୀର ଗାରେ
ଥିଲା ରହି ଯୁଗ ଯୁଗ ମୌନ ଅଭିମାନେ
ପୂଜା ସେ ପାଇଲା, ରାଧାନାଥ, ତବ ଗାନେ ।

## ବନ୍ଦେ ଉତ୍କଳ ଜନନୀ

ବନ୍ଦେ ଉତ୍କଳ ଜନନୀ,
ଶ୍ୟାମ-ଶିଖରୀ-ଶିରା ସିନ୍ଧୁ ବିଧୌତା
ପାବନ-ନଦ-ନଦୀ-ତରଙ୍ଗ-ଧୌତା
ଶବଳିତ ସୁନ୍ଦର ଧରଣୀ
ବନ୍ଦେ ଉତ୍କଳ ଜନନୀ ।

ମନ୍ଦିରମୟୀ ତବ କପୋଳ ତଳେ,
କେତେ ଶତ ବର୍ଷର କାହାଣୀ ଝଳେ,
ଯେତେ ଇତିହାସ ଗତ ନୟନ ତଳେ,
ନାହିଁଛି ଜଗତେ ତାର ସ୍ମରଣୀ,
ବନ୍ଦେ ଉତ୍କଳ ଜନନୀ ।

ତବ ପୋତ ରାଜି ଦିନେ ନୀଳ ସାଗରେ,
ତବ ସଭ୍ୟତା ଦୂର ଦେଶ ଭାଗରେ
ବୋହି ନେଲା । ସେହି ଗୌରବ-ରାଗରେ
ରଞ୍ଜିତ ଶତ ଦେଶ, ଦ୍ୱୀପ କାହାଣୀ,
ବନ୍ଦେ ଉତ୍କଳ ଜନନୀ ।

ତୋର ମନ୍ଦିରେ କେତେ ସାଧକ ଆସି
ମୁକ୍ତି ଖୋଜିଲେ ଜାଳି ବାସନା ରାଶି,
ଧର୍ମର ଉର୍ମି ତୋ ବେଳାରୁ ଭାସି
ପ୍ଲାବିତ କରିଛି କେତେ ଭୂମି ଜନନୀ,
ବନ୍ଦେ ଉତ୍କଳ ଜନନୀ ।

ଜାହ୍ନବୀ ଗୋଦାବରୀ ସେବିଲେ ଦିନେ
ପଦ ତୋର ଉତ୍ତରେ ପୁଣି ଦକ୍ଷିଣେ,
ଯେ ଦେଶେ ଗଲା ତୋ ପୁଅ, ସେ ଦେଶ ଜିଣେ
ବିଜୟ-ବାହିନୀ ତୋର ସରଣୀ
ବନ୍ଦେ ଉତ୍କଳ ଜନନୀ ।

ରାଜା ତୋର ରଞ୍ଜିଲା ଶ୍ୟାମଳ ଭାଲ
ରଚି ଚାରୁ ମନ୍ଦିର ମୁକୁଟ ଜାଳ,
ଜଗତେ କାହିଁଛି କହ ତୁଳନା ତାର,
କଳାବତୀ ଉତ୍କଳ ଧରଣୀ,
ବନ୍ଦେ ଉତ୍କଳ ଜନନୀ ।

ସେ ଦିନ ସେ ଗଉରବ ନାହିଁ ମା ଆଉ
ଖଡ଼ଗ ଧରଇ ନାହିଁ ଓଡ଼ିଆ ବାହୁ,
ନ ଆସେ ଓଡ଼ିଆ ରାଜା ବିଜୟେ କାହୁଁ
ମୁଖରିତ କରି ତୋର ସରଣୀ
ବନ୍ଦେ ଉତ୍କଳ ଜନନୀ ।

ସେ କାଳ ଆସିବ ଆଉ ଫେରିକି ଥରେ,
ବୋଇତ ଭାସିବ ପୁଣି ନୀଳ ସାଗରେ
ଗୋଦାବରୀ-ଜାହ୍ନବୀ ଧୋଇବେ ଜଳେ
ପୁଣି ଏହି ତାଳ-ନୀଳ-ବେଳା ଧରଣୀ,
ବନ୍ଦେ ଉତ୍କଳ ଜନନୀ ।

—

# ପଲ୍ଲୀପ୍ରିୟା

ନଗରେ ଆଜି ଗୋ, ଚିତ୍ତେ ଉଠଇ ପଲ୍ଲୀପ୍ରିୟା
ସରମ-ଲୋହିତ ତା'ଗଣ୍ଡ ଛବି ମଥାଏ ହିୟା,
ବହୁ ଦୂରେ ଛାଡ଼ି ଆସିଛି ରୂପସୀ ପଲ୍ଲୀପ୍ରିୟା ।
ସଙ୍ଗିନୀରେ ଘେନି ଯାଏ ସେ ସ୍ନାହାନେ ସରସୀ-କୂଳେ
ସରଣୀ ଶୋଭାଇ ଆପଣା-ଚରଣ- ପଲାଶ ଫୁଲେ,
ନୂପୁର ଯୁଗଳ କହୁଥାଏ କଥା ପାହୁଡ଼ ତୁଲେ ।
କୁଙ୍କୁମ ଲେପ- କନକ ବରଣା ଫେରଇ ଘରେ,
ଆର୍ଦ୍ରବସନ, ଜଡ଼ିତ ଅଳସେ ବକ୍ଷ ପରେ,
କଳସୀର ଭାରେ ନୟନ ଥାଏ ଗୋ ଧରଣୀ ପରେ ।

ପଥେ ଘାଟେ ଗୃହେ ବାର ବାର ମୁହିଁ ଦେଖିଛି ତା'ରେ
ଥର ଥର ନୂଆ ନୃତ୍ୟ କଲା ସେ ଚିତ୍ତ-ଦ୍ୱାରେ,
ଥର ଥର ନୂଆ ରାଗିଣୀ ବାଜିଲା ବୀଣାର ତାରେ ।
ଦେଖିଛି ତାହାରେ ଶରମକ୍ଲାନ୍ତ ଗୃହିଣୀ ପରି,
ସ୍ୱିନ୍ନ ଲଲାଟେ ଚୂର୍ଣ୍ଣ ଚିକୁର ଥାଏ ଗୋ ଜଡ଼ି,
ଶିଥିଳ ବସନ ଅଙ୍ଗ ଦେଖାଏ ବକ୍ଷ ଧରି ।
ନବ କର୍ଷିତ ଧରଣୀ-ଗନ୍ଧେ ନାସିକା ତା'ର
ଫୁଲିବାର ଶୋଭା ଦେଖିଛି ଏଜନ ଅନେକ ବାର,
ଥରିଉଠୁଥାଏ ନାସାର କନକ ଅଳଂକାର ।

ପୁନ୍ନାଗ ବନେ ଫଳ-ଆହରଣେ- ବିଲୋଳ ଗତି,
ଦେଖିଛି ଚିକୁର ଝୁଲିପଡ଼ିଥାଏ ଚରଣ ପ୍ରତି,
ପଛରେ ପଣତ ନଇଁ ତା'ରେ ଦେଇ- ଥାଏ ପ୍ରଣତି ।
କିନ୍ନରୀ ପରି ଦେଖିଛି ବୁଲିବା ବାରିଧି-ବେଳା
ଏକାକିନୀ; ଦୂରେ ଭାସିଯାଉଥାଏ ସାଗର ଭେଳା,
କଉତୁକିନୀର ତରଳ ଲୋଚନ କରଇ ଖେଳା ।
ଯହିଁ ଯାଏ ସେ ଗୋ, ହୁଅଇ ସେଥିର ଅଳଂକାର
ସ୍ନାହାନେ ତଡ଼ାଗେ ପଦ୍ମ ଫୁଟଇ ମୁଖରେ ତା'ର,
ଶୟନେ ଲଭଇ ଧରଣୀ କନକ- କୁସୁମହାର ।
ଜ୍ୟୋତ୍ସ୍ନାରେ ଦିନେ ଭେଟିଲି ତା'ରେ ମୁଁ ଗ୍ରାମର ଶେଷେ,
କନିଅର ଫୁଲ ଅଯତନେ ଥିଲା କଜଳ-କେଶେ,
ଭାବିଲି ବା ତା'ର ଅଭିସାର ହେବ ଆଜି ଏ ବେଶେ ।

ପଚାରୁଁ ସରମେ ହସି ଲୁଚିଗଲା ନିକଟ ବନେ,
ବୁଝିଲି ସେ ଯାଏ ରନ୍ଧନ-କାଠ ଅନ୍ୱେଷଣେ,
ପଲ୍ଲୀବାଳା ସେ ଅଭିସାର କାହିଁ ତା ଯଉବନେ ?
କୁସୁମ ପରି ସେ ଆପଣାର ରୂପ ଜାଣଇ ନାହିଁ,
ସେଥିଲାଗି ସିନା ଆକର୍ଷଣ ସେ ରୂପ ପାଇଁ,
ନୀରବତା ତା'ର ଆହ୍ୱାନ କରେ ଅଧିକେ ବାଇ ।

ଚୈତ୍ରେ ଦିନେକ ବସନ୍ତ ବହେ ଗ୍ରାମଟି ଧରି,
ବାଡ଼ି-ସହକାର- ମଞ୍ଜରୀ ଉଠେ ମଳୟେ ଥରି
ପ୍ରାଙ୍ଗଣ ସାରା ଗୁରୁ ସଉରଭେ ରହିଛି ଭରି ।
କରମ-କ୍ଳାନ୍ତ ତରୁଣୀ ସେ ଦିନ ପଣତ ଛାଇ
ରବି-ତାପୁଁ, ବନ- ଛାୟେ ସେ ଶୟନ ରଚିଛି ଯାଇ,
ଏକାକିନୀ ସେ ଗୋ, ବକ୍ଷେ ବସନ କିଛି ହିଁ ନାହିଁ ।
ସହସା ପହଁଚି ଚକିତେ କହିଲି, "ହେ ସୁନ୍ଦରି !
ବିଶ୍ୱେ ପାଗଳ କରନା ବକ୍ଷେ ନଗ୍ନ କରି ।"
ଚମକିଉଠିଲା ହରିଣୀ ପରି ସେ ମନୋଦରୀ !

ଛନକି ଉଠିଲା ଯିବାକୁ ଆପଣା ଭବନ-ପଥେ
କହିଲି ମୁଁ, "ଆଗୋ ବାଣୀ କିଛି ମୋର କର୍ଣ୍ଣଗତେ
ଘେନି ଚଳ ପଛେ, ବାଧା ନାହିଁ, ନିଜ ଭବନ-ପଥେ ।"
ଥମକିଲା ଗୋରୀ, କହିଲି ମୁଁ, "କହ, ଭଗିନୀ ମୋର,
କେହି କି କେବେ ଗୋ ତୋଳିଛି ଦେଉଳ ହୃଦୟେ ତୋର ?
ଆଉ କା ନୟନେ ବଁଧା ଅଛି ତୋର ନୟନ-ଡୋର ?"
ମୂଢ଼ବତ ମତେ ରହିଲା ଚାହିଁ ସେ ପଲ୍ଲୀବାଳା,
ପଣତ ରହିଲା ଚଳହୀନ, ମୂକ ପଦର ବଳା,
"ବୁଝି ନାହିଁ ପାରେ; ଛାଡ଼ ଯାଏ ମୁହିଁ" ବୋଲି କହିଲା ।
ବୁଝି ପାରିଲାନି । ବିଫଳ ପୂଜାରୀ ଫେରିଲା ଘରେ,
ବାଳିକା ପରି ସେ ତରୁଣୀ ଚଳିଲା ସରଣୀ ପରେ,
ଫେଇଲାନି ଫେରି ଏ ପୂଜାରୀ ପରେ ନୟନ ଥରେ ।

ବାଣ ମାରି ଯଦି ନଶିଖିଲା, କଳା ନୟନ କିଆଁ,
ପ୍ରତିମା ନଥାଇ କି ଲାଭ ରଖି ଗୋ ଶୂନ୍ୟ ହିୟା ?
ଏ କଥା କି ଆହା ଜାଣେ ଗୋ ରୂପସୀ ପଲ୍ଲୀପ୍ରିୟା ?

ବ୍ୟବହାରହୀନେ ଭୂଧନୁ ଶୋଇଛି ଜନମ କାଳୁ
କଟାକ୍ଷ କିସ ଜାଣେନା ତାହାର ନୟନଟାରୁ
ଜାଣନା କେବେ ସେ ଡାକ ପାଇଥିଲା କାହାରିଠାରୁ ।
ତଥାପି ଭୁଲିନି ଏ କବି ତୁମରେ ପଲ୍ଲୀପ୍ରିୟା,
ନିତ୍ୟ ତୁମର ଜଳବାହୀ ଶୋଭା ଖୋଜଇ ହିଆ,
ନିତ୍ୟ ଭାବଇ, 'ଦୂରେ ଯେ ରହିଲା ପଲ୍ଲୀପ୍ରିୟା ।'

## ସ୍ୱାଗତ ବିନୋବା

ଏ ଅତିଥିବର କିଏ ଦ୍ୱାରେ ?
ଡାକ ଦିଏ ମହା ଜନତାରେ,
''ହେ ଭାରତ, ନାହିଁ ଭୁଲ ତ୍ୟାଗର ଆନନ୍ଦ,
ଦ୍ରବ୍ୟହୀନ, ବାଧାହୀନ ପ୍ରାଣ ସହ ପ୍ରାଣର ସଂବନ୍ଧ,
ସଂଚୟର କ୍ରୂର ବ୍ୟବଧାନେ,
ନାରାୟଣେ ନାହିଁ ଠେଲ ନିଜ କ୍ଷୁଦ୍ର ସ୍ୱାର୍ଥର ଆହ୍ୱାନେ ।

ଏହି ସେହି ଦେଶ
ପ୍ରଜା ଶୁଭ ଲାଗି ରାଜା ଧରେ ଯହିଁ ସନ୍ନ୍ୟାସୀର ବେଶ,
ମାନବର ଦୁଃଖେ ମୁହ୍ୟମାନ
ରାଜପୁତ୍ର ଗୃହ ତେଜି ଜନପଦ ଧୂଳିମୟ ପଥେ
ବିତରେ ତା' ସତ୍ୟର ସନ୍ଧାନ ।

ଦିଅ ଭାଇ ଅକୁଣ୍ଠିତ ପ୍ରାଣେ
ଆପଣାକୁ ମୁକ୍ତ କରି ସ୍ୱ-ଲାଭର ଜଟିଳ ଧୂମରୁ,
ଠିଆହୁଅ ବିଧାତାର ସହସ୍ର ସମାନେ ।
ହିଡ଼, ବାଡ଼ ନାହିଁ ବିଧାତାର,
ବିରାଜିତ ସେ ଦେବତା କୋଟି କୋଟି ହୃଦେ ଜନତାର ।
ହେ ଭାରତ, ଭୁଲ ନାହିଁ ତୋ ଶାଶ୍ୱତ ସାଧନାର ପଥ
ଆରାଧନେ ସେହି ଦେବତାର ।''

ସ୍ୱାଗତ ଉତ୍କଳ ଭୂମେ ହେ ମହା ଅତିଥି,
ଭିକ୍ଷୁପତି ଶ୍ରୀ ବିନୋବା ବାଭେ,

କି ନିମନ୍ତେ କର ଭିକ୍ଷା, ବାର୍ଦ୍ଧକ୍ୟରେ ଗୁରୁ ପଦଶ୍ରମେ
ପୁରେ, ଗ୍ରାମେ ଭ୍ରମି ଏହି ପ୍ରଦେଶୁ ପ୍ରଦେଶେ
ଆତ୍ମାର କି ଅପୂରା ଅଭାବେ ?

ସମଗ୍ର ଧରଣୀ ପୃଷ୍ଠେ ହେ ଦରିଦ୍ରତମ,
ଦରିଦ୍ର-ଦେବତା ପାଇଁ ଏ ଯେ ତବ ବିତ୍ତ-ମେଧ-ଯଜ୍ଞ,
ପାବନ ତା' ହୋମ-ଧୂମ ନଭେ ନଭେ ଅଲକ୍ଷେ ପ୍ରସରେ,
ଲୋକେ ଲୋକେ ଦେଶଦେଶାନ୍ତରେ
ଶକ୍ତି-ଦୃପ୍ତ ଶତ ମଥା, ପୁଣ୍ୟ, ଦୀନ, ନମ୍ର ଭାରତରେ
ନଇଁ ଆସେ ଶଙ୍କିତ ଅନ୍ତରେ ।

ଏଇ ବୁଦ୍ଧ, ଗାନ୍ଧୀର ଦେଶରେ
ଥିଲା ଓ ନ-ଥିଲା ଯହିଁ ଆଲିଙ୍ଗନ କରେ ପରସ୍ପରେ,
ଦେଉଛ ଦରିଦ୍ରତମେ ଆଜି ତହିଁ ଦାତାର ଗୌରବ,
ବିତ୍ତବନ୍ତେ ପୁଣ୍ୟର ସୌରଭ
ବ୍ରହ୍ମଚାରୀ, ହେ ମହା ଭିଖାରି,
ପ୍ରେମର ହେ ବର୍ଗୀ ଅଭିନବ,
ଦୀନ କବି କରଇ ସ୍ୱାଗତ
ଶୁଭେ ଶେଷକର ଦୈନ୍ୟ-କବି
ଏ ମଧୁର ଭୂମି-ଭାଗବତ ।

ଆସ ଘରେ, ଯାହା ଇଚ୍ଛା କର ହେ ଲୁଣ୍ଠନ
ବସ୍ତ୍ରହୀନ, ବାସହୀନ, ଆଶାହୀନ ଯେତେ
ସେଇ କୋଟି ନାରାୟଣେ କର ହେ ବଣ୍ଟନ,
ତାଙ୍କ ପ୍ରାଣ-ପ୍ରସନ୍ନ-ସ୍ମିତରେ
ବିତ୍ତର ନବୀନାଲୋକ ବିଶ୍ୱ ଆଜି କରୁ ବିଲୋକନ ।

ଆସ ଘରେ, ଆସ ମହାଭାଗ,
ଆମରି ପାଇଁକି ସିନା ତମର ଏ ଶ୍ରମ
ଏ ଅପୂର୍ବ-ଲୋଭ-ମେଧ ଯାଗ ।

—

# ଛବିଶ ଜାନୁୟାରୀ *

ଜନନୀ ଭାରତ,
ତୋ ମାଟିରେ ଗଣରାଜ୍ୟ ପୁନରୁତ୍‌ଥାନର
ସ୍ମାରକ ଦିବସେ ଆଜି କରେ ନମସ୍କାର ।

ସ୍ନେହମୟୀ, ତିଂଶକୋଟି-ସନ୍ତାନ-ଜନନୀ,
କଲ୍ୟାଣ କରୁଣାମୟ ତୋର ପକ୍ଷ ପୁଟେ
ସହସ୍ର ବର୍ଷର ଘୋର ଦୁର୍ଦ୍ଦିନ ସଂକଟେ
ଶତଶତ ଆକ୍ରମଣୁ, ସାମ୍ରାଜ୍ୟର ଉତ୍‌ଥାନ ପତନେ
ବଞ୍ଚାଇ କି ରଖିଥିଲୁ ଏଇ ତୋର ଅରକ୍ଷ ଜାତିରେ,
ଗହନ ଅନ୍ତରେ,
ଗୋପନେ ସାଇତି ରଖି ଏହି ମହାସ୍ୱପ୍ନ
ନିଜ-ପୁତ୍ର କନ୍ୟାଙ୍କର ଗଣରାଜ୍ୟ-ସ୍ୱରାଜ୍ୟ ସମ୍ଭୋଗ
ହେବ ଦିନେ ପୁନର୍ବାର; ଇତିହାସ ପ୍ରଥମ ଦିନରେ
ତୁହି ଯେବେ ଠିଆକଲୁ ଆଦ୍ୟେ ତୋର ଶାନ୍ତ ଗୃହସ୍ଥଳୀ
ହିମାଚଳ ପାଦତଳେ,
ଶ୍ରେଣୀହୀନ, ଭୟହୀନ, ନରପତିହୀନ
ଜୀବନ ସମ୍ଭୋଗକାରୀ ସାମ୍ୟତନ୍ତ୍ର ରାଜ୍ୟ
ଗଢ଼ିଉଠିଥିଲା ଯେହ୍ନେ ଏଇ ତୋର ଆପଣା ମାଟିରେ ?

ଆଜିର ଏ ନବ ଗଣତନ୍ତ୍ରେ,
ଜନନୀ, ସ୍ୱରୂପ ତୋର ବହୁ ଯୁଗ ପରେ
ସ୍ପଷ୍ଟ ପ୍ରକଟିତ ଯେହ୍ନେ ବିରାଟ ଏ ଦେଶେ;
ସାତ୍ତ୍ୱିକ ଗୌରବମୟ ଦୀର୍ଘ ତୋର ଅନ୍ତରର ଗାଥା
ଆଜି ମୋର ପ୍ରାଣେ ପ୍ରାଣେ ବହେ ଯେହ୍ନେ କାଳ ପ୍ରତିଲୋମେ ।

ସମୟର ଶତ ଘନ ପ୍ରସ୍ତର ପାଚୀର
ଭେଦି ଏଇ ସ୍ପଷ୍ଟ ଯେହ୍ନେ ଶୁଣିବାକୁ ପାଏ
କଥୋପକଥନ,
ମହେନ୍ଦ୍ର-ଦରୀର ଘାଟେ ସିନ୍ଧୁ ନଦୀ ଜଳେ
ଆସୁର ବଣିକ ସାଥେ, ଦ୍ରାବିଡ଼ ଯୋଗୀର ।

---

[* ୧୯୫୬, ୨୫ ଜାନୁୟାରୀରେ ଅଲ୍‌ଇଣ୍ଡିଆ ରେଡିଓଦ୍ୱାରା ଦିଲ୍ଲୀଠାରେ ଅନୁଷ୍ଠିତ ସର୍ବଭାରତୀୟ କବି-ସଭାରେ ପଠିତ ।]

ପୁଣି କଣ୍ଠେ ବାଜେ,
ଶତଦ୍ରୁ ପୁଳିନେ ଆର୍ଯ୍ୟ ଋଷି-ବିମ୍ବୋଷ୍ଠରୁ
ପ୍ରଭାତେ ଉତ୍‌ଥିତ ସାମଗାନ ସୁଗମ୍ଭୀର,
ମାନବର ଇତିହାସେ ଶୁଣାଇ ପ୍ରଥମେ
ମାନବର ଚାରିପାଶେ ଦେବ ଅଧିଷ୍ଠାନ
ଆସେ ପୁଣି ଶାନ୍ତ କ୍ଷୁଦ୍ର ଅରଣ୍ୟ କୁଟୀରୁ
ବିରାଟ, ରସାଳ ମହା କବିତାର ଧ୍ୱନି
ପୌରୁଷ ଓ ନାରୀତ୍ୱର ମହା ଅଭିନୟ,
ନିଖିଳ ଜାତିର ମର୍ମ-ସ୍ୱପନର ଗାଥା
ରାମ-ସୀତା-କୃଷ୍ଣାର୍ଜ୍ଜୁନ-ଦ୍ରୌପଦୀର କଥା ।

ପୁଣି ଏଇ ଶୁଣ,
ଶୁଣ ଶୁଣ, ବିଶ୍ୱଜନେ,
ରାଜପୁତ୍ର ଫିଙ୍ଗିଦେଇ ସକଳ ବିଳାସ
ମାନବର ମୁକ୍ତିପାଇଁ ବରି କୃଚ୍ଛ୍ର-ପଥ
ଧର୍ମଚକ୍ର ପ୍ରବର୍ତ୍ତନ ମୃଗଦାବ-ବନେ
ଏଇ କରେ, ବ୍ୟାଖ୍ୟା କରି ଜନତାର ଭାଷେ
ମହାଧର୍ମ, ସତ୍ୟ, ନ୍ୟାୟ, ପ୍ରଜ୍ଞା, କରୁଣାର,
ଯା କଲ୍ୟାଣ-ଊର୍ମି
ପ୍ରସାରିତ କରିଅଛି ଆଲୋକ-ସଂସ୍କୃତି
ଧରଣୀର ଦେଶେ ଦେଶେ କୋଟି କୋଟି ଜନେ
ଦେଖାଇ ସରଳ ପନ୍ଥା ପୁଣ୍ୟ ସାଧନାର ।

ଜନନୀ, ଅତୀତ ପରି ତୋ ଶତ-ବୋଇତ
ପୁଣି ଯିବ ଘାଟେ ଘାଟେ ସାତ ସମୁଦ୍ରର,
ପହଞ୍ଚାଇ ଦେଶେ ଦେଶେ ସେହି ତୋର ବାର୍ତ୍ତା ସନାତନୀ—
''ଜୀବନ ଆନନ୍ଦମୟ, ଜୀବନ ପବିତ୍ର,
ଜନ୍ତୁର ସ୍ୱଭାବ ହିଂସା, ନୁହେଁ ମନୁଷ୍ୟର,
ହତ୍ୟାରୁ ଆଶ୍ରୟ ବଡ଼, ବୈରରୁ ମିତ୍ରତା,
ବର୍ଣ୍ଣ-ନିର୍ବିଶେଷେ
ଈଶ୍ୱର ଆସୀନ ପ୍ରତି ମନୁଷ୍ୟର ବୁକେ ।
ସତ୍ୟ ଏକ,
ଭିନ୍ନ ଉଚ୍ଚାରିତ ଯାହା ପ୍ରଚାରକ ମୁଖେ ।''

ସହସ୍ର ବର୍ଷର ସେହି ଘୋର ଦୁର୍ଦ୍ଦିନରେ
ଯାର ଅନ୍ଧକାର ଏଇ ତୁଟିଲା ସେଦିନ,
ତମେ କି ମା ଆପଣାର ନିଗୂଢ଼ ଅନ୍ତରେ
ତପୋମଗ୍ନ ଥିଲ ରହି ସେହି ଦୁଇ ବରପୁତ୍ର ଲାଗି,
ମାତୃପ୍ରିୟ, ଭ୍ରାତୃପ୍ରିୟ ଗଣହୃଦସମ୍ରାଟ, ଯାହାଙ୍କ
ତ୍ୟାଗପୂତ, ଶୁଭଙ୍କର, ସ୍ୱାର୍ଥହୀନ ପୁଣ୍ୟ ପରଶରେ
ଘଟିଅଛି ଏହି ଏକ ଜନ୍ମେ
ଜନ୍ମାନ୍ତର ମୋହପରି କୋଟି ଜୀବନର;
ଆଣିଲେ ଆମକୁ ଯେହୁ ଅନ୍ଧକାରୁ ଉନ୍ମୁକ୍ତ ଆଲୋକେ
ମିଥ୍ୟାରୁ ସତ୍ୟରେ, ପୁଣି ମୃତ୍ୟୁରୁ ଜୀବନେ ?
ପୁଣ୍ୟ ସ୍ପର୍ଶେ ବାପୁଜୀର ଜଡ଼ କୋଟି କୋଟି
ହେଲେ କ୍ଷୁବ୍‌ଧ ପ୍ରାଣବନ୍ତ, ନବ ସଚେତନ
ମାନବିକ ଅଧିକାରେ ।

ବାପୁଜୀର ପଛେ,
ନିର୍ମାତା ନେହେରୁ,
ଧୀରେ କରେ ସେ ବିରାଟ ଜାଗ୍ରତ ଗଣରେ
ସମୃଦ୍ଧ, ଶ୍ରୀମନ୍ତ ନିଜ ପୁରାତନ ଭୂମେ,
ବିଶ୍ୱଜାତି-ମେଳେ ପୁଣି ବରେଣ୍ୟ, ଶରଣ୍ୟ,—
ସମ୍ମାନିତ, ଶତ୍ରୁ ବୋଲି ପର-ଶାସନର
ଏ ଧରାର ସକଳ ପ୍ରାନ୍ତରେ
ଶ୍ରେଷ୍ଠ ବନ୍ଧୁ ପରପୀଡ଼ିତର ।

ତୋର ସ୍ୱପ୍ନ ଅନୁଯାୟୀ, ତୋର ପ୍ରିୟସନ୍ତାନ-ଗଠିତ
ଯେଣୁ ଏଇ ଭାରତର ନବ ଗଣତନ୍ତ୍ର,
ତାହାର ସ୍ୱାଧୀନ ପ୍ରଜା, ଆଜିର ଏ ସ୍ମାରକ ଦିବସେ
ପ୍ରେରିବାକୁ ଚାହେଁ ତା'ର ସମଜନେ ଏ ଧରାର ସକଳ ଦେଶରେ,
ସେହି ତୋର ବାଣୀ ସନାତନୀ
ସୌହାର୍ଦ୍ଦ୍ୟର, ସହାବସ୍ଥାନର —
''ଆସ ଚୀନ, ଆସ ବର୍ମା, ଆସ ହେ ନିପ୍‌ପନ,
ଆସ ୟୁରୋ-ଆମେରିକା, ଆସ ସୋଭିଏଟ,
ବୁଦ୍ଧ-ଗାନ୍ଧୀ-ପୂତ ଏହି ଅବୈର ମାଟିରେ

ଅନ୍ୟୋନ୍ୟ ବୈରତା ତେଜି ମହାମାନବର
ଏ ମହା ମିଳନ ଭୂମେ ମିଳ ବନ୍ଧୁ ସମ ।

ଜନନୀ ଭାରତବର୍ଷ ଖୋଲିଛି ତା ଦ୍ୱାର,
ଶତ୍ରୁ ମିତ୍ର ଯିଏ ଯେବେ ଆସିଅଛି ଏଥି
ମୁକ୍ତ ହସ୍ତେ ଦେଇଅଛି ଅକୁଣ୍ଠ ଆତିଥ୍ୟ
ପରରେ କରିଛି ନିଜ, ବିଦେଶୀରେ ଦେଶୀ ।

ତେଣୁ ମୁଁ ଗର୍ବିତ ଯାହା ଧମନୀରେ ମୋର
ବହେ ସର୍ବ ରକ୍ତଧାରା,
ଶ୍ୱେତ, କୃଷ୍ଣ, ହାରିଦ୍ରାଦି ସକଳ ଚର୍ମର,
ଦ୍ରାବିଡ଼, ଅଷ୍ଟ୍ରିକ, ଆର୍ଯ୍ୟ, ମଂଗୋଲ, ଟିଙ୍କଟୋ
ସକଳର ଉପାଦାନେ ମୋ ଦେହ ଗଠିତ,
ବିଶ୍ୱ ମାନବର
ଗର୍ବିତ ପ୍ରତୀକ ମୁହିଁ, ମୁକ୍ତ ଭାରତର
ସାଧାରଣ ନାଗରିକ ।

ବଦ୍ଧପରିକର ପୁଣି ଥାପିବାକୁ ବିନା ରକ୍ତପାତେ
ଗ୍ରାମ-ରାଜ୍ୟ, ଗଣ-ରାଜ୍ୟ, ଶ୍ରେଣୀ ଗୋଷ୍ଠୀହୀନ
ଉଚ୍ଚ-ନୀଚ— ଲଜ୍ଜାହୀନ, ଶୋଷଣ-ବିମୁକ୍ତ ।
ପରସ୍ପର ହିଂସା, ଈର୍ଷା, ଅବିଶ୍ୱାସ ତେଜି
ଶୁଣ ବିଶ୍ୱ-ବନ୍ଧୁଗଣ, ପ୍ରାଚୀନ ଏ ବାଣୀ ଭାରତର
ବନ୍ଧୁତାର, ଅହିଂସାର, ବିଶ୍ୱ କଲ୍ୟାଣର ।

---

# ପରିଶିଷ୍ଟ – (କ)

କବି ମାୟାଧର ମାନସିଂହ (୧୯୦୫-୧୯୭୩) ଓଡ଼ିଆ ସାହିତ୍ୟରେ ଦୀର୍ଘ ଅର୍ଦ୍ଧ-ଶତାବ୍ଦୀ ଧରି (୧୯୨୩-୭୩) ଲେଖନୀ ଚାଳନା କରିଛନ୍ତି । ଫୁଲ-ଫଗୁଣ, ଜହ୍ନ ଓ ମାଟିର କବି ମାନସିଂହ ସୃଷ୍ଟି ପ୍ରାଚୁର୍ଯ୍ୟରେ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗକୁ ସମୃଦ୍ଧ କରିଛନ୍ତି । ଗଳ୍ପ ଓ ଉପନ୍ୟାସରେ ସେ ବିଶେଷ ଧ୍ୟାନ ଦେଇନଥିଲେ ବି କାବ୍ୟ-କବିତା, ନାଟକ-ଗୀତିନାଟ୍ୟ, ଜୀବନୀ, ଆତ୍ମ-ଜୀବନୀ ତଥା ପ୍ରବନ୍ଧ-ସମାଲୋଚନାରେ ନିଜର ବୈଶିଷ୍ଟ୍ୟ ପ୍ରଦର୍ଶନ କରିଛନ୍ତି । ମାନସିଂହଙ୍କ ସମଗ୍ର ରଚନାବଳୀ ପ୍ରକାଶନ ଅବସରରେ ତାଙ୍କ ସୃଷ୍ଟି-ସମ୍ପଦର କାଳ ନିରୂପଣର ଆବଶ୍ୟକତା ଅନୁଭୂତ ହେଉଛି ।

ଅନେକ ସମୟରେ ସ୍ରଷ୍ଟା ନିଜର ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ, ସମସାମୟିକ ଘଟଣାର ସଙ୍କେତ ଛାଡ଼ିଯାଇଥାନ୍ତି । ସୃଷ୍ଟିସମ୍ପଦରେ ଅନେକ ସମୟରେ ସ୍ରଷ୍ଟାର ଅବଚେତନ ମନର ଛାପ ରହିଯାଇଥାଏ । କୌଣସି ଲେଖାର ସାମଗ୍ରିକ ଆଲୋଚନା ପାଇଁ ସେ ଲେଖାର ରଚନାକାଳ, ପ୍ରକାଶନକାଳ ଓ ବିଭିନ୍ନ ସମୟରେ ଲେଖାର ଯାହା ପରିବର୍ତ୍ତନ ହୁଏ ତାର ସମ୍ପୂର୍ଣ୍ଣ ବିବରଣୀ ଆବଶ୍ୟକ ହୋଇଥାଏ । କାରଣ ସ୍ରଷ୍ଟାର ମାନସିକ ପରିବର୍ତ୍ତନ ସହିତ ବେଳେବେଳେ ଲେଖାର ମଧ୍ୟ ପରିବର୍ତ୍ତନ ଘଟିଥାଏ । ଜଣେ ଲେଖକ ବା କବିଙ୍କ ସମ୍ପର୍କରେ ଚର୍ଚ୍ଚା କରିବାକୁ ହେଲେ ଲେଖାର କାଳ ନିରୂପଣ କିପରି ନିତାନ୍ତ ଆବଶ୍ୟକ, ସେ ସମ୍ପର୍କରେ ଓଡ଼ିଆ ସାହିତ୍ୟର ବିଶିଷ୍ଟ ଗବେଷକ ଡକ୍ଟର ନଟବର ସାମନ୍ତରାୟଙ୍କ ମତ ପ୍ରଣିଧାନଯୋଗ୍ୟ – "ଆଧୁନିକ ଯୁଗର କବିମାନଙ୍କ ରଚନା ଆଲୋଚନା କଲାବେଳେ ଆମେ ସାଧାରଣତଃ ସେମାନଙ୍କ ରଚନା ବା ପ୍ରକାଶକାଳ ଉପରେ ଆଦୌ ଦୃଷ୍ଟି ଦେଇନଥାଉ । କବି ସେ ଯୁଗରେ ଜନ୍ମଲାଭ କରିଥିବା ହେତୁ ସେଇ ଯୁଗର ଚିନ୍ତାଦ୍ୱାରା ବହୁ ପରିମାଣରେ ପ୍ରଭାବିତ ହୋଇଥାଏ, ସମୟର ଅଗ୍ରଗତି ଓ ପରିବର୍ତ୍ତନର ତାଡ଼ନାରେ କବିର ମାନସିକ ପ୍ରକ୍ରିୟା ଓ କବି-ପ୍ରତିଭାର ଯେ କ୍ରମବିକାଶ ଏକାନ୍ତ ସମ୍ଭବପର; ସମାଜର ପରିବେଷ୍ଟନୀ, ବ୍ୟକ୍ତି ଜୀବନର ସ୍ୱତନ୍ତ୍ର ଆଭିମୁଖ୍ୟ କବିର ରଚନାକୁ ଯେ ବହୁପରିମାଣରେ ନିୟନ୍ତ୍ରଣ କରିଥାନ୍ତି – ଏପରି ବହୁବିଧ ସମସ୍ୟାର ସମ୍ମୁଖୀନ ଆମେ ଆଦୌ ହେଉନି, କାରଣ ସମାଲୋଚନା କଲାବେଳେ ଆମେ ରଚନାକାଳ ଉପରେ ବିଶେଷ ଗୁରୁତ୍ୱ ଦେବାକୁ ଇଚ୍ଛା କରୁନି । ରଚନାର ତାତ୍ତ୍ୱିକ ବିଶ୍ଳେଷଣ, ତା'ର ରସ -ସୌନ୍ଦର୍ଯ୍ୟ ପ୍ରଖ୍ୟାପନର ମାନଦଣ୍ଡ ବୋଲି କେହି କେହି ରଚନାକାଳ ଜାଣିବାପାଇଁ ଆଦୌ ଚିନ୍ତିତ ହୁଅନ୍ତିନାହିଁ । କିନ୍ତୁ ଦେଖିବାର କଥା, ସାହିତ୍ୟାଲୋଚନାର ଏହା କଦାପି ସର୍ବଶେଷ ମାନଦଣ୍ଡ ନୁହେଁ । ପୁନଶ୍ଚ ଏହା ଯେ ସର୍ବଶ୍ରେଷ୍ଠ ମାନଦଣ୍ଡ ତାହା ମଧ୍ୟ ଦୃଢ଼ଭାବରେ କୁହାଯାଇନପାରେ । କାରଣ ସମୟ-

ଜ୍ଞାନବିରହିତ ହୋଇ ତାତ୍ତ୍ୱିକ ବିଶ୍ଳେଷଣ କଲେ ସାହିତ୍ୟ-ସୌନ୍ଦର୍ଯ୍ୟ ପ୍ରତିଷ୍ଠା ନିର୍ଭୁଲଭାବେ ହୋଇନପାରେ । କାଳଜ୍ଞାନ ଓ ତାତ୍ତ୍ୱିକ ବିଶ୍ଳେଷଣ ଏ ଉଭୟର ମଧୁର ମିଳନରେ କଳାର ପ୍ରକୃଷ୍ଟ ମହତ୍ତ୍ୱ ପ୍ରତିଷ୍ଠିତ ହୁଏ ।'' (କବି ମାନସିଂହଙ୍କ ପନ୍ଦରବର୍ଷ ରଚ୍‌ନାର କାଳ ନିର୍ଣ୍ଣୟ – ଡଗର, ୧/୧୯୫୮)

କବି ମାନସିଂହଙ୍କ ସମଗ୍ର-ସୃଷ୍ଟି ଏ ପର୍ଯ୍ୟନ୍ତ ସଂକଳିତ ହୋଇପାରିନାହିଁ । ପୁନଶ୍ଚ ମାନସିଂହଙ୍କ ସମସ୍ତ ଲେଖାର ମୂଳ ପ୍ରତିରୂପ/ପ୍ରଥମ ପ୍ରକାଶନର ସ୍ୱରୂପ/ରଚ୍‌ନା କାଳ ଓଡ଼ିଶା ବା ଓଡ଼ିଶା ବାହାରର କୌଣସି ପାଠାଗାରରେ ଏକତ୍ର ମିଳିବା ସମ୍ଭବପର ନୁହେଁ । ଏପରିକି ଡ. ମାନସିଂହଙ୍କ ବାସଭବନରେ ମଧ ଉପରୋକ୍ତ ବିବରଣୀ ପୂର୍ଣ୍ଣମାତ୍ରାରେ ମିଳିବା ସମ୍ଭବ ହୋଇପାରିନି । ଏଣୁ ମାନସିଂହଙ୍କ ସମ୍ପର୍କରେ ଚର୍ଚ୍ଚା କରିବାକୁ ହେଲେ ଜଣେ ଗବେଷକକୁ ବିଭିନ୍ନ ସ୍ଥାନ ବୁଲି ତଥ୍ୟ ସଂଗ୍ରହ କରିବାକୁ ହୁଏ । ଓଡ଼ିଶାର ବିଶିଷ୍ଟ ଗବେଷକ ଡକ୍ଟର ନଟବର ସାମନ୍ତରାୟ ୧୯୫୮ ମସିହାରେ 'ଡଗର' ପତ୍ରିକାରେ କବି ମାନସିଂହଙ୍କ ପନ୍ଦରବର୍ଷ ରଚ୍‌ନାର କାଳ ନିରୂପଣ କରିଥିଲେ । ସେହି ଲେଖାକୁ ମୂଳ ଆଧାର କରି ମୁଁ ୧୯୭୫ ମସିହାରୁ ଆଜି ପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନ ପାଠାଗାର, ବିଭିନ୍ନ ପୁରୁଣା ହାଇସ୍କୁଲ ଓ କଲେଜ ପାଠାଗାର, ବିଭିନ୍ନ ବ୍ୟକ୍ତିଙ୍କର ନିଜସ୍ୱ ସଂଗ୍ରହ ଓ ଡକ୍ଟର ମାନସିଂହଙ୍କ ଘରେ ଥିବା ତଥ୍ୟ ଓ ପୁସ୍ତକକୁ ଅବଲମ୍ବନ କରି ମାନସିଂହଙ୍କ ରଚ୍‌ନାର ରଚ୍‌ନାକାଳ, ପ୍ରଥମ ପ୍ରକାଶନ କାଳ, ପ୍ରଥମ ପ୍ରକାଶନ ଓ ପରବର୍ତ୍ତୀ ପରିବର୍ତ୍ତନ ଇତ୍ୟାଦିକୁ ଉପସ୍ଥାପନ କରିବା ପାଇଁ ପ୍ରୟାସ କରିଅଛି ।

ମାନସିଂହ ଗ୍ରନ୍ଥାବଳୀ ତିନିଖଣ୍ଡରେ 'ଗ୍ରନ୍ଥମନ୍ଦିର'ଦ୍ୱାରା ପ୍ରକାଶିତ ହୋଇଥିଲା ଓ ଏହାର ପ୍ରଥମଖଣ୍ଡ ୧୯୬୨ ମସିହାରେ ପ୍ରକାଶଲାଭକରିଥିଲା । ଏହି ତିନିଖଣ୍ଡ ପରେ ବି ମାନସିଂହଙ୍କର ଅନେକ ସୃଷ୍ଟି ଅସଂକଳିତ ଅବସ୍ଥାରେ ରହିଯାଇଥିଲା । 'ଗ୍ରନ୍ଥମନ୍ଦିର'ର ସ୍ୱତ୍ତ୍ୱାଧିକାରୀ ଶ୍ରୀ ଅଭିରାମ ମହାପାତ୍ର ଓ ତାଙ୍କ ପୁତ୍ର ଶ୍ରୀ ମନୋଜ କୁମାର ମହାପାତ୍ର ମାନସିଂହଙ୍କ ସମଗ୍ର ରଚ୍‌ନାବଳୀର ପ୍ରାମାଣିକ ସଂସ୍କରଣ ପ୍ରକାଶ କରିବାର ଆଗ୍ରହ ପ୍ରଦର୍ଶନ କରିବାରୁ ବର୍ତ୍ତମାନ ଏ କାର୍ଯ୍ୟ ସମ୍ଭବ ହୋଇପାରୁଛି ।

ମାନସିଂହଙ୍କ ଜୀବଦ୍ଦଶାରେ ପ୍ରକାଶିତ ସର୍ବଶେଷ ରଚ୍‌ନାକୁ ମୂଳପାଠ ଭାବରେ ଗ୍ରହଣ କରାଯାଇଛି । ଯେଉଁ ଲେଖାଗୁଡ଼ିକର କିଛି ପରିବର୍ତ୍ତନ ହୋଇଛି, ତାହାକୁ ପରିଶିଷ୍ଟରେ ପ୍ରଦାନ କରାଯାଇଛି । ସାଧାରଣ ପାଠକଙ୍କୁ ଭାରାକ୍ରାନ୍ତ ନକରିବାପାଇଁ ପ୍ରତ୍ୟେକ ପୃଷ୍ଠାରେ ପାଦଟୀକା ନଦେଇ, ଲେଖାର ସମୟ ଓ ପ୍ରକାଶନ ସମୟ ଇତ୍ୟାଦିକୁ ପରିଶିଷ୍ଟରେ ସ୍ଥାନିତ କରାଯାଇଛି । ଗବେଷକ ଓ ଅନୁସନ୍ଧିତ୍ସୁ ପାଠକ-ପାଠିକା ଚାହିଁଲେ ଆବଶ୍ୟକୀୟ ତଥ୍ୟ ସେମାନେ ପରିଶିଷ୍ଟରୁ ସଂଗ୍ରହ କରିପାରିବେ ।

ଡକ୍ଟର ନଟବର ସାମନ୍ତରାୟଙ୍କ ତାଲିକାକୁ ମାର୍ଗଦର୍ଶକ ଭାବରେ ଗ୍ରହଣ କରାଯାଇଥିଲେ ମଧ ମୂଳ ଲେଖାକୁ ପୁଣିଥରେ ଦେଖାଯାଇଛି ଓ ଯେଉଁଠାରେ ଅଧିକ ତଥ୍ୟର ଆବଶ୍ୟକତା ଅନୁଭୂତ ହୋଇଛି ସେଠାରେ ତାହା ପ୍ରଦାନ କରାଯାଇଛି । ଡ. ସାମନ୍ତରାୟ

କେତେକ ଲେଖାର କେବଳ ପ୍ରକାଶନ ତାରିଖ ପ୍ରଦାନ କରିଥିଲେ । ଲେଖାର ସ୍ଥାନ ଓ ରଚନାକାଳ ପ୍ରଦାନ କରାଯାଇ ଅନୁସନ୍ଧିତ୍ସୁ ପାଠକ ଓ ଗବେଷକମାନଙ୍କ ପାଇଁ ଅଧିକ ପଥ ସୁଗମ କରାଯାଇଛି । ବର୍ତ୍ତମାନ କବିଙ୍କ ପଚାଶ ବର୍ଷର ରଚନା ଓ ସେ ସମ୍ପର୍କୀୟ ବିବରଣୀ ବହୁଖଣ୍ଡରେ ପ୍ରକାଶିତ ହେବାକୁ ଯାଉଛି ।

ଚଳିତ ଖଣ୍ଡରେ ପ୍ରଦତ୍ତ ତାଲିକା ମାନସିଂହଙ୍କ ସମଗ୍ର ରଚନାବଳୀର ତାଲିକା ନୁହେଁ; ଏହା କେବଳ ଏଇ ଖଣ୍ଡର ଲେଖା ସମ୍ପର୍କୀୟ ତାଲିକା । ତାହା ପୁଣି କାଳାନୁକ୍ରମିକ ସଜା-ଯାଇନାହିଁ । ଡ. ମାନସିଂହ ଯେଉଁ କ୍ରମରେ ଲେଖା ସଜାଇ ଥିଲେ ସେହି ଅନୁସାରେ ରଖା-ଯାଇଛି ଓ ଲେଖା ସମ୍ପର୍କୀୟ ସମସାମୟିକ ପ୍ରତିକ୍ରିୟାର ସୂଚନା ମଧ ପ୍ରଦାନ କରାଯାଇଛି । ଆଶା କରାଯାଉଛି ଗ୍ରନ୍ଥାବଳୀର ଶେଷ ଖଣ୍ଡରେ ସମଗ୍ର ରଚନାବଳୀର କାଳାନୁକ୍ରମିକ ସୂଚୀ ପ୍ରଦାନ କରାଯିବ ଓ ସମଗ୍ର ରଚନାର ଏକ 'ରଚନା-କୋଷ' ସନ୍ନିବେଶିତ ହେବ ।

ମାନସିଂହଙ୍କ ସମଗ୍ର ରଚନା ପ୍ରାୟ ୬୦୦୦ରୁ ଅଧିକ ପୃଷ୍ଠା ହେବ । ଏଭଳି ଏକ ବିରାଟ ପ୍ରକାଶନ କାର୍ଯ୍ୟକୁ ନିର୍ବାହ କରିବାପାଇଁ ଗ୍ରନ୍ଥମନ୍ଦିର ପ୍ରକାଶନ ସଂସ୍ଥାର ଶ୍ରୀ ଅଭିରାମ ମହାପାତ୍ର ଓ ଶ୍ରୀ ମନୋଜ କୁମାର ମହାପାତ୍ର ସାହସିକ ପଦକ୍ଷେପ ନେଇଥିବାରୁ ସେମାନଙ୍କୁ ଅଭିନନ୍ଦନ ଜଣାଉଛି ।

**ଡକ୍ଟର ଶ୍ରୀଚରଣ ମହାନ୍ତି**

# ପରିଶିଷ୍ଟ – (ଖ)

ଗ୍ରନ୍ଥାବଳୀର ଏହି ଖଣ୍ଡରେ ସଂକଳିତ ଲେଖାର ପ୍ରକାଶନକାଳ, ରଚନା କାଳ ଓ ତତ୍‌ସମ୍ପର୍କୀୟ ବିଶଦ ବିବରଣୀ –

'ଧୂପ'

୧ । 'ଧୂପ' (୧୯୩୧) ପ୍ରଥମ ମୁଦ୍ରଣ, ପ୍ରକାଶକ – ପ୍ରଗତି ସଂଘ, କଟକ, ମୁଦ୍ରଣ– ଶ୍ରୀ ବିଶ୍ୱନାଥ କର, ଉତ୍କଳ ସାହିତ୍ୟ ପ୍ରେସ୍, କଟକ । ଉତ୍ସର୍ଗ– ଶ୍ରୀମତୀ ହେମଲତା ଦେବୀ, କାନ୍ତକରେଷୁ । ଲେଖକ ।

ଏଥିରେ ଥିବା ବିଜ୍ଞପ୍ତି– ଏଇ କବିତାଗୁଡ଼ିକ ମଧ୍ୟରୁ କେବଳ ତିନୋଟି କବିତା 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଥିଲା, ଅନ୍ୟ ସମସ୍ତହିଁ ଅପ୍ରକାଶିତ ଥିଲା । ଏ ପୁସ୍ତକର ମୁଦ୍ରଣ କାର୍ଯ୍ୟରେ ମୋର ବନ୍ଧୁ ଶ୍ରୀମାନ୍ ସାଧୁଚରଣ ମହାନ୍ତି ଓ ଶିଶୁସାହିତ୍ୟିକ ଲେଖକ ଶ୍ରୀମାନ୍ ଉଦୟନାଥ ଷଡ଼ଙ୍ଗୀ ମୋତେ ବିଶେଷ ସାହାଯ୍ୟ କରିଛନ୍ତି । ମୁଁ ସେମାନଙ୍କ ନିକଟରେ ଅନ୍ତରର କୃତଜ୍ଞତା ଜଣାଉଛି । ଇତି । ଲେଖକ ।

୧୯୩୧ର ପ୍ରଥମ ସଂସ୍କରଣରେ କୌଣସି ମୁଖବନ୍ଧ ନଥିଲା ।

୨ । 'ତରୁଣ କବିର ଆଶା' – 'ଉତ୍କଳ ସାହିତ୍ୟ' ୩୨/୧, ବୈଶାଖ ୧୩୩୫ (ଏପ୍ରିଲ, ୧୯୨୮) 'ଧୂପ' (୧୯୪୮) ପୃ. ୧, 'ଧୂପ' (୧୯୩୧) ଓ 'ଜୀବନଚିତା' (୧୯୪୭)ରେ ଏଇ କବିତାରେ କେବଳ କୋଡ଼ିଏଟି ପଦ ଦେଖିବାକୁ ମିଳେ । 'ଧୂପ' (୧୯୪୮)ରେ କିନ୍ତୁ ଏଇ କୋଡ଼ିଏପଦ ସହିତ ଆଉ ଅଧିକ ତିନିପଦ ଯୋଗ-କରାଯାଇଛି । କିନ୍ତୁ 'ଉତ୍କଳ-ସାହିତ୍ୟ'ରେ ପ୍ରଥମେ ଥିବା ୨୧ଟି ପଦ ମଧ୍ୟରେ – 'ସବୁ ତରୁଣୀଙ୍କ ଚିବୁକ ଧରି, ବୁଲନ୍ତି ମୁଁ ଆହା ରସିକ ମରି / ବୋଲନ୍ତି ସବୁରି ବାନ୍ଧବ ମୁହିଁ ଜାଣ ସୁମୁହିଁ ।' – କବିତାରେ ଏଇ ପଦଟି ସ୍ଥାନପାଇଥିବାରୁ ତାକୁ ଲକ୍ଷ୍ୟକରି 'ସହକାର' ୮/୭, ଚୈତ୍ର ୧୩୩୫ (ମାର୍ଚ୍ଚ, ୧୯୨୮)ର ସମ୍ପାଦକୀୟରେ ତୀବ୍ର ମନ୍ତବ୍ୟ ପ୍ରକାଶ ପାଇବାରୁ କବି ଏ ପଦକୁ 'ଧୂପ' (୧୯୩୧)ରେ ସ୍ଥାନ ଦେଇ ନାହାନ୍ତି ।

(୧୯୪୮) ସଂସ୍କରଣରେ ଏଇ ପଦଗୁଡ଼ିକ ନୂଆ ସଂଯୋଗ କରାଯାଇଅଛି –

'ଭାବିଥିଲି ଦୂରୀ ମଣିଷ-ପ୍ରାସ / ମଧୁର କରିବି ଧରଣୀ-ବାସ ।
ଏକଇ ଆଦେଶେ, ଜୀବର ହିତେ / ପୃଥିବୀ ପାଠେ ।
ଦେଶରୁ ଦେଶକୁ ଯାଆନ୍ତି ଉଡ଼ି / ନିଖିଳ ଜାତିର ହୃଦୟ ଯୁରି
ପ୍ରେମର, ଜ୍ଞାନର ପ୍ରଚାର କରି / ପରାଣ ଭରି ।

ଏବଂ ଅନ୍ୟ ଗୋଟିଏ ପଦ– ଘୁଞ୍ଚାଇ ନେବାର ଜଗତ ବ୍ୟଥା / ସୁଦୂର ସ୍ୱପନ / ନିଜର କଥା / ନପାରେ ତୁଲାଇ ଗରିବ କବି / କରୁଣ ଛବି । ଏହି କବିତାର ଅନ୍ୟ ପରିବର୍ତ୍ତନ ହେଲା – 'ଅସର ଚାନ୍ଦିନୀ ଯାମିନୀ ତଳେ' (୧୯୩୧) ବହିରେ ଥିଲା

‘ଅମର ଚାନ୍ଦିନୀ. . .’ ‘ପ୍ରଣୟୀ ହେବାର ଛାଡ଼ିଛି ଆଶ’ ସ୍ଥାନରେ ଥିଲା ‘ରସିକ ହେବାର ଛାଡ଼ିଛି ଆଶ’।

୩। ‘ପ୍ରଣୟ ବ୍ୟଥା’ କବିତାର ଶେଷ ପଦରେ – ‘ପ୍ରେମ ତବ ଏ କବିରେ ବଡ଼ ବ୍ୟଥା ଦିଏ’ ସ୍ଥାନରେ (୧୯୩୧) ଥିଲା ‘ପ୍ରେମ ତବ ଏ ପ୍ରେମିକେ ବଡ଼ ବ୍ୟଥା ଦିଏ।’

୪। ‘ମୌନ ବିଦାୟ’ କବିତାଟି (୧୯୩୧) ମୁଦ୍ରଣରେ ‘ବର୍ଷା ବିରହ’ କବିତାରେ ମିଶିକରି ରହିଛି।

୫। ‘ପ୍ରଣୟୀ’ କବିତାଟି ‘ଉତ୍କଳ ସାହିତ୍ୟ’ ୩୨/୧୦, ମାଘ, ୧୩୩୬ (ଜାନୁୟାରୀ, ୧୯୨୯), ‘ଧୂପ’ (୧୯୪୮) ପୃ. ୫୯, ‘ଜୀବନଚିତା’ (୧୯୪୭) ପୃ. ୪୯ରେ ସ୍ଥାନିତ।

୬। ‘ପ୍ରେମର ପରିମାପ’, ‘ଉତ୍କଳ ସାହିତ୍ୟ’ ୩୧/୧୨ – ଚୈତ୍ର ୧୩୩୬ (ମାର୍ଚ୍ଚ, ୧୯୨୯) ‘ଧୂପ’ (୧୯୪୮) ପୃ. ୮୯, ପ୍ରଥମେ ପତ୍ରିକାରେ ଏ କବିତାର ନାମ ଥିଲା ‘ପ୍ରେମର ପରିମାଣ’।

୭। ‘ଶଙ୍କିତ ସ୍ନେହ’ କବିତାଟି ପ୍ରଥମ ମୁଦ୍ରଣରେ ‘ପ୍ରେମର ଭାଷା’ ପରେ ସ୍ଥାନପାଇଥିଲା।

୮। ଏ ସଂସ୍କରଣରେ ପ୍ରକାଶ ପାଇଥିବା ‘ଧୂପ’ର ଅନ୍ୟକବିତାଗୁଡ଼ିକ ପ୍ରଥମଥର ପାଇଁ (୧୯୩୧)ର ପ୍ରଥମ ସଂସ୍କରଣରେ ସ୍ଥାନପାଇଥିଲା।

**‘ହେମପୁଷ୍ପ’**

୯। ‘ହେମପୁଷ୍ପ’ର କବିତାଗୁଡ଼ିକ ବିଭିନ୍ନ ସମୟରେ ମାନସିଂହଙ୍କର ବିଭିନ୍ନ ସଂକଳନରେ ସ୍ଥାନ ପାଇଛି। (୧୯୩୫) ସଂସ୍କରଣର ପ୍ରକାଶକ– ଶ୍ରୀ ଚଣ୍ଡେଶ୍ୱର ମିଶ୍ର, ସଂପାଦକ, ପ୍ରଗତି ସଂଘ, କଟକ।

୧୦। ‘ରୂପ ଦେବତା’ ‘ସହକାର’ ୧୨/୧୨ ପୃ. ୧୧୦୧ରୁ ୧୧୦୩, ଚୈତ୍ର (ମାର୍ଚ୍ଚ-୧୯୩୨) ‘ହେମପୁଷ୍ପ’ (୧୯୩୫) ପୃ. ୧୨୦, ହେମପୁଷ୍ପ (୧୯୪୭) ପୃ. ୯।

୧୧। ‘ଇରାନୀ କିଶୋରୀ’ ରଚନା ୧୯୨୮ ପୂର୍ବରୁ ମାତ୍ର ପ୍ରକାଶ, ‘ହେମପୁଷ୍ପ’ (୧୯୩୫), ହେମପୁଷ୍ପ (୧୯୪୭)ର ତୃତୀୟ କବିତା ପୃ. ୧୪ରୁ୧୯।

୧୨। ‘ବିରହୀ ଘନ’– ହେମପୁଷ୍ପ (୧୯୩୫), ହେମପୁଷ୍ପ (୧୯୪୭)ର ଚତୁର୍ଥ କବିତା ପୃ. ୨୦-୨୧।

୧୩। ‘ପ୍ରାବୃଟ ସମୀକ୍ଷଣ’– ‘ଉତ୍କଳ ସାହିତ୍ୟ’ ୩୧/୫, ଭାଦ୍ର ୧୩୩୪ (ଅଗଷ୍ଟ-୧୯୨୭) ପୃ.୧୯୬, ହେମପୁଷ୍ପ (୧୯୩୫) ପୃ. ୯୯, ହେମପୁଷ୍ପ (୧୯୪୭) ପୃ.୨୨ ପଞ୍ଚମ କବିତା, ସାମାନ୍ୟ ପରିବର୍ତ୍ତନ ସହିତ।

୧୪। ‘ଯଥାସ୍ଥାନ’ – ଉତ୍କଳ ସାହିତ୍ୟ ୩୩/୮ (ମାର୍ଗଶୀର – ୧୩୩୭) ପୃ. ୩୦୧, (ନଭେମ୍ବର–୧୯୨୯) ହେମପୁଷ୍ପ (୧୯୩୫) ପୃ. ୮୪, ହେମପୁଷ୍ପ (୧୯୪୭) ପୃ. ୨୫, ଷଷ୍ଠ କବିତା।

ଏହି କବିତାଟିର ମୂଳ ପାଦଟୀକାରେ ଥିଲା – "କବିତାଟିର ନାୟକ ନାୟିକ ଏକାବେଳକେ କଳ୍ପନାର ବସ୍ତୁ । ସେମାନେ କେଉଁ ଏକ ବିଶିଷ୍ଟ କାଳ ବା ଦେଶର ନୁହନ୍ତି । ପଢ଼ିଲାବେଳେ ପାଠକଙ୍କୁ ଯେପରି ଏଇ କଥାଟା ମନେରଖିବାକୁ ହୁଏ ।

୧୫ । 'ସାପୋର ବ୍ୟଥା'– 'ହେମପୁଷ୍ପ' (୧୯୪୭)ର ସପ୍ତମ କବିତା, ପୃ. ୩୨-୩୮ ।

୧୬ । 'ଘନ-ଶର୍ବରୀ'– ହେମପୁଷ୍ପ (୧୯୩୫), ହେମପୁଷ୍ପ (୧୯୪୭) ଅଷ୍ଟମ କବିତା, ପୃ. ୩୫, କବିତାଟି ୧୯୩୨ ମଧ୍ୟରେ ରଚନା କରାଯାଇଛି ।

୧୭ । 'ହେ ମୋର ପରମ'– ହେମପୁଷ୍ପ (୧୯୪୭)ର ନବମ କବିତା, ପୃ. ୩୬ ।

୧୮ । 'ହଂସ ହତ୍ୟା'– ହେମପୁଷ୍ପ (୧୯୩୫), ହେମପୁଷ୍ପ (୧୯୪୭)ର ଦଶମ କବିତା, ପୃ. ୩୭-୩୯, କବିତାଟି ୧୯୩୨ ମଧ୍ୟରେ ରଚନା କରାଯାଇଛି ।

୧୯ । 'ବସନ୍ତୋତ୍ସବ'– ହେମପୁଷ୍ପ (୧୯୩୫), ହେମପୁଷ୍ପ (୧୯୪୭)ର ଚତୁର୍ଦ୍ଦଶ କବିତା, ପୃ. ୪୭-୪୮, ଏ କବିତାଟି ୧୯୩୨ ମଧ୍ୟରେ ରଚନା କରାଯାଇଛି ।

୨୦ । 'ଜ୍ୟୋତ୍ସ୍ନାମୟୀ'– ହେମପୁଷ୍ପ (୧୯୩୫), ହେମପୁଷ୍ପ (୧୯୪୭)ର ପଞ୍ଚଦଶ କବିତା, ପୃ. ୪୯ ।

୨୧ । 'ଇତସ୍ତତଃ' ହେମପୁଷ୍ପ (୧୯୩୫), ହେମପୁଷ୍ପ (୧୯୪୭)ର ଷୋଡ଼ଶ କବିତା, ପୃ. ୫୦-୫୧ ।

୨୨ । 'କୁଳଟା ରାଧା'– ସହକାର, ୧୦/୯, ପୌଷ ୧୩୩୭, ପୃ. ୩୭୫-୩୭୬, (ଡିସେମ୍ବର-୧୯୨୯), ହେମପୁଷ୍ପ (୧୯୩୫), ହେମପୁଷ୍ପ (୧୯୪୭)ର ସପ୍ତଦଶ କବିତା, ପୃ. ୫୨-୫୫ ।

୨୩ । 'ବଂଶୀ ଡାକ'– ରେଭେନ୍ସାଭିଆନ୍ (ସେପ୍ଟେମ୍ବର-୧୯୨୭), ହେମପୁଷ୍ପ (୧୯୩୫), ହେମପୁଷ୍ପ (୧୯୪୭)ର ଅଷ୍ଟାଦଶ କବିତା ପୃ. ୫୬-୫୮ ।

୨୪ । 'ଆତ୍ମପର' – ନବଭାରତ ୧/୧ ମିଥୁନ ୧୩୪୧, (ଜୁନ୍, ୧୯୩୪), ହେମପୁଷ୍ପ (୧୯୩୫) ପୃ. ୧୨୮, ହେମପୁଷ୍ପ (୧୯୪୭) ପୃ. ୫୯ ।

୨୫ । 'ଶେଲୀ-ମୃତ୍ୟୁ', ଭଞ୍ଜପ୍ରଦୀପ (ସେପ୍ଟେମ୍ବର-ଡିସେମ୍ବର, ୧୯୪୩), ହେମପୁଷ୍ପ (୧୯୪୭)ର ବିଂଶତମ କବିତା, ପୃ. ୬୧ ।

୨୬ । 'ଉଦାସୀପାନ୍ଥ'– ହେମପୁଷ୍ପ (୧୯୪୭)ର ଏକବିଂଶ କବିତା, ପୃ. ୬୫ ।

୨୭ । 'ପ୍ରତ୍ୟାବୃତ୍ତା'– ହେମପୁଷ୍ପ (୧୯୪୭)ର ତେଇଶି ନଂ. କବିତା, ପୃ. ୬୭ ।

୨୮ । 'ବେଠିକ୍' ହେମପୁଷ୍ପ (୧୯୩୫), ହେମପୁଷ୍ପ (୧୯୪୭)ର ଶେଷ କବିତା, ପୃ. ୧୦୮ ।

୨୯ । 'ନାରୀ'– ହେମପୁଷ୍ପ (୧୯୪୭)ର ଛବିଶ ନଂ କବିତା ପୃ. ୭୦-୭୨ ।

୩୦ । 'ରୂପସୀର ପୂଜା'– ସହକାର ଅଷ୍ଟମ କଳସ, ବାର ଅଂଜଳି, ଭାଦ୍ର ୧୩୩୫ (ଅଗଷ୍ଟ-୧୯୨୮), ହେମପୁଷ୍ପ (୧୯୪୭) ପୃ. ୬୮, ଚବିଶ ନଂ. କବିତା ।

୩୧ । 'ମହାଦାନ'– ହେମପୁଷ୍ପ (୧୯୪୭)ର ସତାଇଶ ନଂ. କବିତା, ପୃ. ୭୩-୭୫ ।

୩୨ । 'ସୃଜନ-ସୂକ୍ତ'— ହେମପୁଷ୍ପ (୧୯୪୭) ଅଠାଇଶ ନଂ. କବିତା, ପୃ. ୭୬-୭୭ ।

୩୩ । 'ବିଶ୍ୱ ଦେବାଳୟ'— ହେମପୁଷ୍ପ (୧୯୪୭)ର ଅଣତିରିଶ ନଂ. କବିତା, ପୃ. ୭୮-୮୦ ।

୩୪ । 'ଧ୍ରୁବତାରା'— ହେମପୁଷ୍ପ (୧୯୪୭)ର ତିରିଶ ନଂ. କବିତା, ପୃ. ୮୧-୮୨ ।

୩୫ । 'ଉପହସିତ'— ହେମପୁଷ୍ପ (୧୯୪୭)ର ଏକତିରିଶ ନଂ. କବିତା, ପୃ. ୮୩ ।

୩୬ । 'ଭଗ୍ନ ମନୋରଥ'— ହେମପୁଷ୍ପ (୧୯୩୫) ।

୩୭ । 'ଭଗିନୀ'— ହେମପୁଷ୍ପ (୧୯୩୫) ।

**'ହେମଶସ୍ୟ'**

୩୮ । ପ୍ରଥମ ପ୍ରକାଶ-୧୯୩୩, ପ୍ରକାଶକ – ପ୍ରଗତି ସଂଘ, କଟକ । ଏ ପୁସ୍ତକଟି ଭଗବତୀ ଚରଣ ପାଣିଗ୍ରାହୀଙ୍କୁ ଉତ୍ସର୍ଗ କରାଯାଇଅଛି ।
ପୁସ୍ତକ ପ୍ରକାଶ ପାଇବା ଆଗରୁ ଚାରୋଟି କବିତା 'ହେମଶସ୍ୟ' ନାମରେ ପ୍ରଥମେ 'ସହକାର' ୧୩/୯, ପୌଷ ୧୩୪୦, (ଡିସେମ୍ବର, ୧୯୩୨)ରେ ପ୍ରକାଶିତ । ସେ ଗୁଡ଼ିକ ହେଲା – 'ଜୟେ ପରାଜୟେ', 'ଜଣେ ଜାଣେ', 'ଆକର୍ଷଣ', 'ପ୍ରେମିକର ଅଧିକାର' । ନିମ୍ନଲିଖିତ କବିତା ବ୍ୟତୀତ ପୁସ୍ତକ ସଂକଳିତ ଅନ୍ୟ କବିତା ହେମଶସ୍ୟ (୧୯୩୩)ରେ ସ୍ଥାନିତ । ହେମଶସ୍ୟ (୧୯୫୮) – ନୂତନ ସଂସ୍କରଣ ପ୍ରକାଶିତ ।

୩୯ । 'ରୂପାଲୋକ' – ହେମଶସ୍ୟ (୧୯୩୩), 'ମାନସିଂହ ଚୟନ' ଦ୍ୱିତୀୟ ଖଣ୍ଡ, ହେମପୁଷ୍ପ (୧୯୪୭) ବାଇଶ କବିତା, ପୃ. ୬୬ ।

୪୦ । 'ସାଧନା' – ହେମଶସ୍ୟ (୧୯୩୩), 'ମାନସିଂହ ଚୟନ' ଦ୍ୱିତୀୟଖଣ୍ଡ ।

୪୧ । (କ) ଜ୍ୟୋତ୍ସ୍ନାଭୋଗ, (ଖ) ଯୋଗ୍ୟ ହେବି (ଗ) ଶ୍ରାବଣ ଅଭିସାର, (ଘ) ନିତ୍ୟ ସ୍ୱୟଂବର, (ଙ) ନବଜନନୀ, (ଚ) ନାରୀର ଅଧିକାର – ଏଇ ଛଅଟି କବିତା ପ୍ରେମଶସ୍ୟ (୧୯୪୫)ରେ ପ୍ରକାଶିତ ।

୪୨ । 'ବିରହୀ ଗାଥା' – ହେମପୁଷ୍ପ (୧୯୩୫), ପ୍ରେମଶସ୍ୟ (୧୯୪୫) ।

୪୩ । 'ବିରହ ପ୍ରଦୀପ', ଆଧୁନିକ ୧/୬ (ଅକ୍ଟୋବର, ୧୯୩୬), ପ୍ରେମଶସ୍ୟ (୧୯୪୫) ପୃ. ୧୨୪ ।

୪୪ । 'ମିଳନ ମାଧୁରୀ' – ହେମପୁଷ୍ପ (୧୯୩୫), ପ୍ରେମଶସ୍ୟ (୧୯୪୫) ।

୪୫ । 'ଅତୃପ୍ତ ଭୋଗ' – ହେମପୁଷ୍ପ (୧୯୩୫), ପ୍ରେମଶସ୍ୟ (୧୯୪୫) ।

୪୬ । 'ପ୍ରେମ ଓ ସିଦ୍ଧି' – ସହକାର ୧୪/୫, ଭାଦ୍ର ୧୩୪୦ (ଅଗଷ୍ଟ, ୧୯୩୩)ରେ ହେମଶସ୍ୟ ନାମରେ । ହେମପୁଷ୍ପ (୧୯୩୫) ପୃ. ୪୫ରେ ଏ କବିତା 'ପ୍ରେମ ଓ ସିଦ୍ଧି' ନାମରେ ସ୍ଥାନ ପାଇଛି ।

୪୭ । (କ) ମନୋରଥ, (ଖ) ପ୍ରିୟ ବନ୍ଧୁ, (ଗ) ନିତ୍ୟ ବସନ୍ତ, (ଘ) ପ୍ରଥମ ଓ ପ୍ରଧାନ, (ଙ) ଅପେକ୍ଷା, (ଚ) କରଞ୍ଜିଆ, (ଛ) କଥଂୟନ୍ତୀ, (ଜ) ସର୍ବମୟ – ଏହି

କବିତାଗୁଡ଼ିକ ପ୍ରଥମେ 'ହେମପୁଷ୍ପ' (୧୯୩୫)ରେ ସଂକଳିତ ହୋଇଥିଲା ।

୪୮ । 'ବିଦେଶ ଯାତ୍ରା' – ହେମପୁଷ୍ପ (୧୯୪୭)ର ଦ୍ୱାଦଶ କବିତା, ପୃ.୪୩-୪୪ ।

୪୯ । 'ହତସ୍ୱପ୍ନାର ପତ୍ର' – ହେମପୁଷ୍ପ (୧୯୪୭)ର ନଂ. ୧୧ ଏକାଦଶ କବିତା, ପୃ. ୪୦-୪୨ ।

୫୦ । 'କ୍ଷମାକର' – ହେମପୁଷ୍ପ (୧୯୪୭)ର ପଚିଶ ନମ୍ବର କବିତା, ପୃ. ୬୯ ।

୫୧ । 'ମରମେ ତୁମର' – ହେମପୁଷ୍ପ (୧୯୪୭)ର ୧୩ ନଂ. କବିତା, ପୃ. ୪୫-୪୬ ।

୫୨ । 'ଧରାବତରଣ', ଝଙ୍କାର ୧୦ମ ବର୍ଷ, ୧୦ମ ସଂଖ୍ୟା, ୧୯୫୯ ।

'କୋଣାର୍କ'

୫୩ । 'କୋଣାର୍କ' (କବିତା) ପ୍ରଥମେ ଲେଖକ 'ଶ୍ରୀ' ନାମରେ 'ବାରୁଣୀ' ଆଷାଢ଼ ୧୩୩୩ (ଜୁନ୍-୧୯୨୬)ରେ ପ୍ରକାଶିତ । ଏହାହିଁ କବି ମାନସିଂହଙ୍କ କବି ଜୀବନର ପ୍ରଥମ ପ୍ରକାଶିତ କବିତା ।

୫୪ । 'କୋଣାର୍କର ଲାସ୍ୟ ଲୀଳା', 'କୋଣାର୍କ କାବ୍ୟର ଲାସ୍ୟ ଲୀଳା' ନାମରେ 'ସହକାର' (ଅଗଷ୍ଟ-ସେପ୍ଟେମ୍ବର ୧୯୩୫)ରେ ପ୍ରକାଶିତ । ଏଥିରେ ଲେଖାଯାଇଥିଲା– 'କୋଣାର୍କର ଲାସ୍ୟଲୀଳା' ଜ୍ୟୋତ୍ସ୍ନା-ଜୀବନ୍ତ ପାଷାଣବିଗ୍ରହ ମାନଙ୍କର ନୃତ୍ୟ-ବିଳାସ । ଏହାର ପାଦଟୀକାରେ ଲେଖକ ଲେଖିଥିଲେ ''ଛନ୍ଦ ରକ୍ଷା ପାଇଁ ଓ କେତେକ ସ୍ଥାନରେ ଶ୍ରୁତି ମଧୁର କରିବାପାଇଁ ଏହି କବିତାରେ ଚନ୍ଦ୍ରବିନ୍ଦୁ ସାହାଯ୍ୟରେ ଯୁକ୍ତାକ୍ଷର ପରିହାର କରାଯାଇଛି । କବି ନିମାପଡ଼ା ହାଇସ୍କୁଲରେ ଶିକ୍ଷକ ଥିଲାବେଳେ କୋଣାର୍କ ମନ୍ଦିର ଦେଖିବାର ସୁଯୋଗ ପାଇଥିଲେ । 'କୋଣାର୍କ' ଦେଖିସାରି ସେ କୋଣାର୍କ ପ୍ରବନ୍ଧ ସହକାର, ଜୁଲାଇ ୧୯୩୫ ସଂଖ୍ୟାରେ ପ୍ରକାଶ କରିଥିଲେ । 'ଲାସ୍ୟଲୀଳା' ଏଇ କୋଣାର୍କ ପ୍ରବନ୍ଧର ବହୁ ପରିମାଣରେ ଗୀତିରୂପ ମାତ୍ର ।''

୫୫ । 'ମୁମୂର୍ଷୁ କୋଣାର୍କ', ଝଙ୍କାର ଦ୍ୱାଦଶ ବର୍ଷ, ପ୍ରଥମ ସଂଖ୍ୟା (୧୯୬୦) ।

'ବାପୁ ତର୍ପଣ'

୫୬ । 'ବାପୁଜୀ', ନବଭାରତ ୫/୨, କର୍କଟ ୧୩୪୬, (ଜୁଲାଇ-୧୯୩୮), 'ମାଟିବାଣୀ' (୧୯୪୭) ପୃ. ୫୮, 'ବାପୁତର୍ପଣ' (୧୯୪୮) ପୃ. ୧୫ ।

୫୭ । 'ନାପିତୁଣୀର ଗାନ୍ଧୀ ପୂଜା' – ନବଭାରତ, ୨/୯, ପୃ. ୬୪୨-୪୩, କୁମ୍ଭ-୧୩୪୨, (ଫେବୃୟାରୀ-୧୯୩୬), ମାଟିବାଣୀ(୧୯୪୭) ପୃ. ୬୬, ବାପୁତର୍ପଣ (୧୯୪୮) ପୃ. ୨୩ ।

୫୮ । 'ପ୍ରାଣର ବାପୁଜୀ', ଡଗର ୧୩/୫(୧ । ୧୦ । ୪୯) ଗାନ୍ଧୀଜୟନ୍ତୀ ବିଶେଷାଙ୍କ ।

୫୯ । 'ବିକପୁଛ କାହିଁପାଇଁ', ନବଭାରତ, ମକର ୧୩୫୫, ପୃ୨-୩. ମହାତ୍ମାଜୀ ସଂଖ୍ୟା, ଫେବୃୟାରୀ-୧୯୪୮ ।

୬୦ । 'ଦୀପ ନିର୍ବାପିତ', ସହକାର ୨୬/୯,୧୦ ପୌଷ-ମାଘ ୧୩୫୫(୧୯୪୮)
ପୃ. ୪୧୩ – ଏହାର ଶେଷପଦ ଥିଲା –
'ମାନବର ଆଶାଦୀପ ନିର୍ବାପିତ ତୁମର ମରଣେ,
ମୂର୍ଖ, ମତ୍ତ ଆମେ କିରେ ହେବୁ ଶେଷେ ଅନ୍ୟୋନ୍ୟ ଛେଦନେ ।'

**'ଅକ୍ଷତ'**

୬୧ । ପ୍ରଥମ ସଂସ୍କରଣ (୧୯୪୬)ରେ ମାନସିଂହଙ୍କର ସ୍ୱର୍ଗତା କନ୍ୟା ପଦ୍ମାଶ୍ରୀର ଆଲୋକଚିତ୍ର ସ୍ଥାନପାଇଥିଲା । ଉତ୍ସର୍ଗପତ୍ରରେ ଲେଖାଥିଲା– ''ଯେ ସ୍ମୃତିର ଅକ୍ଷତ ବିଛି ଦେଇ ଯାଇଛି, ସେଇ ମା' ପଦ୍ମାଶ୍ରୀକୁ ଶୋକଦଗ୍ଧ-ପିତା ।

୬୨ । 'ଅଭିମାନ', (୧୯୪୬)ର ପ୍ରଥମ କବିତା ।

୬୩ । 'ଅପଣ୍ୟ ପ୍ରେମ' (୧୯୪୬)ର ତିନି ନଂ. କବିତା, ରଚନା – ୨୩ । ୧୧ । ୪୫, ରେଢ଼ାଖୋଲ ।

୬୪ । 'ଏକ ଓ ବହୁ' (୧୯୪୬)ର ସତର ନଂ. କବିତା, ରଚ଼ନା – ୮ । ୧ । ୪୬, ସମ୍ବଲପୁର ।

୬୫ । 'ଅଶ୍ରୁ-ମୁକ୍ତା'(୧୯୪୬)ର ଅଠରନଂ. କବିତା, ରଚ଼ନା–୧୮ । ୧ ।୪୬,ଖଣ୍ଡପଡ଼ା ।

୬୬ । 'ଅନଭିଳଷିତ' (୧୯୪୬)ର ବାଇଶ ନଂ. କବିତା, ରଚନା – ୨୦ । ୧ । ୧୯୪୬, ଖଣ୍ଡପଡ଼ା ।

୬୭ । 'ନୂତନ ଓ ପୁରାତନ' (୧୯୪୬)ର ୧୯ ନଂ. କବିତା, ରଚନା – ୧୮ । ୧ । ୧୯୪୬, ଖଣ୍ଡପଡ଼ା ।

୬୮ । 'କବି ଗୌରବ' (୧୯୪୬)ର ଅଠେଇଶ ନଂ. କବିତା, କୃଶ (୧୯୫୬) ରଚନା – ୨୬ । ୧ । ୧୯୪୬, ଦଶପଲ୍ଲା ।

୬୯ । 'କୃଶ ବହନ' (୧୯୪୬)ର ଏକତିରିଶ ନଂ. କବିତା, ରଚନା – ୩୧ । ୧ । ୪୬, ଗୋବିନ୍ଦପୁର ।

୭୦ । 'ପାନ୍ଥ-ଗାଥା' (୧୯୪୬)ର ବତିଶ ନଂ. କବିତା, ରଚନା – ୩ । ୨ । ୪୬, ସମ୍ବଲପୁର ।

୭୧ । 'ସ୍ୱର୍ଗଚ୍ୟୁତି' (୧୯୪୬)ର ତେତିଶ ନଂ. କବିତା ।

୭୨ । 'ଭିଖାରୀ' (୧୯୪୬)ର ଚଉତିରିଶ ନଂ. କବିତା, ଶଙ୍ଖ ୧/୬ ଭାଦ୍ର-୧୯୪୫ ପୃ.୧୨୪-୨୫ ।

୭୩ । 'ମୋ ଧନରେ' (୧୯୪୬)ର ୩୫ ନଂ. କବିତା, ଶଙ୍ଖ ୨/୧, ଆଷାଢ଼-୧୯୪୬ ପୃ. ୧-୩ ।

୭୪ । 'ଯାଇଛି ସେ', ହେମପୁଷ୍ପ (୧୯୪୭)ର ୩୨ ନଂ. କବିତା ପୃ. ୮୪ ।

୭୫ । 'ଶିଶୁର ଦାନ' (୧୯୪୬)ର ଛତିଶ ନଂ. କବିତା ।

୭୬ । 'ରୂପାନ୍ତର' (୧୯୪୬)ର ୩୭ ନଂ. କବିତା ।

୭୭ । 'ସହଜ ପଥ' (୧୯୪୬)ର ୩୮ ନଂ. କବିତା ।

'ମାଟି-ବାଣୀ'

୭୮ । ମାଟିବାଣୀ (୧୯୪୬)ର ଉତ୍ସର୍ଗ ପତ୍ର – ମାନ୍ୟବର ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ କରକମଳେଷୁ. . .
କରିବାକୁ ଯେଉଁ ମୃତ୍ତିକା ଉର୍ବର/ରାଜପୁତ୍ର ହୋଇ ଦିଅ ସ୍ୱେଦ ଜଳ,
କବି ଶୁଣାଇବ ସେହି ମାଟି-ବାଣୀ/ତୁମେ ତା'ର ଶ୍ରେଷ୍ଠ ସେବାକାରୀ ଜାଣି ।
ସେହି ମାତ୍ର ହରିପାରେ ଦେଶ ବ୍ୟଥା/ଚିହ୍ନିଛି ଯେ ମାଟି, ବୁଝେ ମାଟି କଥା ।
ବଶମ୍ବଦ ।

ଶ୍ରୀ ମାୟାଧର ମାନସିଂହ

ଭୂମିକା – ଯେଉଁ ଦେଶର ମାଟିରେ ମୁଁ ଏହି ଧରା ସଙ୍ଗେ ପ୍ରଥମ ସମ୍ପର୍କ ସ୍ଥାପନ କରିଥିଲି, ସେଇ ମାଟିର ଜନ-ଜନତାର ସୁଖ ଦୁଃଖକୁ ଆଶ୍ରୟ କରି ଯେଉଁ କେତୋଟି କବିତା ଲେଖିଥିଲି, ତାହା ଏଇ ମାଟି-ବାଣୀ ଗ୍ରନ୍ଥରେ ଏକତ୍ର ପ୍ରକାଶ କରିଛି ।

– ମାୟାଧର ମାନସିଂହ ।

୭୯ । 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' – ଉତ୍କଳ ସାହିତ୍ୟ ୩୩/୭, କାର୍ତ୍ତିକ ୧୩୩୭ (ଅକ୍ଟୋବର ୧୯୨୯), ହେମପୁଷ୍ପ (୧୯୩୫), ମାଟି-ବାଣୀ(୧୯୪୭) ପୃ. ୩, 'ମାନସିଂହ ଚୟନ', ପ୍ରଥମଖଣ୍ଡ (୧୯୫୫) ।
ଏହି କବିତାର ଦ୍ୱିତୀୟ ଧାଡ଼ିରେ ମାନସିଂହ ଚୟନରେ. . . 'ଧରଣୀ, ନଥିଲି ଜାଣି ଅଛି ଲୋ ତୋ ପୁରେ' ହୋଇଥିଲା । ପୂର୍ବରୁ ଓ ପରେ ଧରଣୀ ସ୍ଥାନରେ 'ଉତ୍କଳ' ଅଛି ।

୮୦ । 'ବାରବାଟୀ', ଉତ୍କଳ ସାହିତ୍ୟ ୩୦/୮, ମାର୍ଗଶିର ୧୩୩୪, (ନଭେମ୍ବର, ୧୯୨୬) ପୃ. ୪୩୫-୩୬, ମାଟି-ବାଣୀ (୧୯୪୭) ପୃ. ୧୧, ପ୍ରଥମ ପ୍ରକାଶ କବିତାକୁ ପରେ ବହୁ ଭାବରେ ପରିବର୍ତ୍ତନ କରାଯାଇଅଛି ।
ପତ୍ରିକାରେ ଏହାର ପ୍ରଥମ ପଦ ଏମିତି ଥିଲା. . .
'ମହିମାର ଶୂରତା'ର ଇତିହାସ ଶିରେ/ରାଜଟୀକା-ସମ/ନମସ୍ୟପରମ/ତୁମେ ତୁଙ୍ଗ ବାରବାଟୀ ବୀର-ରକ୍ତ-ମାଂସରେ ଗଠିତ/ଅତୀତର ବକ୍ଷପରେ/ଏ ଜାତିର ଜୟସ୍ତମ୍ଭ ପରି/ଦର୍ପ ଭରେ ମଥା ଟେକିକରି/ବିଜୟ ପତାକା ତବ ଚିରୋଜ୍ଜ୍ୱଳ ଚିର ଉନ୍ନମିତ । ରେଖାଂକିତ ପଦ ପରେ ବଦଳିଛି ।

୮୧ । 'ପଲ୍ଲୀ ସନ୍ଧ୍ୟା', ଭଞ୍ଜପ୍ରଦୀପ, ଏପ୍ରିଲ-୧୯୪୨ ।

୮୨ । 'ବର୍ଷା-ସନ୍ଧ୍ୟା', ସହକାର ୧୨/୧୨, ଚୈତ୍ର ୧୩୩୯(ମାର୍ଚ୍ଚ ୧୯୩୨) ପୃ. ୧୧୧୯-୨୦ । ଏ କବିତାଟି ପତ୍ରିକାରେ ଶ୍ରୀମତୀ ହେମଲତାଙ୍କ ନାମରେ ପ୍ରକାଶିତ ହୋଇଥିଲା ।

୮୩ । 'ରେଙ୍ଗୁନ୍ ଚିଠି', ରେଭେନ୍‌ସାଭିଆନ୍ (ଅକ୍ଟୋବର-୧୯୨୯), ମାଟି-ବାଣୀ (୧୯୪୭) ପୃ. ୨୬ ।

୮୪ । 'ଘରପଶା', ସହକାର ୧୩/୭, କାର୍ତ୍ତିକ ୧୩୪୦ (ଅକ୍ଟୋବର-୧୯୩୨), ମାଟି-ବାଣୀ (୧୯୪୭) ପୃ. ୩୨, ଏହି କବିତା 'ଗୃହମାୟା' ନାମରେ ପ୍ରଥମେ ପତ୍ରିକାରେ ପ୍ରକାଶିତ ହୋଇଥିଲା ।

୮୫ । 'ବିଲ-ଲକ୍ଷ୍ମୀ', ଆଧୁନିକ ୧/୫, (ସେପ୍ଟେମ୍ବର, ୧୯୩୬), ମାଟି-ବାଣୀ(୧୯୪୭) ପୃ. ୩୯ ।

୮୬ । 'ଗୋପ-ତର୍ପଣ', ଉତ୍କଳ ସାହିତ୍ୟ ୩୨/୩, ଆଷାଢ଼ ୧୩୩୫ (ଜୁନ୍-୧୯୨୮) ମାଟି-ବାଣୀ (୧୯୪୭) ପୃ. ୪୨ । ମୂଳ ପତ୍ରିକାରେ ଏହିପରି ଆରମ୍ଭ ହୋଇଥିଲା– 'ତୁମେ, ତାଣ୍ଡବ ନଟ ନୁହଁ ଶଙ୍କର ଭୋଳା / ନୁହେଁ ବୈଶାଖ ରକ୍ତ ପ୍ରବଣ ଡୋଳା, ତୁମେ, ଧରିନାହଁ କେବେ ରୁଦ୍ରର ଅବତାର / ଅତ୍ୟାଚାରର କରିବାକୁ ପ୍ରତିକାର, ରାଜା ହୋଇ ଦିନେ ଧରିନାହଁ ରାଜଦଣ୍ଡ / ଗର୍ଜନ ଦିନେ ନ କରିଛ ନରଷଣ୍ଡ । ତୁମେ, ପ୍ରଳୟଙ୍କର ନୁହଁ ହେ ମଉଷଳିନୀ / ଅଥବା ଲେଲିନ୍ ଭୀମ ବିପ୍ଳବ ବାଣୀ । ତୁମେ, ଅଟହେ ଶାନ୍ତ ସତ୍ୟର ପୁରୋହିତ / ସନ୍ନ୍ୟାସୀ, ଋଷି, ଅବତାର ପର ହିତ, ତୁମେ, ଥିଲହେ କେବଳ ପତିତ ଜାତିର ବନ୍ଧୁ / ଓଡ଼ିଆ ଜାତିର ଆପଣାର ଗୋପବନ୍ଧୁ ।

୮୭ । 'ଗୋପ ପ୍ରୟାଣ', ସମାଜ, ଗୋପବନ୍ଧୁ ତୃତୀୟ ଶ୍ରାଦ୍ଧ ବାର୍ଷିକୀ, ୧୫/୭, ବୁଧବାର, ୧୯୩୧ । ଏଥିରେ ଲେଖକ 'ଦୂର ଅତିଥି' ବୋଲି ଉଲ୍ଲେଖ କରାଯାଇଛି । ମାନସିଂହ ପାଟନାରେ ଏମ୍.ଏ. ପଢ଼ିଲାବେଳେ ଏହା ଲେଖାହୋଇଛି, ମାଟି-ବାଣୀ (୧୯୪୭), ପୃ. ୪୬ ।

୮୮ । 'ବୋଇତବନ୍ଦାଣ', ଆରତି ୧/୩, ଆଷାଢ଼ ୧୩୪୭ (ଜୁନ୍, ୧୯୪୦) । ଏହାର ଫୁଟ୍‌ନୋଟ୍‌ରେ ଅଛି – ଲେଖକଙ୍କର ଅପ୍ରକାଶିତ କାବ୍ୟ ନାଟିକା 'ତଅପୋଇ'ର ଏକ ଅଂଶ । ମାଟି-ବାଣୀ (୧୯୪୭), ପୃ. ୭୭, ଏ କାବ୍ୟନାଟିକାଟି ଏ ପର୍ଯ୍ୟନ୍ତ ପୂର୍ଣ୍ଣାଙ୍ଗ ରୂପ ହୋଇପାରିନାହିଁ ।

୮୯ । 'ଅନୂଢ଼ା', ଉତ୍କଳ ସାହିତ୍ୟ ୩୧/୮, ମାର୍ଗଶିର, ୧୩୩୫ (ନଭେମ୍ବର, ୧୯୨୭) ପୃ. ୩୩୭, ହେମପୁଷ୍ପ (୧୯୩୫) ପୃ. ୧୦୫, ମାଟିବାଣୀ (୧୯୪୭) ପୃ. ୮୬ ।

୯୦ । 'କଣ୍ଟକାଚ', ହେମପୁଷ୍ପ (୧୯୩୫) ।

୯୧ । 'ବନ୍ଧୁ ବିୟୋଗ', ସହକାର ୨୩/୧୧ (୧୯୪୩) ପୃ. ୪୫୫, ମୂଳ କବିତାର ନାମ 'ସ୍ୱର୍ଗତ ଭଗବତୀ' ।

୯୨ । 'ବନ୍ଦେ ଉତ୍କଳ ଜନନୀ', ବିଚ୍ଛିନ୍ନା ୧/୧, ଭାଦ୍ର ୧୩୪୫ (ଅଗଷ୍ଟ-୧୯୩୭), ମାଟିବାଣୀ (୧୯୪୭), ପୃ. ୧୧୫, ମୂଳ କବିତାର ନାମ 'ଉତ୍କଳ ବନ୍ଦନା' ।

୯୩ । 'ପଲ୍ଲୀ-ପ୍ରିୟା', ସହକାର ୧୦/୪, ଶ୍ରାବଣ ୧୩୩୨ ପୃ. ୧୭୨-୧୭୮ ।

## ପରିଶିଷ୍ଟ – (ଗ)

### ମାନସିଂହଙ୍କ ସୃଷ୍ଟି – ବିଚାର-ବିମର୍ଶ

୧। 'ଧୂପ' ପ୍ରକାଶନ ସମୟରେ ସହକାର, ୧୨/୨, ଜ୍ୟେଷ୍ଠ, ୧୩୩୮ (ମେ, ୧୯୩୧) ସଂଖ୍ୟାରେ ସ୍ଥାନ ପାଇଥିବା ଗୋଟିଏ ସ୍ୱତନ୍ତ୍ର କାଗଜରେ ନିମ୍ନଲିଖିତ ବିଜ୍ଞାପନ ଦିଆଯାଇଥିଲା ।
ମାୟାଧର ମାନସିଂହଙ୍କ ପ୍ରଥମ କବିତା ଗ୍ରନ୍ଥ 'ଧୂପ' ଶୀଘ୍ର ପ୍ରକାଶିତ ହେବ। ପ୍ରାଣସ୍ପର୍ଶୀ ପ୍ରେମକବିତାର ସଂଗ୍ରହ। ପ୍ରାୟ ସମସ୍ତ କବିତା ଅପ୍ରକାଶିତ ଥିଲା। ଆଗାମୀ ପୂର୍ଣ୍ଣିମାକୁ ଅପେକ୍ଷା କରନ୍ତୁ। ସୁନ୍ଦର ଛାପା, ଶସ୍ତା ଦାମ୍, ଉପହାରର ଶ୍ରେଷ୍ଠ ସାମଗ୍ରୀ।

୨। 'ଧୂପ'ର ସମୀକ୍ଷା, ସହକାର ୧୨/୩, ଆଷାଢ଼ ୧୩୩୮, (ଜୁନ୍, ୧୯୩୧)ରେ ପତ୍ରିକାର ସମ୍ପାଦକ 'ଧୂପ' ଉପରେ ଲେଖିଛନ୍ତି – ଲେଖକ ଶ୍ରୀମାନ୍ ମାୟାଧର ମାନସିଂହଙ୍କ ୩୨ଟି ପ୍ରେମକବିତା ପୁସ୍ତକଟିର କଳେବର। କବିତାଗୁଡ଼ିକ ଗୀତିଛନ୍ଦରେ ଲିଖିତ। 'ଧୂପ'ର ଦୁଇଟି ସଂସ୍କରଣରେ ୩୨ଟି ଲେଖାଏଁ କବିତା।

୩। 'ଧୂପ' ଦ୍ୱିତୀୟ ସଂସ୍କରଣ ସମୀକ୍ଷା 'ଡଗର' ୧।୮।୧୯୪୯।

୪। 'ହେମଶସ୍ୟ' (କବିତା) ସମୀକ୍ଷା, ରସଚକ୍ର, ୧/୧, (୧୩୪୦ ସାଲ)।

୫। 'ବାପୁ-ତର୍ପଣ' (କବିତା) ସମୀକ୍ଷା, ଡଗର, ୧।୮।୧୯୪୮।

୬। 'ହେମପୁଷ୍ପ' (କବିତା) ସମୀକ୍ଷା, ଡଗର ୧।୧୦।୧୯୪୯।

୭। ମାଟିବାଣୀ ସମୀକ୍ଷା ଡଗର, ୧୬।୧୦।୧୯୪୯।

୮। ମାନସିଂହଙ୍କ କବିତାର ପ୍ୟାରୋଡ଼ି – କବି ଇଢ଼େଇ, ପତୁରାନନ୍ଦ, ଡଗର ୧୦/୨୩, ତା – ୧।୬।୧୯୪୭।

୯। 'ଏଇ ସହକାର ତଳେ'ର ବ୍ୟଙ୍ଗାନୁକରଣ– ଭାଦର ସ୍ମୃତି, ବ୍ରଜେନ୍ଦ୍ର ନାରାୟଣ ସିଂହଦେଓ, ଚତୁରଙ୍ଗ ୨/୫, ତା – ୧୮।୬।୧୯୪୭, ପୃ. ୨୩୩।

୧୦। 'ପ୍ରିୟା ପ୍ରିୟା' କବିତାର ବ୍ୟଙ୍ଗାନୁକରଣ 'ବିରହୀ', ମହାପାତ୍ର ନୀଳମଣି ସାହୁ, ଡଗର ୧୩/୮, ୧୬।୧୧।୪୯।

୧୧। 'ତରୁଣ କବିର ଆଶା'ର ବ୍ୟଙ୍ଗାନୁକରଣ– 'ହାଇରେ ହତାଶ ପ୍ରେମିକ ଆଶା', କୃଷ୍ଣଚନ୍ଦ୍ର ବଳ, ଡଗର, ୧୩/୨୭, ତା – ୧୬।୫।୧୯୫୦।

୧୨। 'ଏଇ ସହକାର ତଳେ' (ବ୍ୟଙ୍ଗଚିତ୍ର), ଡଗର ୧୪/୧, ୧।୬।୧୯୫୦।

୧୩। 'ଦେଖା ହେଲା କିମ୍ବା'ର ବ୍ୟଙ୍ଗାନୁକରଣ– 'ବାହାହେଲ କିମ୍ବା'– ଜାନକୀବଲ୍ଲଭ ମହାନ୍ତି, ଡଗର ୧୮/୯, ମାର୍ଚ୍ଚ ୧୯୫୫।

୧୪। 'ମୋର ପ୍ରିୟ ଲେଖକ – କବି ମାନସିଂହ', ମହାପାତ୍ର ନୀଳମଣି ସାହୁ, ଡଗର ୨୪/୪, ଅକ୍ଟୋବର-୧୯୫୬।

୧୫ । କବି ମାନସିଂହଙ୍କ କାବ୍ୟପ୍ରତିଭା (ଆଲୋଚନା) – ଶ୍ରୀ ଚିନ୍ତାମଣି ବେହେରା ।
(କ) ଡଗର, ୨୧/୪,୫, ଅକ୍ଟୋବର-ନଭେମ୍ବର ୧୯୫୭, ପୃ. ୧୩ରୁ୧୮ ।
(ଖ) କାବ୍ୟ ଓ କଳାକାର (ପ୍ରଥମ ସଂସ୍କରଣ) ପୃ. ୧୦୬ରୁ୧୨୬ ।
୧୬ । 'ଓଡ଼ିଆ ସାହିତ୍ୟରେ ମାୟାଧର ମାନସିଂହ' (ପ୍ରବନ୍ଧ) ଶ୍ରୀ ଚିନ୍ତାମଣି ବେହେରା । ଓଡ଼ିଆ ସାହିତ୍ୟର ଇତିହାସ (୧୯୬୭) ଲେଖକ – ଡ. ମାନସିଂହ, ପରିଶିଷ୍ଟ (ପ୍ରକାଶକ – ଗ୍ରନ୍ଥମନ୍ଦିର, କଟକ) ।
୧୭ । 'କବି ମାନସିଂହଙ୍କ ପନ୍ଦର ବର୍ଷ ରଚନାର କାଳ ନିର୍ଣ୍ଣୟ' – ଡକ୍ଟର ନଟବର ସାମନ୍ତରାୟ ।
(କ) ଡଗର, ୨୧/୭, ୧୯୫୮, ପୃ. ୧୬-୨୩, (ଖ) ମାନସିଂହ ସ୍ମରଣିକା (ଅକ୍ଟୋବର, ୧୯୭୩) ଏକାମ୍ର ଥିଏଟର୍ସ, ଭୁବନେଶ୍ୱର ।
୧୮ । ରବୀନ୍ଦ୍ରନାଥ ଓ କବି ମାନସିଂହଙ୍କ ମର୍ତ୍ତ୍ୟପ୍ରୀତି (ପ୍ରବନ୍ଧ), ଶ୍ରୀ ଦାଶରଥି ଦାସ ।
(କ) ଡଗର, ୨୫/୧, ଜୁଲାଇ ୧୯୬୧, ପୃ. ୧୯-୨୪, (ଖ) କାବ୍ୟ ସମ୍ବାଦ ।
୧୯ । 'ରୂପ ଓ ସୌନ୍ଦର୍ଯ୍ୟର କବି ମାନସିଂହ' – ଅଧ୍ୟାପକ ଦାଶରଥି ଦାସ, ସାହିତ୍ୟ ସନ୍ଧାନ (୧୮ । ୧୧ । ୧୯୭୫) ପୃ. ୮୯-୧୨୬, (ଏହା ପୁସ୍ତକ ଆକାରରେ ପ୍ରକାଶ ପୂର୍ବରୁ କବି ମାନସିଂହ ଏହା ପଢ଼ି ମନ୍ତବ୍ୟ ଦେଇଥିଲେ) ।
୨୦ । 'ମାନସିଂହଙ୍କ କବିତା – ଧୂପ' (ଆଲୋଚନା) ଅଧ୍ୟାପକ ତାରିଣୀଚରଣ ଦାସ ।
(କ) ଡଗର ୨୧/୧, ଜୁଲାଇ, ୧୯୬୨, ପୃ. ୧୨-୧୬, (ଖ) ନୂତନ ସମୀକ୍ଷା (୧୯୬୬) ପୃ. ୧୬-୩୩ ।
୨୧ । 'ଅନାସକ୍ତ କୋଣାର୍କ ଓ ତାହାର ଆସକ୍ତ କବି କେତେଜଣ' (ଆଲୋଚନା) ଶ୍ରୀ ପ୍ରମୋଦ କୁମାର ମହାନ୍ତି । ଝଙ୍କାର, ୨୦/୩, ଜୁନ୍,୧୯୬୮, ପୃ. ୩୩୯-୪୮ ।
୨୨ । 'ମାନସିଂହଙ୍କ କବିତାରେ ବେଦନାବୋଧ' (ପ୍ରବନ୍ଧ), ଶ୍ରୀ ବାଳକୃଷ୍ଣ ଶତପଥୀ ।
(କ) ସପ୍ତର୍ଷି ୨/୧୧, (୧୯୭୩), (ଖ) ମାନସିଂହ ସୃଷ୍ଟି ଓ ସମୀକ୍ଷା (୧୯୭୮) ପୃ. ୧୦୬-୧୩, (ଗ) ଆଧୁନିକ ଓଡ଼ିଆ କାବ୍ୟ କବିତାର ଅନ୍ତଃସ୍ୱର ଓ ଅଭିବ୍ୟକ୍ତି (୧୯୮୩) ପୃ. ୧୦୩-୧୨୯ ।
୨୩ । 'ପ୍ରେମର ରସଘନ କାବ୍ୟ 'ଧୂପ' – ଚଣ୍ଡିଚରଣ ରାଉତରାୟ, ଉତ୍କଳ ସାହିତ୍ୟ (ନୂତନପ୍ରସ୍ଥ) ୧୯୭୪ ।
୨୪ । 'ମାନସିଂହଙ୍କ କବିତାରେ ବୈଚିତ୍ର୍ୟ' – ଡ. ଗୋପାଳ ଚନ୍ଦ୍ର ମିଶ୍ର, ଉତ୍କଳ ସାହିତ୍ୟ (ନୂତନ ପ୍ରସ୍ଥ) ୧୯୭୪ ।
୨୫ । 'ମାନସିଂହଙ୍କ ସୌନ୍ଦର୍ଯ୍ୟ ଚେତନାରେ ନାରୀ' (ପ୍ରବନ୍ଧ) ଡ. ଖଗେଶ୍ୱର ମହାପାତ୍ର ।
(କ) ଝଙ୍କାର ୨୮/୧, ବିଷୁବ, ୧୯୭୫, ପୃ. ୪୮-୫୧, (ଖ) ମାନସିଂହ : ସୃଷ୍ଟି ଓ ସମୀକ୍ଷା (୧୯୭୮) ପୃ. ୧୫୦-୧୫୫ ।

୨୬ । 'ମାନସିଂହଙ୍କ କାବ୍ୟ କବିତାରେ ପ୍ରେମ'–ପ୍ରଜ୍ଞା ପାରମିତା ମହାନ୍ତି, ସପ୍ତର୍ଷି, ୫,୪ ।
୨୭ । 'ମାନସିଂହ : ସୃଷ୍ଟି ସମୀକ୍ଷା' (୧୯୭୮), ସମ୍ପାଦନା – ଅଧ୍ୟାପକ ରାଧାଶ୍ୟାମ ବେହୁରା ।
(କ) 'ମାନସିଂହଙ୍କ କାବ୍ୟ କବିତାର ଆଦ୍ୟ ଉନ୍ମେଷ'– ଅଧ୍ୟାପକ ପଠାଣି ପଟ୍ଟନାୟକ ।
(ଖ) 'ନିସର୍ଗର ଉଦ୍‌ଗାତା ମାନସିଂହ'– ଅଧ୍ୟାପକ ଦାଶରଥି ଦାସ ।
(ଗ) 'ମାନସିଂହଙ୍କ କବିତାରେ ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟ'– ଶ୍ରୀ ବସନ୍ତ କୁମାର ସାମଲ ।
(ଘ) 'ମାନସିଂହଙ୍କ କବିତାରେ ପରମ୍ପରା ଓ ନୂତନତା'– ସଚ୍ଚିଦାନନ୍ଦ ମିଶ୍ର ।
(ଙ) 'ପ୍ରେମକବିତାର ପରମ୍ପରାରେ ମାନସିଂହ'– ଅଧ୍ୟାପକ ବନମାଳୀ ବାରିକ ।
(ଚ) 'ହେମଶସ୍ୟ ଓ ପ୍ରେମଶସ୍ୟର କବି'– ଶ୍ରୀ ମହେଶ୍ୱର ନାୟକ ।
୨୮ । 'ମାନସିଂହ ପରିକ୍ରମା' (୧୯୭୯), ସମ୍ପାଦନା ଡ. ନିତ୍ୟାନନ୍ଦ ଶତପଥୀ, ଓଡ଼ିଶା ପୂଜ୍ୟପୂଜା ସଂସଦ ।
(କ) 'ମାନସିଂହଙ୍କ କବିତାରେ ଶାଶ୍ୱତ ପ୍ରଣୟଚେତନା'– ଅଧ୍ୟାପକ ରାଘବାନନ୍ଦ ନାୟକ ।
(ଖ) 'ରୋମାଣ୍ଟିକ କବି ମାନସିଂହ'– ଡ. ପ୍ରତିଭା ଶତପଥୀ ।
(ଗ) 'ସବୁଜର ସମସାମୟିକ ଏକକ କବି ଡ. ମାନସିଂହ'– ଡ. ନିତ୍ୟାନନ୍ଦ ଶତପଥୀ ।
୨୯ । 'ମାନସିଂହଙ୍କ କବିତାରେ ପ୍ରଣୟଚେତନା'– ଶ୍ରୀ ଶ୍ରୀଚରଣ ମହାନ୍ତି, ମାନସିଂହ ମାନସ (ପ୍ରଥମ ଭାଗ), ୧୯୮୩ ।
୩୦ । 'ମାନସିଂହଙ୍କ କାବ୍ୟ କବିତାରେ ଉପମା'– ଡକ୍ଟର କିଶୋର ଚନ୍ଦ୍ର ମିଶ୍ର ।
(କ) 'ଉତ୍କଳ ଗୌରବ', ୧୭ଶ ଅର୍ଘ୍ୟ (୧୯୮୪) ପୃ. ୧୧-୧୯ ।
(ଖ) 'ବାସନ୍ତିକା' ସପ୍ତମ ଅର୍ଘ୍ୟ (୧୯୮୪) ପୃ. ୨୬-୩୨ ।
(ଗ) 'ଡଗର', ୪୭/୨, ଅଗଷ୍ଟ ୧୯୮୩, ପୃ. ୪-୭ ।
(ଘ) 'ବାସନ୍ତିକା' ଅଷ୍ଟମ ଅର୍ଘ୍ୟ, ୧୯୮୫ ।
(ଙ) 'ଉତ୍କଳ ଗୌରବ' ଅଷ୍ଟାଦଶ ଅର୍ଘ୍ୟ (୧୯୮୫) ପୃ. ୨୧-୩୨ ।
(ଚ) 'ଉତ୍କଳ ଗୌରବ' ଊନବିଂଶ ଅର୍ଘ୍ୟ (୧୯୮୬) ପୃ. ୧୬-୩୪ ।
(ଏହା ଏକ ଧାରାବାହିକ ଲେଖା – ଉପରୋକ୍ତ କ୍ରମରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି ।)

ଏହି ଗ୍ରନ୍ଥାବଳୀରେ ସଂକଳିତ ରଚନାର ପ୍ରତିକ୍ରିୟା ସମ୍ପର୍କରେ ୧୯୩୦ରୁ ୧୯୮୫ ମସିହା ମଧ୍ୟରେ ଯେଉଁ ପ୍ରମୁଖ ଆଲୋଚନା କରାଯାଇଥିଲା ସେ ସମ୍ପର୍କରେ ଏକ ଆଭାସ ।

—

## କୃତଜ୍ଞତା ଜ୍ଞାପନ

କବି ଡକ୍ଟର ମାୟାଧର ମାନସିଂହଙ୍କ ସାହିତ୍ୟ ସୃଷ୍ଟିର ସୁପରିଚିତ ଗବେଷକ ଅଧ୍ୟାପକ ଡକ୍ଟର ଶ୍ରୀଚରଣ ମହାନ୍ତି ସ୍ୱତଃପ୍ରବୃତ୍ତ ହୋଇ ଓ ବହୁ ଶ୍ରମସ୍ୱୀକାରକରି କବିଙ୍କ ଲିଖିତ କେତେକ କବିତାର ରଚନାକାଳ ଓ ରଚନା-ସ୍ଥାନ ଏବଂ ବର୍ତ୍ତମାନ ଦୁଷ୍ପ୍ରାପ୍ୟ ପ୍ରଥମ ସଂସ୍କରଣ ବହିଗୁଡ଼ିକର ପ୍ରକାଶନକାଳ ଇତ୍ୟାଦି ସଂପର୍କରେ ତଥ୍ୟାବଳୀ ସଂଗ୍ରହକରି ଏହି ପରିଶିଷ୍ଟଟି ପ୍ରସ୍ତୁତ କରିଦେଇଥିବାରୁ ଆମେ ଡକ୍ଟର ମହାନ୍ତିଙ୍କ ଆନ୍ତରିକ ସହଯୋଗପାଇଁ ଗଭୀର କୃତଜ୍ଞତା ଜଣାଉଛୁ ।

**ପ୍ରକାଶକ**